# ଭାଗବତ କଥା

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ



କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର

# ଭାଗବତ କଥା
ଦ୍ୱାଦଶ ଖଣ୍ଡ

ପ୍ରକାଶିକା
ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର
କଟକ ଷ୍ଟୁଡେ଼ଣ୍ଟସ୍ ଷ୍ଟୋର
କଟକ-୭୫୩୦୦୨

ପ୍ରଥମ ସଂସ୍କରଣ
ନଭେମ୍ବର ୧୯୮୪

ପ୍ରଚ୍ଛଦ
ଶ୍ରୀ ଅସିତ୍ ମୁଖାର୍ଜି

ମୁଦ୍ରଣ
କଲ୍ୟାଣୀ ପ୍ରିଣ୍ଟର୍ସ
ଝିଠାପୁର, କଟକ

ମୂଲ୍ୟ :
ସାଦା ୧୨ ଟଙ୍କା
ବନ୍ଧାଇ : ୧୫ ଟଙ୍କା

## BHAGABAT KATHA
(Twelvth Part)
**Sri Prabhudatta Brahmacharee**

Publisher
**Srimati Annapurna Misra**
Cuttack Students' Store
Cuttack-753002

Price :
Popular Rs. 12.00
Deluxe Rs. 15.00

# ଭାଗବତ କଥା

( ଦ୍ୱାଦଶ ଖଣ୍ଡ )

ଲେଖକ :

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

ସମ୍ପାଦନା

ଡକ୍ଟର କୃଷ୍ଣପ୍ରସାଦ ମିଶ୍ର

ଅନୁବାଦ :

ଡକ୍ଟର ଭଗବାନ ପଣ୍ଡା

ପ୍ରକାଶକ :



ଧର୍ମଗ୍ରନ୍ଥ ଷ୍ଟୋର



ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

# ସୂଚୀ

# ସିଂହାବଲୋକନ

ସୋଽୟଂ ଦୀପୋଽର୍ଚିଷାଂ ଯଦ୍‌ବତ୍‌ ସ୍ରୋତସାଂ ତଦିଦଂ ଜଳମ୍‌ ।
ସୋଽୟଂ ପୁମାନିତି ନୃଣାଂ ମୃଷା ଗୀର୍ଧୀ ମୃଷାୟୁଷାମ୍‌ ॥
( ଭାଗ-୧୧-୨୨-୪୪ )

## ଛପ୍‌ପୟ

ହେ ନଟ ନାଗର ଶ୍ୟାମ କରେଁ କ୍ରୀଡ଼ା କେତ ନୂତନ ।
ମୋର ମୁକୁଟ ଶିର ଧାରି ବାଜାଏଁ ବଂଶୀ ବନ ବନ ॥
କୋନ ମୋହ ବଶ କରେଁ କୃଷ୍ଣ ଛନ ଛେଁ କରବାଏଁ ।
ସବ ହୀଁ ନଗ୍ରୋତ ରମକୃଷ୍ଣ ନାଚେଁ ନଚୱାଏଁ ॥
ତୁମରେ ସଙ୍ଗ ଇ ନାଚ ଟକେଁ, ତୁମରେ ହି ଗୁନ ଗାଇ କେ ।
ତୁମରେ କଥା ସୁନାଇ କେଁ, ସୋଏଁ ସବହିଁ ଭୁଲାଇ କେ ॥ ୧

ପ୍ରତିଷ୍ଠାନ ପୁରକୁ ଆସିବାର ଅଢ଼େଇ ବର୍ଷ ପୂରିଗଲା । ମନରେ କେତେ ସଂକଳ୍ପ ଥିଲା । ବିନାୟକ ହେବାର ଭାବନା ଥିଲା, କିନ୍ତୁ ହେଲି ବାନର । ବୈରାଗୀ ହେବାର ଭାବନା ବ୍ୟବସାୟୀରେ ପରିଣତ ହେଲା । ସମସ୍ତଙ୍କଠାରୁ ଛପି ରହିବା ପରିବର୍ତ୍ତେ ଛାପିବା କାର୍ଯ୍ୟରେ ମଜ୍ଜି ଗଲି । ସାଂସାରିକ ସମ୍ବନ୍ଧଠାରୁ ଦୂରେଇ ଯିବାର ଇଚ୍ଛା, ଏବେ ଅଧିକ ସମ୍ବନ୍ଧ ପ୍ରତିଷ୍ଠା ପାଇଁ ଚିନ୍ତା । ଭଗବାନଙ୍କର ମାୟା ଅସୀମ ତାଙ୍କ ଇଚ୍ଛାରେ ପ୍ରତ୍ୟେକ ବସ୍ତୁ ପ୍ରତିମୁହୂର୍ତ୍ତରେ ବଦଳୁଛି । କିନ୍ତୁ ଆମେ ଏପରି ମୂର୍ଖ ଯେ ସେ ଆଡ଼କୁ ଆମର ଟିକିଏ ହେଲେ ଦୃଷ୍ଟି ନାହିଁ ।

ସଂସାରର ପରିବର୍ତ୍ତନ ଯେପରି ଘଟୁଛି ତାକୁ ହଠାତ୍ କେହି ଅନୁଭବ କରିବା ସମ୍ଭବ ନୁହେଁ । ପରିବର୍ତ୍ତନର ଯେଉଁକି ଅନୁଭୂତି ଆସୁଛି ତାହା ନିଜର ସ୍ୱାର୍ଥବଶତଃ ସମ୍ଭବ ହେଉଛି । ଶୀତ ହଠାତ୍ ଆସେ ନାହିଁ । ଗ୍ରୀଷ୍ମ ପରେ ବର୍ଷା ହୁଏ, ଫଳରେ ସାମାନ୍ୟ ଥଣ୍ଡା ଲାଗେ । ପୁଣି ଶୀତ ଆରମ୍ଭ ହୁଏ, ଧୀରେ ଧୀରେ ଭୀଷଣ ଥଣ୍ଡା ପଡ଼େ । ଶୀତ କମେ, ଗରମ ଲୁଗାପଟା ଭଲ ଲାଗେ ନାହିଁ, ପୁଣି ବସନ୍ତ ଆସେ । ଶୀତ ପଡ଼ିଲେ, ଲୋକେ କହନ୍ତି, ଓଃ କି ଶୀତ । କିନ୍ତୁ ପରେ ତାହା ଭୁଲିଯାନ୍ତି । ଲୋକେ ଶୀତରେ ଗ୍ରୀଷ୍ମକୁ ଓ ଗ୍ରୀଷ୍ମରେ ଶୀତକୁ ଭୁଲିଯାନ୍ତି । କାଳ ଚକ୍ର ଘୂରୁଛି, ତେଣୁ ମନେ ରଖିବା ସମ୍ଭବ ହୁଏ ନାହିଁ । ସାଦୃଶ୍ୟରେ ଆମର ଭ୍ରମ ସୃଷ୍ଟି ହୁଏ । କାଲି ଯେଉଁ ଦେବଦତ୍ତକୁ ଦେଖିଥିଲୁ ଆଜି ତାକୁ ବି ଦେଖୁଛୁ । କିନ୍ତୁ କାଲିର ଦେବଦତ୍ତ ଓ ଆଜିର ଦେବଦତ୍ତ ମଧ୍ୟରେ ଆକାଶ ପାତାଳ ପ୍ରଭେଦ ହୋଇ ସାରିଛି । ତା'ର ଅଣୁ ପରମାଣୁରେ ବହୁ ପରିବର୍ତ୍ତନ ଘଟିଯାଇଛି । ପରିବର୍ତ୍ତନର ପ୍ରତୀତି ଆମର ସେତେବେଳେ ଜାତ ହୁଏ, ଯେତେବେଳେ ଆମେ ଦେଖୁ ଦେବଦତ୍ତର ମୁହଁରେ ଦାଢି ଉଠେ ବା କଳା କେଶ ଦାଢ଼ି ପାଚିଯାଇ ଧଳା ହୁଏ । କିନ୍ତୁ ଦେବଦତ୍ତ ନିଜେ ସେ ପରିବର୍ତ୍ତନ ଦେଖିପାରେନାହିଁ । ସେ ଭାବେ ସେ ଯେପରି ଥିଲା ସେହିପରି ଅଛି । ଭ୍ରମବଶତଃ ଆମେ ଏହି ପରିବର୍ତ୍ତନକୁ ଜାଣି ପାରୁନାହୁଁ ।

ସଂସାର ଏକ ରଙ୍ଗମଞ୍ଚ । ଶ୍ରେଷ୍ଠ ବଡ଼ ସବୁ ଜୀବ ଏହି ରଙ୍ଗମଞ୍ଚର ଏକ ଏକ ପାତ୍ର । ସୂତ୍ରଧାର ଯେପରି ନଚେଇବ ସମସ୍ତେ ନିରୁପାୟ ହୋଇ ସେହିପରି ନାଚିବେ । ସେଠାରେ ନିଜର କୌଣସି ଇଚ୍ଛା କାମ କରେ ନାହିଁ । ଆମେ ନିଜ ଇଚ୍ଛାରେ ନୁହେଁ, ଅନ୍ୟର ନିର୍ଦ୍ଦେଶରେ ଯେ ନାଚୁଛୁ, ଏହା ମନେ ରଖିବା ଉଚିତ୍ । କଥାରେ କଥାରେ ଏହା ସମସ୍ତେ କହନ୍ତି, କିନ୍ତୁ ହୃଦୟରେ ଏହାକୁ ଅନୁଭବ କରୁଥିବା ଲୋକେ ବିରଳ । ଅନୁଭବୀ ଲୋକେ ମୁକ୍ତି ପାଇଯାଏ । ତା'ର ମନରେ କୌଣସି ପ୍ରକାର ବାଧା, ବନ୍ଧନ ବିପଦର ଚିନ୍ତା ଦେଖାଦିଏ ନାହିଁ । ଏହାହିଁ ପ୍ରକୃତ ସାଧନା । ଯାହା ଘଟିଯାଉଛି ସବୁ ସେହି ଲୀଳାମୟଙ୍କ ଇଚ୍ଛା ବୋଲି ମାନି ନେବାକୁ ହେବ ।

ଈଶ୍ୱରଙ୍କ ଇଚ୍ଛା ଅନୁସାରେ କାର୍ଯ୍ୟ କଲେ ସେଥିରେ ସଫଳତା ମିଳେ । ଅନ୍ୟଥା ଆଚରଣରେ ଜୀବର ସଙ୍କଳ୍ପ ବ୍ୟର୍ଥ ହୋଇଯାଏ । କାରଣ, ଅନ୍ତର୍ଯ୍ୟାମୀ ରୂପେ ସେ ସବୁରି ହୃଦୟରେ ଥାଇ ଜୀବକୁ ନିର୍ଦ୍ଦେଶ ଦିଅନ୍ତି । ଏହା ସ୍ମରଣ କଲେ ମନରେ ଦୃଢ଼ତା ଆସେ । ଦିନ ରାତି ଆମେ କେତେ ପ୍ରକାର କଳ୍ପନା କରୁ, କଳ୍ପନାକୁ ରୂପ ଦେବାପାଇଁ ଆପ୍ରାଣ ଉଦ୍ୟମ କରୁ, କିନ୍ତୁ ଈଶ୍ୱରଙ୍କ ଇଚ୍ଛା ନଥିଲେ

ସବୁ କୁଆଡେ ଫସର ଫାଟିଯାଏ । ସୃଷ୍ଟି ସ୍ଥିତି, ପାଳନ ଓ ବିନାଶ ଯେତେବେଳେ ଅନ୍ୟର ଇଚ୍ଛାଧୀନ ସେତେବେଳେ ଆମେ ତା'ର ବିରୁଦ୍ଧାଚରଣ କରିବା କାହିଁକି ? ଯାହା ହେବାର ଥିବ ତା'ହା ନିଶ୍ଚୟ ଘଟିବ ଏବଂ ଯାହା ନ ହେବାର ଥିବ ତାହା ଯେତେ ଚେଷ୍ଟା କଲେ ବି ହେବ ନାହିଁ । ଯାହାର ଯାହା କରିବା କଥା ସେ ତାହା କରିବ । ସେଥିରେ ଅଯଥା ହସ୍ତକ୍ଷେପ ଅନାବଶ୍ୟକ । ସୂତ୍ରଧାରର କାର୍ଯ୍ୟକୁ ଲକ୍ଷ କର, ସେହି କାର୍ଯ୍ୟକୁ ମନେ ରଖ ଓ ସେଥିରୁ ଶିକ୍ଷାଲାଭ କର । ପ୍ରଭୁଙ୍କର ସ୍ୱତନ୍ତ୍ରତା ଓ ନିଜର ପରାଧୀନତାକୁ ସ୍ମରଣ କର ।

ମଣିଷ ସ୍ଥୂଳ ଦୃଷ୍ଟିରେ ଯାହା ଦେଖେ ସେଥିରେ ଭୁଲିଯାଏ । କିନ୍ତୁ ଅନ୍ତର୍ଦୃଷ୍ଟିରେ ଦେଖିପାରିଲେ ସେ ସବୁର ଯଥାର୍ଥ ଜ୍ଞାନ ଆସେ । ଯଥାର୍ଥ ଜ୍ଞାନରେ କୌଣସି ପ୍ରକାର ବନ୍ଧନ ନାହିଁ । ସେଥିପାଇଁ କୁଆଡ଼େ ଗୃହିବି ନାହିଁ ବୋଲି ପ୍ରତିଜ୍ଞା କରିଥିଲି, କାରଣ ସେଥିରେ ଅଯଥା ଯୁକ୍ତି ତର୍କ କରିବାରେ ସମୟ କଟିଯିବ । ତେଣୁ ଯେଉଁ ସମୟ ମିଳିବ ତାହା ଲେଖାଲେଖିରେ କଟାଇବାର ସିଦ୍ଧାନ୍ତ ନେଲି ।

ଅନେକ ଭାଗ୍ୟବାନ ଅଛନ୍ତି ଯେଉଁମାନେ ଭଗବଦ୍ ଗୁଣ କୀର୍ତ୍ତନରେ ତନ୍ମୟ ହୋଇଯାନ୍ତି । କିନ୍ତୁ ସେ ଭାଗ୍ୟ ମୋର ନାହିଁ । ହୃଦୟ ମୋର ଅତି କଠୋର । ସେଥିରେ ମୋର ମନ ମାନୁ ନାହିଁ, କେବଳ ପ୍ରତିଷ୍ଠା ଅର୍ଜନ ପାଇଁ ବା ନିୟମ ରକ୍ଷା ପାଇଁ ମୁଁ ଭଜନ କୀର୍ତ୍ତନ କରୁଛି, ଭଗବତ୍ କଥା ଶୁଣୁଛି, କିନ୍ତୁ ସେଥିରୁ ଯେଉଁ ଆନନ୍ଦ ପାଇବା କଥା ତାହା ମୁଁ ପାଇପାରୁ ନାହିଁ । ମିଥ୍ୟା ଅଭିମାନ, ଗର୍ବ ଓ ଦେଖେଇହେବା ସ୍ୱଭାବ ହେତୁ ଏପରି ଘଟୁଛି । ତଥାପି ଇଚ୍ଛା ଥାଉ ବା ନ ଥାଉ ଏସବୁ କରିବାକୁ ପଡୁଛି । କେତେଜଣ କହୁଛନ୍ତି—ଆପଣ ବହୁତ ଉପକାର କରୁଛନ୍ତି । ସାହିତ୍ୟର ଉନ୍ନତି ସହିତ କଥା କୀର୍ତ୍ତନର ପ୍ରଚାର କରୁଛନ୍ତି । ଏହା ଶୁଣିବା ପରେ ମୋ ମନରେ ଯେ ଅଭିମାନ ଆସୁନାହିଁ, ତା' ନୁହେଁ । କିନ୍ତୁ ସତରେ କ'ଣ ମୁଁ ପରୋପକାର ପାଇଁ ଏସବୁ କରୁଛି ? ଉତ୍ତର ମିଳୁଛି—ନାଁ ତୁମେ ନିଜର ବାସନା ପୂରଣ ପାଇଁ ଏହା କରୁଛ ।

ଆଜକୁ ୧୦/୧୫ ବର୍ଷ ପୂର୍ବେ ମୁଁ ବି ସାହିତ୍ୟ ସେବା କରୁଥିଲି । ସେତେବେଳେ ଯେଉଁ ସାହିତ୍ୟିକମାନେ ଥିଲେ, ଯେଉଁମାନଙ୍କୁ ଶ୍ରଦ୍ଧା କରୁଥିଲି ସେମାନେ ଲୋକ ଦେଖାଣିଆ ବିଷୟରେ ବୃଥା ଯୁକ୍ତିତର୍କ କରିବାର ଦେଖି ମୁଁ ଭାବିଲି ଲେଖାଲେଖି କରିବା ଏକ କଳା । ଉଚ୍ଚକୋଟୀର ଲେଖକମାନେ ଯେ ସାଧୁ, ସଚ୍ଚରିତ୍ର ଓ ଆଦର୍ଶ ଜୀବନର ହେବେ, ସେପରି ଆବଶ୍ୟକତା ନାହିଁ । ଆଗରୁ

ଧାରଣା ଥିଲା ଯେଉଁମାନଙ୍କ ଲେଖା ପଢ଼ିଲେ ଆଖିରୁ ଲୁହ ଗଡ଼ିପଡ଼େ ସେମାନେ ନିଶ୍ଚୟ ଆଦର୍ଶ ପୁରୁଷ ହୋଇଥିବେ । ତେଣୁ ଲେଖକ ହେବାର ପ୍ରବଳ ଇଚ୍ଛା ଜାତ ହେଲା । କିନ୍ତୁ କିଛିଦିନ ପରେ ସେ ଇଚ୍ଛା ମଉଳିଗଲା । ସାଧୁ ହେବାର ଇଚ୍ଛା ହେଲା । ପ୍ରକାଶକମାନଙ୍କ ସହିତ ସମ୍ବନ୍ଧ ସ୍ଥାପିତ ହେଲା । କିପରି ଏ ସବୁ ଘଟିଲା ସେସବୁ କହିବା ଅନାବଶ୍ୟକ ।

ଲେଖାଲେଖି ନ କରିବା ପାଇଁ ଜୀବନରେ ବହୁବାର ପ୍ରତିଜ୍ଞା କଲି, କିନ୍ତୁ ପ୍ରତିଜ୍ଞା ରକ୍ଷି ପାରିଲି ନାହିଁ । ଭାବିଲି ଯଦି ଲେଖିବି କିଛି, ତେବେ ଭଗବନ୍ତ କଥା ଲେଖିବି ନାହିଁ କାହିଁକି ? ତେଣୁ 'ଭାଗବତ କଥା' ଲେଖିବା ଆରମ୍ଭକଲି । ଭଗବତ୍ ଚରିତ ଅନନ୍ତ ଓ ଅସୀମ । ଏ ଜୀବନରେ ସେ ସବୁ ଲେଖି ସାରିବା କେବେ ସମ୍ଭବ ନୁହେଁ । କାର୍ତ୍ତିକ ମାସରୁ କଥା ଲେଖିବା ଆରମ୍ଭ କଲି । ଛ'ମାସ ମଧ୍ୟରେ ୮, ୧୦ ଖଣ୍ଡ ଲେଖିଦେଲି । ବହି ଛପା ହୋଇ ପଣ୍ଡିତମାନଙ୍କ ହାତକୁ ନ ଯିବା ପର୍ଯ୍ୟନ୍ତ ଏ କଳି ଯୁଗରେ ପ୍ରଶଂସା ମିଳେ ନାହିଁ । ପ୍ରକାଶ କରିବା ପାଇଁ ଚେଷ୍ଟା କଲି । କିନ୍ତୁ ଏହା ବହୁ ଖଣ୍ଡରେ ବିଭକ୍ତ ହେଉଥିବାରୁ କେହି ପ୍ରକାଶକ ମିଳିଲେ ନାହିଁ । ଶେଷରେ ସଂକୀର୍ତ୍ତନ ଭବନ ପକ୍ଷରୁ ପ୍ରକାଶ କରିବା ସ୍ଥିର ହେଲା । ବହୁ ବାଧା, ବିଘ୍ନ ମଧ୍ୟରେ ୧୨ ଖଣ୍ଡ ବହି ଦେଢ଼ବର୍ଷ ମଧ୍ୟରେ ଛପା ହୋଇ ବାହାରିଲା । ଯେଉଁ ବନ୍ଧୁମାନେ ଆର୍ଥିକ ସହାୟତା ଦେଇଥିଲେ ସେମାନେ ତାଙ୍କ ପଇସା ଫେରି ପାଇଲେ । ବହିଗୁଡ଼ିକ ଶିକ୍ଷିତ, ଅଶିକ୍ଷିତ, ପଣ୍ଡିତ, ସବୁ ଶ୍ରେଣୀର ପାଠକଙ୍କ ଦ୍ୱାରା ଆଦୃତ ହେବାର ଦେଖି ମୋର ଶ୍ରମ ସାର୍ଥକ ହେଲା ବୋଲି ଜାଣିଲି ।

ମୋର ଇଚ୍ଛା ବିରୁଦ୍ଧରେ ମଧ୍ୟ ଭଗବାନ୍ କାହିଁକି ମୋତେ ଏ ଦାୟିତ୍ୱ ଦେଲେ ସେ କଥା ତାଙ୍କୁ ଜଣା । ବର୍ତ୍ତମାନ ଅନେକ ଅସୁବିଧା ଦୂର ହୋଇଛି । ପ୍ରତି ମାସରେ ଦୁଇଖଣ୍ଡ ବହି ପ୍ରକାଶ କରିବାର ଯୋଜନା ହୋଇଛି । ପାଠକମାନଙ୍କ ଆଗ୍ରହ ଦେଖି କିପରି ଶୀଘ୍ର ଶୀଘ୍ର ଅନ୍ୟ ଖଣ୍ଡଗୁଡ଼ିକ ପ୍ରକାଶ ପାଇବ ସେଇ ଚିନ୍ତାରେ ବୁଦ୍ଧି ମୋର ବ୍ୟବସାୟାତ୍ମିକା ହୋଇଯାଇଛି । ସର୍ବତ୍ର ଭଗବନ୍ତ ନାମ ପ୍ରଚାରିତ ହେଉ ଏହାହିଁ ମୋର ଅଭିଳାଷ । ତେଲୁଗୁ ଭାଷାରେ ପ୍ରଥମ ଖଣ୍ଡ ମୁଦ୍ରିତ ହୋଇ ସାରିଛି । ସେହିପରି ଅନ୍ୟାନ୍ୟ ଭାଷାରେ ଭାଗବତ କଥାର ଅନୁବାଦ ପ୍ରକାଶିତ ହେଉ ଏହା ହିଁ ମୋର ଆଶା ।

## ଛପ୍ପୟ

ହେ ହରି ! କବ୍ ୟେ ନୟନ ରହେଁ ମଦ ମହଁ ମଦମାତେ ।
ଶ୍ରବଣ ଶ୍ରବଣ  କବ୍ କରେ କଥା ରସ ମହଁ ସରସାତେ ।।
କବ୍ ହୋଏଁ ହିୟ ଦ୍ରବିତ ରୂପ ରସ ମହଁ ଡୁବେୟା ନିତ ।
ନିରଖି ଅଲୌକିକ ଛଟା ଛକେୟା କବ ରହେ କଠିନ ଚିତ ।।
କବ ହୌଁ ଘାୟଲ ସୋ ବନେୟା ହାୟ ହାୟ ଉକରା ଉ ଗୋ
ଜବ୍ ସବ୍ ତଜ ହିୟ ହୁଲସି କେ, ବୃନ୍ଦାବନ କୁଁ ଜାଉଁ ଗୋ ।।



# ତପସ୍ୟା ପାଇଁ ଧ୍ରୁବଙ୍କ
# ବଦ୍ରିକାଶ୍ରମ ଯାତ୍ରା

ଆତ୍ମ ସ୍ତ୍ରପତ୍ୟସୁହୃଦୋ ବଲମଦ୍ଧକୋଶ-
ମନ୍ତଃପୁରଂ ପରିବିହାରଭୁବଶ୍ଚ ରମ୍ୟାଃ,
ଭୂମଣ୍ଡଲଂ ଜଲଧି ମେଖଲାମାକଲଯ୍ୟ
କାଲୋପସୃଷ୍ଟମିତି ସ ପ୍ରୟଯୌ ବିଶାଲାମ୍ ।।

## ଛପ୍ପୟ

ଆୟେ ନିଜ ପୁର କରେ ଯଜ୍ଞ ବହୁ ବୈଭବ ବାରେ ।
ପୁଣ୍ୟ ଭୋଗତେଁ ପାପ ଯଜ୍ଞ ତପ ତେଁ ସବ ଜାରେ ।।
ସୁତ, ଦାରା, ଧନ, ଧାନ୍ୟ ଜାନି ନଶ୍ବର ସବ ତ୍ୟାଗେ ।
ରାଜ ପୁତ୍ରକୁଁ ସୌଁପି ସତତ ତପମେ ଇ ଲାଗେ ।।
କରେ ସୁକୃତ ସବ ସୁଖ ଲହେ, ଫିର ଧ୍ରୁବ ବନବାସୀ ଭୟେ ।
ତଜି ସବରେ ଗୃହ ଭୋଗ ସୁଖ, ବଦରି ବନ କୁଁ ଚଲି ଦୟେ ।।

ସୁଖ ପାଇବା ଅଭିଳାଷରେ ସଂସାରର ଭୋଗ ବିଳାସ ପ୍ରତି ଆସକ୍ତ ହୋଇପଡ଼ିଲେ ତାହା ବନ୍ଧନର କାରଣ ପାଲଟିଯାଏ । ତେଣୁ ବାରମ୍ବାର ଜନ୍ମମୃତ୍ୟୁ ଘଟେ; କିନ୍ତୁ ନିରାସକ୍ତଭାବେ ଭଗବତ୍ ପ୍ରୀତି ସମ୍ପାଦନ ପାଇଁ ଧର୍ମମାର୍ଗରେ ସଂସାର ଭୋଗ କଲେ ଆଉ ପୁନର୍ଜନ୍ମ ଘଟେ ନାହିଁ । ଭଲଭାବରେ ହଳ କରାଯାଇଥିବା କିଆରିରେ ଭୃଜିଲ ବୁଣିଲେ ତାହା ଯେପରି ଗଛ ହୁଏନାହିଁ, ସେହିପରି ନିରାସକ୍ତ ହୃଦୟରେ ସଂସାରର ଭୋଗ ବିଳାସ କୌଣସି ପ୍ରଭାବ ପକାଇ ପାରେନାହିଁ ।

ବର୍ଣ୍ଣାଶ୍ରମଧର୍ମ ତ୍ୟାଗମୟ । ଏହାର ପ୍ରତ୍ୟେକ ଅବସ୍ଥାରେ ତ୍ୟାଗର ମହତ୍ତ୍ୱ ପ୍ରକାଶ ପାଏ । ବାଲ୍ୟକାଳରେ ଗୃହତ୍ୟାଗ କରି ଗୁରୁକୁଳରେ ରହି ମଣିଷ ମହାତ୍ୟାଗ ନିମିତ୍ତ ଜ୍ଞାନ ଲାଭ କରେ । ଗୃହସ୍ଥାଶ୍ରମରେ ପତ୍ନୀ ସହିତ ପ୍ରତିଦିନ ପଞ୍ଚମହାଯଜ୍ଞ ଦ୍ୱାରା ସମଗ୍ର ଜୀବଜଗତ ପାଇଁ କିଛି ନା କିଛି ତ୍ୟାଗ କରେ । ଦେବତା, ପିତୃ ଓ ଋଷିଗଣଙ୍କ ଋଣରୁ ମୁକ୍ତ ପାଇଁ ଯଜ୍ଞ, ଶ୍ରାଦ୍ଧ ଓ ବେଦାଦି ଶାସ୍ତ୍ର ଅଧ୍ୟୟନ କରେ । ଋଣମୁକ୍ତ ପରେ ଓ ପୁତ୍ରର ପୁତ୍ରଜନ୍ମ ପରେ ଘର, ସ୍ତ୍ରୀ, ବନ୍ଧୁ ସ୍ୱଜନଙ୍କୁ ତ୍ୟାଗ କରି ବନବାସୀ ହୋଇଯିବା ଉଚିତ । ଗ୍ରାମ୍ୟ ଅନ୍ନ ଗ୍ରହଣ କରିବା ଉଚିତ ନୁହେଁ । ବଣର ଫଳମୂଳରେ ଜୀବନଧାରଣ କର । କାୟା ଶୋଧନ ନିମିତ୍ତ ତପସ୍ୟା ଆଚରଣ କର । ଶେଷରେ ସବୁ କିଛି ଛାଡ଼ି ମହାତ୍ୟାଗୀ ହୁଅ, ପରିବ୍ରାଜକ ହୁଅ । ଯେ ଯାହାର ବିଶ୍ୱାସ ଅନୁସାରେ ସନ୍ନ୍ୟାସ ଗ୍ରହଣ କରି ସଂସାର ଚକ୍ରରୁ ମୁକ୍ତ ହୁଅ, ଅର୍ଥାତ୍ ତ୍ୟାଗର ଭାବନା ପରିତ୍ୟାଗ କରି ନିର୍ମୁକ୍ତ ପାଲଟି ଯାଅ ।

ମହାମୁନି ମୈତ୍ରେୟ କହିଲେ—ହେ ବିଦୁର ! ଧ୍ରୁବ ମାତ୍ର ପାଞ୍ଚବର୍ଷ ବୟସରେ ନିଜର ପୂର୍ବଜନ୍ମାର୍ଜିତ ତପସ୍ୟା ବଳରେ ଭଗବାନଙ୍କ ସାକ୍ଷାତ୍ ପାଇଥିଲି । ପରମେଶ୍ୱରଙ୍କ ସାକ୍ଷାତ୍ ଓ ଭଗବତ୍ ଶଙ୍ଖ ସ୍ପର୍ଶ ମାତ୍ରେ ଧ୍ରୁବ ବେଦାଦି ଶାସ୍ତ୍ର ଜ୍ଞାନରେ ମହାପଣ୍ଡିତ ହୋଇ ପାରିଥିଲି । ଏସବୁ ସତ୍ତ୍ୱେ ଲୌକିକ ରୀତିରେ ଧ୍ରୁବର ବୈଦିକ ସଂସ୍କାର କରାଯାଇଥିଲା ଏବଂ ବେଦାଦି ଶାସ୍ତ୍ର ତାଙ୍କୁ ଶିକ୍ଷା ଦିଆ ଯାଇଥିଲା । ଭ୍ରମି ଓ ଇଳା ନାମ୍ନୀ କନ୍ୟା ଦୁଇଟି ସହିତ ଧ୍ରୁବଙ୍କ ବିବାହ ଅନୁଷ୍ଠିତ ହୋଇଥିଲା । ସେହି ପତ୍ନୀଙ୍କଠାରୁ ପୁଅ ଜନ୍ମ ହେଲେ । ସମଗ୍ର ଭୂମଣ୍ଡଳର ସେ ଏକଚ୍ଛତ୍ର ଶାସକ ଥିଲେ । ଦୀର୍ଘ ଛତିଶ ହଜାର ବର୍ଷ ସେ ଯୁବକ ଭାବେ ରହି ସାଂସାରିକ ସୁଖଭୋଗ କରିଥିଲେ । ଯଜ୍ଞ କରି ନିଜର ଯଶ ବଢ଼ାଇଥିଲେ । ସବୁ କାମକୁ ସେ କୃଷ୍ଣଙ୍କଠାରେ ଅର୍ପଣ କରି ଫଳାଫଳ ପ୍ରତି ନିରାସକ୍ତ ଥିଲେ । ଜ୍ଞାନ ବଳରେ ଯେତେବେଳେ ସେ ଜାଣିଲେ ତାଙ୍କର ଅନ୍ତିମ ସମୟ ଆସିଗଲା, ସେତେବେଳେ ସେ ରାଜସୁଖ ଭୋଗଠାରୁ ଦୂରେଇ ଗଲେ । କାରଣ, ତାଙ୍କର କୌଣସି ବିଷୟରେ ଆସକ୍ତ ନ ଥିଲା । ଆସକ୍ତ ଥିଲେ ସେ ରାଜସୁଖ ତ୍ୟାଗ କରିପାରି ନ ଥାନ୍ତେ । ଯଦି ବାଧ୍ୟ ହୋଇ ତ୍ୟାଗ କରିବାକୁ ପଡ଼ିଥାନ୍ତା, ତେବେ ତାଙ୍କୁ ବହୁତ କଷ୍ଟ ନିଶ୍ଚୟ ହୋଇଥାନ୍ତା; କିନ୍ତୁ ସେ ଅନାସକ୍ତ ଥିବାରୁ ସାପ କାତି ଛାଡ଼ିଲା ପରି ରାଜ୍ୟ ଓ ରାଜସୁଖକୁ ପରିତ୍ୟାଗ କରିଥିଲେ । ସେ ଭାବିଲେ — କ୍ଷତ୍ରିୟ ହୋଇ ଏଇ ଖଟରେ ଶୋଇ ଶୋଇ ମୋର ଜୀବନ ତ୍ୟାଗ କରିବା ଉଚିତ ନୁହେଁ । କ୍ଷତ୍ରିୟର ଦୁଇ ପ୍ରକାର ମୃତ୍ୟୁ ଅଛି । ଧର୍ମ ଯୁଦ୍ଧ ଲଢ଼େଇ କରି ଶତ୍ରୁ ଦ୍ୱାରା ବା ବନକୁ ଯାଇ ଯୋଗାଗ୍ନି ଦ୍ୱାରା ମୃତ୍ୟୁବରଣ କରିବା ଶ୍ରେୟସ୍କର ।

ପୃଥିବୀରେ ତାଙ୍କୁ ଯୁଦ୍ଧରେ ପରାଜିତ କରିବା ଭଲ ବାର ନାହିଁ । ତେଣୁ ସେ ଉତ୍ତର ଦିଗକୁ ପ୍ରସ୍ଥାନ କଲେ, ଯେଉଁଆଡ଼େ ଯାଇ ଧର୍ମାତ୍ମା, ବ୍ରହ୍ମର୍ଷି, ରାଜର୍ଷି କେହି କେବେ ଫେରନ୍ତି ନାହିଁ । ଅନ୍ତିମ ସମୟ ଜାଣିପାରି ସେ ନିଜ ପୁଅକୁ ରାଜସିଂହାସନରେ ଅଭିଷିକ୍ତ କରାଇ ଓ ତାହାର ଅନୁମତି ନେଇ ବଦରିକାଶ୍ରମ ଅଭିମୁଖେ ବାହାରିଲେ । 'ଧ୍ରୁବ ମହାରାଜ ରାଜ୍ୟ ତ୍ୟାଗକରି ବଦରୀବନ ଯାଉଛନ୍ତି' ବୋଲି ଖବର ସଙ୍ଗେ ସଙ୍ଗେ ଚାରିଆଡ଼େ ପ୍ରଚାରିତ ହୋଇଗଲା । ପ୍ରଜାବର୍ଗ ତାଙ୍କ ପାଖକୁ ଆସି କହିଲେ—ପ୍ରଭୋ ! ଆପଣ ଆମକୁ ଛାଡ଼ି କୁଆଡ଼େ ଯାଆନ୍ତୁ ନାହିଁ । ଅନ୍ତଃପୁରର ରମଣୀମାନେ ମଧ୍ୟ କାନ୍ଦି କାନ୍ଦି ସେଇ ପ୍ରାର୍ଥନା କଲେ । ନିଜର ଗୃହିଣୀ ସାଙ୍ଗରେ ଯିବାପାଇଁ ଆଗ୍ରହ ପ୍ରକାଶ କଲେ । କିନ୍ତୁ ଧ୍ରୁବ ସମସ୍ତଙ୍କଠାରୁ ନିଜ ମନକୁ ଦୂରେଇନେଲେ । ସମସ୍ତଙ୍କୁ ବୁଝେଇ ଶୁଝେଇ ଧ୍ରୁବ ରାଜଧାନୀ ପରିତ୍ୟାଗ କଲେ । ପତ୍ନୀ, ପୁତ୍ର, ମାତା ଓ ପ୍ରଜାବର୍ଗ ପଛରେ ରହିଗଲେ । ସାଂସାରିକ ସୁଖ ଭୋଗକୁ ସେ କେବଳ ଦେହରୁ ନୁହେଁ ମନରୁ ମଧ୍ୟ ପୋଛି ପକାଇଲେ । ସେ ମୁନି ଋଷିସେବିତ ବଦରୀବନରେ ଯାଇ ପହଞ୍ଚିଲେ । ବଦ୍ରିକାଶ୍ରମରେ ତାଙ୍କୁ ସମସ୍ତେ ସ୍ୱାଗତ ଜଣାଇଲେ । ମୁନିମାନେ ତାଙ୍କୁ ଫଳମୂଳ ଖାଇବାକୁ ଦେଲେ ଏବଂ ଅଳକନନ୍ଦା ନିକଟରେ ଏକ ଶାନ୍ତ ଏକାନ୍ତ ସ୍ଥାନରେ ତାଙ୍କ ପାଇଁ ଏକ ପତ୍ରକୁଡ଼ିଆ ନିର୍ମାଣ କରିଦେଲେ ।

ପଞ୍ଜୁରୀ ମୁକ୍ତ ବିହଗ ପରି ଧ୍ରୁବ ସେଠାରେ ଖୁସି ହେଲେ । ମତ୍ସ୍ୟ ଅଗାଧ ଜଳାଶୟ ପାଇଲେ ଏବଂ କନ୍ୟା ସତ୍କୁଳ ଲାଭ କଲେ ଯେପରି ସୁଖୀ ହୁଅନ୍ତି ଧ୍ରୁବ ସେହିପରି ସୁଖୀ ହେଲେ । ବଦରୀକାପୁରୀର ତପୋମୟ ଭୂମିରେ ପହଞ୍ଚି ତାଙ୍କର ଚିତ୍ତ ସ୍ୱତଃ ଶାନ୍ତ ହୋଇଗଲା । କଳକଳନାଦିନୀ ସମସ୍ତ ପାପତାପହାରିଣୀ ବିଷ୍ଣୁ-ପାଦାବ୍ଜସମ୍ଭୂତା ଭଗବତୀ ଅଳକନନ୍ଦାରେ ଧ୍ରୁବ ବିଧିବତ୍ ସ୍ନାନ କଲେ । ଶୁଦ୍ଧପୂତ ହୋଇ ଶାନ୍ତ ଚିତ୍ତରେ କୁଶ ଓ କାଉଁଶ ଆସନ ଉପରେ ମୃଗଚର୍ମ ଓ ତା' ଉପରେ ବଲ୍‌କଲ ବିଛାଇ ବସିଲେ । ପ୍ରାଣାୟାମ ଦ୍ୱାରା ମନ ଓ ଇନ୍ଦ୍ରିୟର ବୃତ୍ତି ସମୂହକୁ ନିରୋଧ କରି ନିରବଚ୍ଛିନ୍ନଭାବେ ଭଗବତ୍ ସ୍ୱରୂପ ଚିନ୍ତନରେ ଏପରି ଭାବେ ମଗ୍ନ ହୋଇଗଲେ ଯେ ତାଙ୍କର ଆଉ ବାହ୍ୟ ଜ୍ଞାନ ରହିଲା ନାହିଁ କି ଧ୍ୟାତା, ଧ୍ୟେୟ ଓ ଧ୍ୟାନର ଚିନ୍ତା ରହିଲା ନାହିଁ । ଧ୍ରୁବ ଆନନ୍ଦରେ ଅଥଳ ସାଗରରେ ନିମଗ୍ନ ହୋଇଗଲେ । ଭାବମୟ ସମାଧିରେ ସମାଧିସ୍ଥ ହୋଇଯିବାରୁ ତାଙ୍କ ଆଖିରୁ ଅନବରତ ପ୍ରେମାଶ୍ରୁ ପ୍ରବାହିତ ହେଲା । ଯେତିକ ଯେତିକ ଅଶ୍ରୁ ପ୍ରବାହିତ ହେଲା ସେତିକ ସେତିକ ହୃଦୟ ତାଙ୍କର ଦ୍ରବୀଭୂତ ହେବାକୁ ଲାଗିଲା ।

ମୈତ୍ରେୟ ମୁନି କହିଲେ—ହେ ବିଦୁର ! ଆଖିରୁ ପ୍ରେମାଶ୍ରୁ ପ୍ରବାହିତ ନ ହେବା ପର୍ଯ୍ୟନ୍ତ ହୃଦୟ ତରଳେ ନାହିଁ କି କରୁଣା ଉତ୍ପନ୍ନ ହୁଏନାହିଁ । ଯେଉଁ-

ମାନଙ୍କର ଆଖି ଶୁଖିଲା ଥାଏ, ସେମାନଙ୍କର ହୃଦୟ ମଧ୍ୟ .ଶୁଷ୍କ, ନୀରସ ହୋଇଥାଏ । ଏପରି ଲୋକ ଜ୍ଞାନୀ ହୋଇପାରନ୍ତି, ମାତ୍ର ଭକ୍ତଠାରୁ ସେମାନେ ଦୂରରେ ଥାନ୍ତି । ହୃଦୟ ଯେତେବେଳେ ତରଳି ଯାଏ ସେତେବେଳେ ତାହା ଅଶ୍ରୁ ରୂପରେ ନେତ୍ର ମାର୍ଗ ଦେଇ ପ୍ରବାହିତ ହୁଏ । କେତେକ ଅଭିନୟ କରି ପଣ ଆଖିରୁ ଲୁହ ଗଡ଼ାନ୍ତି; ମାତ୍ର ସେମାନେ ଗର୍ବୀ ବୋଲି ତାଙ୍କ ମୁହଁ ଦେଖିଲେ ଜଣାପଡ଼େ । ତାଙ୍କ କାନ୍ଦଣା ଯେ କୃତ୍ରିମ କାନ୍ଦଣା, ତାହା ପ୍ରମାଣିତ ହୋଇଯାଏ । ସରଳ ହୃଦୟର ତରଳ ଅଶ୍ରୁରେ ପାଷାଣ ମଧ୍ୟ ତରଳିଯାଏ । ହୃଦୟ ହୃଦୟର ଭାଷା ବୁଝିପାରେ । ଧ୍ରୁବଙ୍କ ନେତ୍ରରୁ ଅବିରତ ପ୍ରେମାଶ୍ରୁ ବହି ଆସୁଥିଲା, ଦେହ ତାଙ୍କର ରୋମାଞ୍ଚିତ ହୋଇ ଯାଉଥିଲା । ଭଗବତ୍ ପ୍ରେମରେ ସେ ନିଜକୁ ଏପରି ଭାବେ ଭୁଲିଗଲେ ଯେ ତାଙ୍କର ଅନ୍ୟ କୌଣସି ପ୍ରକାର ଜ୍ଞାନ ରହିଲା ନାହିଁ । ସେ ଯେ ଜଣେ ଚକ୍ରବର୍ତ୍ତୀ ରାଜା ଥିଲେ, ସ୍ୱାୟଂଭୁବ ମନୁଙ୍କ ପୌତ୍ର ଓ ମହାରାଜ ଉତ୍ତାନପାଦଙ୍କ ପୁତ୍ର ଧ୍ରୁବ ଥିଲେ ତାହା ସେ ଭୁଲିଗଲେ । ଦେଶ, କାଳ, ପାତ୍ରର ଅବସ୍ଥା ଭୁଲି ଧ୍ରୁବ ଭଗବତ୍ ଚିନ୍ତନରେ ତଦାକାର ହୋଇଗଲେ ।

## ଛପ୍‌ପୟ

"ବଦରୀ ବନ ମହିଁ ଜାୟ ଅଲକନନ୍ଦାମେଁ ହ୍ନାୟେ ।
ଋଷି ମୁନି ଦୀନ୍ହେ କନ୍ଦ, ମୂଲ, ଫଲ ତେଇ ଖାୟେ ।।
ରହେଁ ତହାଁ, ଧ୍ରୁବ କରେଂ ସାଧିରହିତ ନିତ ପ୍ରତି ସାଧନ ।
ପ୍ରେମଭାବ ମହଁ ମଗ୍ନ ନିରନ୍ତର ହରି ଆରାଧନ ।।
ପରମ ପ୍ରେମ କୀ ସବ ଦଶା, ସ୍ୱତଃ ପ୍ରାପ୍ତ ତିନକୁଁ ଭଈଁ ।
ଦ୍ରବିତ ହୃଦୟ ସାଗର ବନେ୍ୟା, ଆଖେଁ ବର୍ଷା ବନି ଗଈଁ ।।"



# ଧ୍ରୁବଙ୍କ ଧ୍ରୁବଲୋକ ପ୍ରାପ୍ତି

"ସ ଦଦର୍ଶ ବିମାନାଗ୍ର୍ୟଂ ନଭସୋଽବତରଦ୍ ଧ୍ରୁବଃ ।
ବିଭ୍ରାଜୟଦ୍ଦଶଦିଶୋ ରାକାପତିମିବୋଦିତମ୍ ॥
ପରୀତ୍ୟାଭ୍ୟର୍ଚ୍ୟ ଧିଷ୍ଣ୍ୟାଗ୍ର୍ୟଂ ପାର୍ଷଦାବଭିବନ୍ଦ୍ୟ ଚ ।
ଇୟେଷ ତଦଧିଷ୍ଠାତୁଂ ବିଭ୍ରଦ୍ରୂପଂ ହିରଣ୍ମୟମ୍ ॥"

(ଭାଗ—୪. ୧୨-୧୯,୨୯)

ଛପ୍ପୟ

"ଇକ ଦିନ ଲଖେଯା ବିମାନ ଉତରତୋ ନଭତେଂ ଆଓ୍ୱତ ।
ଚକାଚୌଁଧ ସୀ କରତ ଛଟା ଚହୁଁ ଦିଶି ଛିଟିକାଓ୍ୱତ ॥
ଅରୁଣ କମଳଦଳ ନେତ୍ର ଜହାଁରେ ପାର୍ଷଦ ହ୍ୱୈ ଜେ ।
କରି ପ୍ରନାମ ଧ୍ରୁବ ଉଠେ ତୁରତ ଆୟେ ଢିଂଗ ଉନକେ ॥
ଧ୍ରୁବ ! କୀତେୟା ହରିପଦ ତୁମନି, ବୋଲେ ନନ୍ଦ ସୁନନ୍ଦ ତବ ।
ଭେଜେୟା ଦିବ୍ୟ ବିମାନ ହରି, ଚଢ଼େଂ କରେଁ ନହୁଂ ଦେର ଅବ ॥"

ଭଗବାନଙ୍କ ଆଶ୍ରୟ ନେଲେ, ସମସ୍ତ କାର୍ଯ୍ୟ ତାଙ୍କର ପ୍ରୀତି ନିମିତ୍ତ କଲେ ଓ ସର୍ବଦା ତାଙ୍କର ଚିନ୍ତାରେ ନିମଗ୍ନ ହେଲେ ପ୍ରଭୁ ପ୍ରସନ୍ନ ହୁଅନ୍ତି ଓ ତାଙ୍କ ଭକ୍ତ ପାଇଁ ଚିନ୍ତା କରନ୍ତି । ପାପୀ ଓ ପୁଣ୍ୟାତ୍ମା ପୁରୁଷଙ୍କୁ ନେବାପାଇଁ ଯମଦୂତମାନେ ଆସନ୍ତି । ପୁଣ୍ୟାତ୍ମାଙ୍କୁ ସୌମ୍ୟ ରୂପରେ ଓ ସୌମ୍ୟ ଭାବରେ ନେବାବେଳେ ପାପାତ୍ମାମାନଙ୍କୁ ବିକଟ ରୂପରେ ଦେଖା ଦିଅନ୍ତି ଓ ନାନା ପ୍ରକାର ଭୟ ଦେଖାଇ ନେଇଯାନ୍ତି । ଯେ ଭଗବଦ୍‌ଭକ୍ତ ତାଙ୍କୁ ବିଷ୍ଣୁଦୂତମାନେ ବୈକୁଣ୍ଠକୁ ପାଛୋଟି ନିଅନ୍ତି ।

କିନ୍ତୁ ଯେ ଅସାଧାରଣ ଭକ୍ତ ତାଙ୍କୁ ନେବା ପାଇଁ ସ୍ୱୟଂ ଭଗବାନ୍ ଆସନ୍ତି ଅଥବା ନିଜର ପ୍ରଧାନ ଅନୁଚର ନନ୍ଦ ସୁନନ୍ଦଙ୍କୁ ପଠାନ୍ତି। ସେମାନେ ଭଗବାନଙ୍କର ପ୍ରତିନିଧି ରୂପେ ଆସନ୍ତି।

ମୈତ୍ରେୟ ମୁନି କହିଲେ—ବିଶାଳପୁରୀରେ ଧ୍ରୁବ ଆନନ୍ଦ ମନରେ ଭଗବଦ୍ ଧ୍ୟାନରେ ନିମଗ୍ନ ରହିଲେ। ଦିନେ ସେ ଆଖି ଖୋଲି ଯେତେବେଳେ ଆକାଶ ଆଡ଼କୁ ଚାହିଁଲେ ସେତେବେଳେ ଏକ ଦେଦୀପ୍ୟମାନ ଆଲୋକ ତାଙ୍କର ଆଡ଼କୁ ଆସୁଥିବାର ଲକ୍ଷ୍ୟ କଲେ। ସେହି ଆଲୋକର ଅପୂର୍ବ ଜ୍ୟୋତିରେ ଦଶଦିଗ ଆଲୋକିତ ହୋଇଯାଉଥିଲା। କିଛିକ୍ଷଣ ପରେ ଧ୍ରୁବ ଜାଣିପାରିଲେ ତାହା ଏକ ଦିବ୍ୟ ବିମାନ। ସେଥିରେ ଦୁଇଜଣ ଦିବ୍ୟପୁରୁଷ ବସିଥିବାର ଦେଖାଗଲେ। ବିମାନରୁ ଅବତରଣ କରିବା ପରେ ସେ ଦୁହେଁ ଚତୁର୍ଭୁଜ ଥିବାର ଜଣାଗଲା। ସୁଗନ୍ଧଯୁକ୍ତ ଶ୍ୟାମଳ ଦେହ। ଚାରିହାତରେ ଶଙ୍ଖ, ଚକ୍ର, ଗଦା, ପଦ୍ମ ଧାରଣ କରିଥିଲେ। କିଶୋର ବୟସ। ପ୍ରସ୍ଫୁଟିତ ପଦ୍ମପରି ନେତ୍ର ସଦୃଶ୍ୟ ସେ ଦୁହିଙ୍କର ବସ୍ତ୍ର ଓ ଭୂଷଣର ଚମକରେ ବିମାନଟି ଆଲୋକିତ। ମସ୍ତକରେ ମୁକୁଟ, କାନରେ କୁଣ୍ଡଳ, ଗଳାରେ ହାର, ବାହୁରେ ବାଜୁବନ୍ଧ ଶୋଭା ପାଉଥିଲା। ତାଙ୍କର ଦିବ୍ୟ ଜ୍ୟୋତି ବିଚ୍ଛୁରିତ ହୋଇ ପଡ଼ୁଥିବାରୁ ତାଙ୍କ ଆଡ଼କୁ ଚାହିଁବା ସମ୍ଭବ ହେଉ ନ ଥିଲା। ସେ ଦୁହେଁ ଭଗବାନ୍ ବୈକୁଣ୍ଠନାଥଙ୍କ ପ୍ରଧାନ ଅନୁଚର ବୋଲି ଜାଣିପାରି ଧ୍ରୁବ ସଂଭ୍ରମର ସହିତ ଉଠିପଡ଼ି ସ୍ୱାଗତ ଜଣାଇଲେ। ସେ ଏପରି ପ୍ରେମବିହ୍ୱଳ ହୋଇପଡ଼ିଲେ ଯେ; ସେମାନଙ୍କୁ ପ୍ରଥମ ପାଦ୍ୟ, ଅର୍ଘ୍ୟ ଦେବାକଥା ଭୁଲିଗଲେ। 'ଜୟ ଶ୍ରୀକୃଷ୍ଣ, ଜୟ ଶ୍ରୀକୃଷ୍ଣ' ବାରମ୍ବାର କହି ଧ୍ରୁବ ସେହି ଦିବ୍ୟ ପୁରୁଷଙ୍କ ପାଦତଳେ ବାରମ୍ବାର ପ୍ରଣାମ କଲେ।

ନନ୍ଦ, ସୁନନ୍ଦ ଦେଖିଲେ—ଧ୍ରୁବଙ୍କ ଚିତ୍ତଶ୍ୟାମସୁନ୍ଦରଙ୍କ ଚରଣାରବିନ୍ଦରେ ମଜ୍ଜି ଯାଇଛି। ଜଗନ୍ମଙ୍ଗଳ ମନୋହର ଶ୍ରୀକୃଷ୍ଣଙ୍କ ନାମ ସେ ନିରନ୍ତର ଉଚ୍ଚାରଣ କରୁଛନ୍ତି। ଅତୀବ ବିନୀତ ଭାବେ ହାତ ଯୋଡ଼ି ଆଗରେ ଠିଆ ହୋଇଛନ୍ତି। ତାଙ୍କର ନମ୍ରତା ଦେଖି ବିଷ୍ଣୁଙ୍କ ଅନୁଚର ସନ୍ତୁଷ୍ଟ ହୋଇ ଧ୍ରୁବଙ୍କୁ ପ୍ରଶଂସା କରି ମଧୁର ସ୍ୱରରେ କହିଲେ—ରାଜନ୍ ! ଆମେ ଜଗତର ନାଥ ଭଗବାନ୍ ଶାର୍ଙ୍ଗପାଣି ଶ୍ରୀହରିଙ୍କ ଦୂତ।

ଧ୍ରୁବ ବିନୀତ ଭାବେ କହିଲେ—ହେ ଦେବପ୍ରବର ! ଆପଣଙ୍କ ବେଶ ଭୂଷା ଓ ତେଜ ପ୍ରଭାବରୁ ମୁଁ ତାହାହିଁ ବୁଝିଥିଲି। ଆପଣ ମୋଠାରେ ଏପରି ସଦୟ ହେବାର କାରଣ, ଉଚିତ ମନେ କଲେ, ଦୟା କରି କହିବା ହୁଅନ୍ତୁ।

ବିଷ୍ଣୁଦୂତ ହସି ହସି ଉତ୍ତର ଦେଲେ—ମହାଭାଗ ! ଭଗବାନ୍ ବିଷ୍ଣୁ ଏହି ବିମାନ ଦେଇ ସସମ୍ମାନେ ଆପଣଙ୍କୁ ନେଇଯିବା ପାଇଁ ଆଦେଶ ଦେଇଛନ୍ତି ।

ଧ୍ରୁବ ଆଶ୍ଚର୍ଯ୍ୟ ହୋଇ ପଚାରିଲେ—ସତରେ କଣ ମୋର ଏଡ଼େ ଭାଗ୍ୟ ଅଛି ? ଭଗବାନ୍ ଏତେ ସମ୍ମାନ ଦେଇ ମୋତେ ସ୍ମରଣ କରିଛନ୍ତି ?

ବିଷ୍ଣୁଦୂତ କହିଲେ—ଏଭଳି ନମ୍ରତା ଆପଣଙ୍କ ଗୁଣ ଅନୁରୂପ ହୋଇଛି । ଆପଣତ ପାଞ୍ଚ ବର୍ଷ ବୟସରେ ଅଚ୍ୟୁତଙ୍କୁ ପ୍ରସନ୍ନ କରିଥିଲେ । ଯାବି ଜୀବନର ସାଧନାରେ ଯେଉଁ ବିଷ୍ଣୁପଦକୁ କେହି ପାଇପାରିନାହିଁ, ଆପଣ ପାଞ୍ଚ ବର୍ଷ ବୟସରେ ମାତ୍ର ଛଅଟି ମାସର ତପସ୍ୟାରେ ତାହା ପାଇଥିଲେ । ସେହି ବିଷ୍ଣୁପଦ ଅସାଧାରଣ ସ୍ଥାନ । ତିନିଲୋକକୁ ଆଲୋକିତ କରୁଥିବା ସୂର୍ଯ୍ୟ ଓ ଚନ୍ଦ୍ର ଯାହାଙ୍କ ଆଶ୍ରୟରେ ବୁଲୁଛନ୍ତି ସେହି ମହାପୁରୁଷ ବିଷ୍ଣୁଙ୍କୁ ସମସ୍ତ ଗ୍ରହ, ନକ୍ଷତ୍ର ସର୍ବଦା ପ୍ରଦକ୍ଷିଣ କରୁଛନ୍ତି । ଆପଣ ସେହି ପଦର ଅଧୀଶ୍ୱର ହୋଇପାରିଛନ୍ତି । ଆଜିଠାରୁ ଆପଣଙ୍କ ନାମରେ ତାହା ନାମିତ ହେବ । ଆଜିଠାରୁ ଲୋକେ ସେହି ବିଷ୍ଣୁପଦକୁ ଧ୍ରୁବଲୋକ ବା ଧ୍ରୁବପଦ ନାମରେ ଅଭିହିତ କରିବେ । ତିନିଲୋକରେ ବନ୍ଦିତ, ପୂଜିତ ଓ ସଲ୍ଲିତ ସେହି ଧ୍ରୁବପଦକୁ ଆପଣଙ୍କର ପିତା, ପିତାମହ ପାଇପାରିବେ ନାହିଁ । କେବଳ ଆପଣ ଆଜିଠାରୁ ସେହି ପଦର ଅଧିକାର ଗ୍ରହଣ କରିଛନ୍ତି । ସେଥିପାଇଁ ଭଗବାନ୍ ଏହି ବିମାନରେ ଆପଣଙ୍କୁ ନେବା ପାଇଁ ଆଦେଶ ଦେଇଛନ୍ତି । ହେ ଆୟୁଷ୍ମାନ ! ଆଉ ବିଳମ୍ବ ନ କରି ଆପଣ ଯଥାଶୀଘ୍ର ବିମାନ ଆରୋହଣ କରନ୍ତୁ ।

ବିଷ୍ଣୁଦୂତଙ୍କ କଥା ଶୁଣି ଧ୍ରୁବ ଖୁବ୍ ଆନନ୍ଦିତ ହେଲେ । ଏବେ ତାଙ୍କୁ ମହାପ୍ରସ୍ଥାନ କରିବାକୁ ପଡ଼ିବ, ସବୁଦିନ ପାଇଁ ଏ ପୃଥିବୀକୁ ପରିତ୍ୟାଗ କରିବାକୁ ହେବ, ଭଗବାନଙ୍କ ଦିବ୍ୟରଥ ଆରୋହଣ କରିବାକୁ ପଡ଼ିବ । ତେଣୁ ସେ ଶୀଘ୍ର ଯାଇ ଅଳକନନ୍ଦାରେ ସ୍ନାନ କଲେ । ନିଜର ସମସ୍ତ ନିତ୍ୟ କର୍ମ ସାରି ବଦରିକବନବାସୀ ମୁନି ଋଷିମାନଙ୍କ ପାଦତଳେ ଶେଷ ପ୍ରଣାମ ଜଣାଇଲେ ଏବଂ ସେମାନଙ୍କଠାରୁ ବିଦାୟ ପ୍ରାର୍ଥନା କଲେ । ଋଷିଗଣ ଧ୍ରୁବଙ୍କ କଥାଶୁଣି ଆନନ୍ଦିତ ହେଲେ ଏବଂ ବିୟୋଗଜନିତ ଦୁଃଖରେ ଅଭିଭୂତ ହେଲେ । ସେମାନେ ପ୍ରସନ୍ନ ହୃଦୟରେ ଧ୍ରୁବଙ୍କୁ ଆଶୀର୍ବାଦ ଦେଲେ । ଧ୍ରୁବଙ୍କ ମହାପ୍ରସ୍ଥାନ ଦେଖିବା ପାଇଁ କୌତୂହଳୀ ହୋଇ ମୁନିମାନେ ଦିବ୍ୟବିମାନର ଚାରିପାଖରେ ଘେରିଗଲେ । ଧ୍ରୁବ ବିମାନ ଆରୋହଣ ପାଇଁ ପ୍ରସ୍ତୁତ ହୋଇଗଲେ ।

ଏହା ଶୁଣି ବିଦୁର ପଚାରିଲେ—ଭଗବନ୍ ! ସମସ୍ତେ ପରଲୋକ ଯିବା ସମୟରେ ପଞ୍ଚଭୂତରେ ଗଠିତ ଏହି ସ୍ଥୂଳ ଦେହ ତ୍ୟାଗକରି ସୂକ୍ଷ୍ମ ଶରୀର ନେଇ ଯାଇଥାନ୍ତି । ଧ୍ରୁବ କଣ ନିଜର ମାନୁଷ ଦେହ ତ୍ୟାଗ କରିଥିଲେ ?

ହସି ହସି ମୈତ୍ରେୟ ମୁନି କହିବାକୁ ଲାଗିଲେ—ହେ ବିଦୁର ! ଭଗବାନଙ୍କୁ ଯେଉଁମାନେ ନିଜ ହୃଦୟରେ ଧାରଣ କରିଥାନ୍ତି ସେମାନଙ୍କ ଦେହ ଚିନ୍ମୟ ପାଲଟି ଯାଇଥାଏ । ସେ ଦେହ ଛାଡ଼ିବା ନ ଛାଡ଼ିବା ଇଚ୍ଛାଧୀନ । ଧ୍ରୁବ ଥିଲେ କାଳଜୟୀ । କାଳର ମସ୍ତକରେ ପାଦ ଦେଇ ସେ ଧ୍ରୁବଲୋକକୁ ଯାଇଥିଲେ ।

ମହାରାଜ ! କାଳର ମସ୍ତକରେ ପାଦ ଦେଲେ କିପରି—ପ୍ରଶ୍ନକଲେ ମହାଯୋଗୀ ବିଦୁର । ମୈତ୍ରେୟ ଉତ୍ତର ଦେଲେ ଧ୍ରୁବଙ୍କର ଇହଲୋକର କାର୍ଯ୍ୟ ଶେଷ ହେବା ଦେଖି ଏବଂ ମହାପ୍ରସ୍ଥାନ ପାଇଁ ଉଦ୍ୟତ ହେବାର ଲକ୍ଷ୍ୟ କରି କାଳ ସ୍ୱଦେହରେ ଆସି ଧ୍ରୁବଙ୍କ ପାଖରେ ଉପସ୍ଥିତ ହେଲେ । ତାକୁ ଦେଖି ଧ୍ରୁବ କହିଲେ— କଣ ଖବର ? ଆପଣ କଣ କିଛି କହିବା ପାଇଁ ଚାହୁଁଛନ୍ତି ?

ଡରି ଡରି କାଳ କହିଲେ—ପ୍ରଭୋ ! ଆପଣ ଜଣେ ଭଗବଦ୍‌ଭକ୍ତ । ଶୁଣିଛି ଭଗବାନଙ୍କ ଭକ୍ତମାନେ କେବେହେଲେ ମର୍ଯ୍ୟାଦା ଲଂଘନ କରନ୍ତି ନାହିଁ । ସେମାନେ ସମସ୍ତଙ୍କୁ ଯଥାଯଥ ସମ୍ମାନ ଦିଅନ୍ତି ଏବଂ ଲୌକିକ ମର୍ଯ୍ୟାଦା ପ୍ରତିପାଳନ କରନ୍ତି ।

ଧ୍ରୁବ ହସି ହସି ପଚାରିଲେ—ଭାଇ ! ସିଧା ସଳଖ କୁହ ଆପଣଙ୍କ ଅଭିପ୍ରାୟ କଣ ? କଥା ବୁଲାଉଛନ୍ତି କାହିଁକି ? ଆପଣ କଣ ଚାହୁଁଛନ୍ତି ?

କାଳ କହିଲେ—ମହାରାଜ ମୁଁ ସମସ୍ତଙ୍କୁ ଶେଷ କରୁଥିବା କାଳ । ମୋର ଅନ୍ୟ ନାମ ମୃତ୍ୟୁ । ପୃଥିବୀର ଯେତେ ପ୍ରାଣୀ ପରଲୋକ ଯାଆନ୍ତି ମୋର ସାହାଯ୍ୟ ନ ନେଇ କେହି ଯାଇପାରନ୍ତି ନାହିଁ । ତେଣୁ ଏ ଲୋକର ନାମ ମର୍ତ୍ତ୍ୟଲୋକ । ଆପଣ ନିଜ ଶରୀର ତ୍ୟାଗ କରନ୍ତୁ ଏହା ମୁଁ କହି ପାରିବି ନାହିଁ । କିନ୍ତୁ ଆପଣଙ୍କୁ ତ ଲୋକମର୍ଯ୍ୟାଦା ରକ୍ଷା କରିବାକୁ ପଡ଼ିବ । ମୋର ସାହାଯ୍ୟ ନିଅନ୍ତୁ । ମୋର କାର୍ଯ୍ୟକୁ ବ୍ୟର୍ଥ କରିବା ଠିକ୍ ହେବନାହିଁ । ଏହା ଶୁଣି ଧ୍ରୁବ କହିଲେ—ହଁ, ଆପଣ ଠିକ୍ କହିଛନ୍ତି । ଠିକ୍ ସମୟରେ ମଧ୍ୟ ଆସି ପହଞ୍ଚିଛନ୍ତି । ଆପଣଙ୍କର ସତ୍କାର କରିବାକୁ ହେବ । ଆପଣ ଏଇ ବିମାନ ପାଖରେ ବସିଥାଆନ୍ତୁ, ମୁଁ ଆସୁଛି ।

ମୃତ୍ୟୁ ଖୁବ୍ ଖୁସି ହୋଇଗଲେ, କାରଣ ଭଗବଦ୍ ଭକ୍ତ ଧ୍ରୁବ ତାଙ୍କର ଅପମାନ କରି ନାହାନ୍ତି । ସେ ଭାବଲେ ଧ୍ରୁବ ଯେତେବେଳେ ବିମାନ ଉପରକୁ ଯିବେ ମୁଁ ତାଙ୍କ ଶରୀରରେ ପ୍ରବେଶ କରିଯିବି । ତାଙ୍କର ଏହି ନଶ୍ୱର ଦେହ ମୋ ଅଧୀନରେ ପ୍ରାଣ ଶୂନ୍ୟ ହୋଇଯିବ । ସେ ଦିବ୍ୟ ରୂପରେ ବିମାନରେ ଚଢ଼ି ଚାଲିଯିବେ ଏହି ଆଶାରେ ସେ ବସି ରହିଲେ ।

ଏହି ସମୟରେ ଧ୍ରୁବ ମୁନିଋଷି ମାନଙ୍କୁ ପ୍ରଣାମ ଜଣାଇ ଓ ବିଦାୟ ନେଇ ଆସି ପହଞ୍ଚିଲେ । ବିମାନ ଉଚ୍ଚ ଥିଲା, ତେଣୁ ସେ ମୃତ୍ୟୁର ମସ୍ତକରେ ପାଦ ଦେଇ ଖୁବ୍ ଶୀଘ୍ର ବିମାନ ଉପରକୁ ଚାଲିଗଲେ ଓ ବିମାନକୁ ଉଡ଼ାଇ ନେଇଗଲେ । ମୃତ୍ୟୁ ଆବାକାବା ହୋଇ ଚାହିଁ ରହିଲେ । ଧ୍ରୁବଙ୍କ ବିମାନ ଆରୋହଣ ପାଇଁ ସେ କିପରି ସିଡ଼ି ପାଲଟିଲେ ତାହାହିଁ ଭାବୁଥିଲେ ।

ମୈତ୍ରେୟ ମହର୍ଷି କହିଲେ—ହେ ବିଦୁର ! ଭଗବଦ୍ ଭକ୍ତ ଏହିପରି ମୃତ୍ୟୁର ମସ୍ତକରେ ପାଦ ଦେଇ ଚାଲିଯିବାରେ ସମର୍ଥ । ସେ ମୃତ୍ୟୁ ବିଷୟରେ ଆଦୌ ଚିନ୍ତା କରନ୍ତି ନାହିଁ । ଧ୍ରୁବ ଶୁଦ୍ଧ ସୁବର୍ଣ୍ଣ ତୁଲ୍ୟ ଦେହ ଧାରଣ କରି ବିମାନରେ ଯିବାବେଳେ ଦେବଗଣ ତାଙ୍କ ଉପରେ ପୁଷ୍ପବୃଷ୍ଟି କଲେ । ଦୁନ୍ଦୁଭି, ପ୍ରଣବ, ମୃଦଙ୍ଗ ଆଦି ବାଦ୍ୟ ଘୋଷରେ ଆକାଶ ପୂରି ଉଠିଲା । ଅପ୍ସରାମାନେ ନୃତ୍ୟ କରିବାକୁ ଲାଗିଲେ । ଗନ୍ଧର୍ବଗଣ ସଙ୍ଗୀତ ଗାନ କଲେ । ସମସ୍ତେ ମିଳିମିଶି ଧ୍ରୁବଙ୍କର ଜୟଜୟକାର କଲେ ।

ସ୍ୱର୍ଗକୁ ଯିବା ବାଟରେ ଧ୍ରୁବଙ୍କ ମନରେ ମା'ଙ୍କ କଥା ଆସିଲା । ସେ ଭାବିଲେ—ଯେଉଁ ମା'ର ସବୁ ପ୍ରଦେଶରେ ମୁଁ ଶ୍ରୀହରିଙ୍କ ସାକ୍ଷାତଲାଭ କଲି ଓ ଦୁର୍ଲଭ ବିଷ୍ଣୁପଦର ଅଧିକାରୀ ହେଲି ତାକୁ ମର୍ତ୍ତ୍ୟରେ ଛାଡ଼ି ମୋର ସ୍ୱର୍ଗକୁ ଯିବା ଉଚିତ ନୁହେଁ । ବିଷ୍ଣୁଦୂତମାନେ ଥିଲେ ସର୍ବଜ୍ଞ । ସେମାନେ ଧ୍ରୁବଙ୍କ ମନୋଭାବ ଜାଣିପାରି ହସି ହସି କହିଲେ—ମହାଭାଗ ! ଆପଣ ଆଦୌ ଚିନ୍ତା କରନ୍ତୁ ନାହିଁ । ଯେ ଆପଣଙ୍କ ପରି ରତ୍ନକୁ ଜନ୍ମ ଦେଇଛନ୍ତି ସେ ମର୍ତ୍ତ୍ୟରେ ରହିବେ କିପରି ? ଏଇ ଦେଖନ୍ତୁ ଆପଣଙ୍କ ମା' ଆପଣଙ୍କ ପୂର୍ବରୁ ଦିବ୍ୟ ବିମାନରେ ବିଷ୍ଣୁଲୋକକୁ ଯାଉଛନ୍ତି । ଏହାକହି ବିଷ୍ଣୁଦୂତମାନେ ଧ୍ରୁବଙ୍କୁ ସୁନୀତି ଦେବୀଙ୍କ ବିମାନ ଦେଖାଇ ଦେଲେ । ତାହା ଦେଖି ଧ୍ରୁବ ଅତିବ ଆନନ୍ଦିତ ହେଲେ ।

ଧ୍ରୁବଙ୍କ ବିମାନ ଦ୍ରୁତବେଗରେ ସୂର୍ଯ୍ୟ ଆଦି ଗ୍ରହ ଗ୍ରହାନ୍ତର ଅତିକ୍ରମ କରି ଉପରକୁ ଉଠିଥିଲା । ବାଟରେ ସମସ୍ତେ ଧ୍ରୁବଙ୍କ ଜୟଗାନ କରୁଥିଲେ । ଏହିପରି ସ୍ୱର୍ଗଆଡ଼େ ଦେବ, ଋଷି, ଗନ୍ଧର୍ବମାନଙ୍କ ଦ୍ୱାରା ସମ୍ବର୍ଦ୍ଧିତ ହୋଇ, ତ୍ରିଲୋକ ଅତିକ୍ରମ କରି ଧ୍ରୁବ ସପ୍ତର୍ଷି ମଣ୍ଡଳ ଉପରି ଭାଗରେ ଥିବା ବିଷ୍ଣୁପଦରେ ଉପସ୍ଥିତ ହେଲେ ଏବଂ ସେ ସ୍ଥାନରେ ଅଧୀଶ୍ୱର ହୋଇ ସୁଖରେ ଅବସ୍ଥାନ କଲେ ।

## ଛପ୍‌ପୟ୍

"ଆଜ୍ଞା ସବନ୍ତେଁ ଲଇ ଚଢ଼ୂଁ ଧ୍ରୁବ ଜହୀ ବିମ୍ବରେଁ ।
ଆୟୌ ତବଇ କାଲ ପ୍ରଭୌ ! ମୋ କୁଁ ସ୍ୱୀକାରେଁ ॥
ବୋଲେ ଧ୍ରୁବତୂ—ବୈଠି ମାନ ରାଖୂଁ ତେରୋଉ ।
ଭକ୍ତ କରେ ସତ୍କାର ଗ୍ରହିଁ ଆପେୈ ତିଂଗ କୋଉ ॥
ମୃତ୍ୟୁ ମୂର୍ଦ୍ଧ୍ନିପଦ ଦୈ ଚଢ଼େ, ହରି ବିମାନ ଚଟ ଚଲି ଦୟୌ ।
ଅପନୈଁ ସୋ ମୈଁହଡ଼ୋ କର୍‌ୟୌ,
ମୃତ୍ୟୁ ଖିସ୍ୟାନୋ ରହିଗୟୌ ॥"



# ଧ୍ରୁବ ମାହାତ୍ମ୍ୟ

"ନୂନଂ ସୁନୀତେଃ ପତିଦେବତାୟାସ୍ତପଃ
ପ୍ରଭାବସ୍ୟ ସୁତସ୍ୟ ତାଂ ଗତିମ୍ ।
ଦୃଷ୍ଟ୍ୱା ବା ଭ୍ୟୁପାୟାନପି ବେଦବାଦିନୋ
ନୈବାଧିଗନ୍ତୁଂ ପ୍ରଭବନ୍ତି କିଂ ନୃପାଃ ॥"
( ଭାଗ—୪. ୧୨-୪୧ )

## ଛପ୍ପୟ

"ଧ୍ରୁବ ଲୀତେୟା ହର ଧାମ ଜାଇ ନହିଁ ପାପୀ ପାୱେଁ ।
ସମଦରସୀ ଶୁଭ ଶାନ୍ତ ଶୁଦ୍ଧ ଜନ ଇ କହିଁ ଜାୱେଁ ॥
ଦେବ ହୁ ଜିନକେ ପରମପୁଣ୍ୟ କୋ ପାର ନ ପାୱେଁ
ଗୁରୁ ହୂ ଗୁରୁତ ତ୍ୟାଗି ଶିଷ୍ୟ ଗୁନ ଗୌରବ ଗାୱେଁ ॥
ଧନ୍ୟ ଧନ୍ୟ ଧ୍ରୁବ ଧନ୍ୟ ତବ, ଜନନୀ ମାତୁ ସୁନୀତି ହୈଁ ।
ଧନ୍ୟ ହୃଦୟ ତୁବ ଜାହୁମହଁ, ପ୍ରଭୁପଦ ପଙ୍କଜ ପ୍ରୀତି ହୈଁ ॥"

ପ୍ରଭୁ ଯାହା ଉପରେ ପ୍ରସନ୍ନ ତା'ର ଏ ସଂସାରରେ ଦୁର୍ଲଭ ହୋଇ କିଛି ରହେ ନାହିଁ । କିନ୍ତୁ ପ୍ରଭୁଙ୍କ ପ୍ରେମ ଲାଭ କରି ନଥିବା ବ୍ୟକ୍ତି ସବୁ ଥାଇ ମଧ୍ୟ କିଛି ପାଇପାରେ ନାହିଁ । ଭକ୍ତି ଭାବରେ ଯେ ଭଗବାନଙ୍କୁ ପ୍ରସନ୍ନ କରିପାରିଛି ସେହି ଭକ୍ତର ଜୀବନ ଧନ୍ୟ, ଜଗତରେ ସେ ହିଁ ସଫଳ ପୁରୁଷ, ତା'ର ଜନନୀ ଯୋଗ୍ୟା ଜନନୀ, ଧନ୍ୟା, ପୂଜନୀୟା, ସେହି ଭକ୍ତର ପୁରୁଷାର୍ଥ ହିଁ ଯଥାର୍ଥ ପୁରୁଷାର୍ଥ । ଭଗବତ୍ କୃପାଲବ୍ଧ ଭକ୍ତ ସର୍ବ ପୂଜନୀୟ, ବନ୍ଦନୀୟ ଓ ପ୍ରାତଃ ସ୍ମରଣୀୟ ।

ଯେପରି ଭକ୍ତର ପବିତ୍ର ସ୍ପର୍ଶରେ ଅପବିତ୍ର ଭୂମି ପବିତ୍ର ହୁଏ ଏବଂ ତା'ର ବିମଳ ଚରିତ୍ରର ପ୍ରଭାବରେ ଦୁଃଖମୟ ସଂସାର ସୁଖମୟ ପାଲଟି ଯାଏ ।

ମୈତ୍ରେୟ ମୁନି କହିବାକୁ ଲାଗିଲେ—ହେ ବିଦୁର ! ଧ୍ରୁବଙ୍କ ଭାଗ୍ୟ ବିଷୟରେ ଯେତେ ଆଲୋଚନା କଲେ ମଧ୍ୟ ଅପୂର୍ଣ୍ଣ ହୋଇ ରହିଯିବ । କାରଣ ସେ ଯେଉଁ ଅକ୍ଷୟ ବିଷ୍ଣୁପଦ ଲାଭ କଲେ, ବେଦବିଦ୍‌ଗଣ କଠୋର ସାଧନା ବଳରେ ବହୁ ଜନ୍ମ ପରେ ତାହା ପାଇବାକୁ ସମର୍ଥ ହୋଇଥାନ୍ତି । ଯେଉଁମାନେ ପୁଣ୍ୟହୀନ, ତପସ୍ୟା ଓ ସତ୍‌କର୍ମରହିତ ସେପରି ଲୋକଙ୍କ କଥା ପଚାରେ କିଏ ? ସେମାନେ ବିଷ୍ଣୁପଦର କଳ୍ପନା କରିବା ପାଇଁ ମଧ୍ୟ ଅସମର୍ଥ ଧ୍ରୁବଲୋକ ସୂର୍ଯ୍ୟ ଚନ୍ଦ୍ରଙ୍କ ଆଲୋକରେ ନୁହେଁ, ନିଜ ପ୍ରକାଶରେ ପ୍ରକାଶିତ ହୁଏ । ତାହାର ଆଲୋକରେ ତିନି ଲୋକ ଆଲୋକିତ ହୁଏ । ସୂର୍ଯ୍ୟ ଚନ୍ଦ୍ର ଧ୍ରୁବ ଲୋକକୁ ଆଶ୍ରୟ କରି ପରିଭ୍ରମଣ କରନ୍ତି । ଅନବରତ ଶୁଦ୍ଧ କର୍ମ ଆଚରଣ କରୁଥିବା କୃଷ୍ଣାର୍ପିତ ବୁଦ୍ଧିର ଲୋକେ ବିଷ୍ଣୁପଦ ଲାଭ କରି ଥାନ୍ତି । ନିର୍ଦ୍ଦୟ, ଅଶୁଚିସମ୍ପନ୍ନ, ପାପୀଲୋକ-ମାନଙ୍କ ପକ୍ଷରେ ତାହା ଦୁର୍ଜ୍ଞେୟ । ଯେଉଁମାନେ ସମଦର୍ଶୀ, ଶାନ୍ତ, ଶୁଦ୍ଧ, ସରଳ ପରୋପକାରୀ ସେମାନେ ଧ୍ରୁବଲୋକରେ ବାସ କରନ୍ତି । ପ୍ରଭୁଙ୍କ ଅପାର କରୁଣା ବଳରେ ସୁନୀତି ନନ୍ଦନ, ମହାରାଜ ଉତ୍ତାନପାଦଙ୍କ ଯଶସ୍ୱୀ ସନ୍ତାନ, ପରମଭାଗବତ ଧ୍ରୁବ ହିଁ ବିଷ୍ଣୁପଦ ଲାଭ କରିଥିଲେ । ତିନିଲୋକରେ ତାହାହିଁ ଶ୍ରେଷ୍ଠ ସ୍ଥାନ । ଧାନ ପଚୁଳ ବା ବେଙ୍ଗଲା ପକାଇବାବେଳେ ମଝିରେ ଏକ ଖୁଣ୍ଟ ପୋତି ଦିଆଯାଏ । ସେହି ଖୁଣ୍ଟରେ ଦାଉଣି ବାନ୍ଧି ବଳଦଙ୍କୁ ଯୋଚାଯାଏ । ସେହି ପରି ସମଗ୍ର ଗ୍ରହ, ନକ୍ଷତ୍ରଗଣଙ୍କର ଧ୍ରୁବ ହେଉଛନ୍ତି ମହାଦଣ୍ଡି । ମହାଦଣ୍ଡିକୁ ଆଶ୍ରୟ କରି ବଳଦ ପଚୁଳରେ ବୁଲିଲା ପରି ଗ୍ରହନକ୍ଷତ୍ରଗଣ ଧ୍ରୁବଙ୍କୁ ଆଶ୍ରୟ କରି ପରିକ୍ରମଣ କରୁଛନ୍ତି । ଜନନୀ ସୁନୀତିଙ୍କ ସହିତ ଧ୍ରୁବ ଆଜିବି ଉତ୍ତର ଆକାଶରେ ତାରା ସଦୃଶ ଦେଖାଯାଉଛନ୍ତି ଏବଂ ଭଗବଦ୍‌ଭକ୍ତିର ପ୍ରକାଶରେ ପ୍ରକାଶିତ ହେଉଛନ୍ତି ।

ପୂର୍ବରୁ କହିଛୁ, ଯେ ମହତ୍ତ୍ୱପୂର୍ଣ୍ଣ କରନ୍ତି ତାଙ୍କର ପୂଜନୀୟ ଓ ସମ୍ମାନନୀୟ ଗୁରୁଜନମାନେ ମଧ୍ୟ ସମ୍ମାନିତ ଆସନର ଅଧିକାରୀ ହୁଅନ୍ତି ଭକ୍ତ ଭଗବାନଙ୍କୁ ଦର୍ଶନ କରିବା ପାଇଁ ଯାଏ, କିନ୍ତୁ ସ୍ୱୟଂ ଭଗବାନ୍ ଧ୍ରୁବଙ୍କୁ ଦର୍ଶନ କରିବା ପାଇଁ ମଧୁବନକୁ ଆସିଲେ । ପୁତ୍ର ପିତାଙ୍କୁ ସ୍ୱାଗତ କରିବାକୁ ଯାଏ, କିନ୍ତୁ ମହାରାଜ ଉତ୍ତାନପାଦ ପୁତ୍ର ଧ୍ରୁବଙ୍କୁ ସ୍ୱାଗତ ଜଣାଇବା ପାଇଁ ନିଜେ ଆସିଲେ । ଶିଷ୍ୟ ଗୁରୁଙ୍କ ଗୁଣ, ଗୌରବ ଗାନ କରନ୍ତି, କିନ୍ତୁ ପ୍ରଚେତାଗଣଙ୍କ ଗୁରୁ ସ୍ୱୟଂ ନାରଦ ନିଜର ଶିଷ୍ୟ ଧ୍ରୁବଙ୍କ ଗୁଣଗାନ କରିଥିଲେ । ହରିଗାଥା ଗାନ କରିବା ସଙ୍ଗେ ସଙ୍ଗେ ନାରଦ, ହରିଦାସ ଧ୍ରୁବଙ୍କ ମହତ୍ତ୍ୱ ପ୍ରଖ୍ୟାପନ କରିଥିଲେ ।

ଏହା ଶୁଣି ବିଦୁର ପଚାରିଲେ—ଭଗବାନ୍ ! ଦେବର୍ଷି ନାରଦ କିପରି ପ୍ରଚେତାଗଣଙ୍କ ଯଜ୍ଞରେ ଧ୍ରୁବଙ୍କ ଗୁଣ ଗାନ କଲେ ତାହା ବିସ୍ତୃତଭାବେ ବୁଝାଇ ଦିଅନ୍ତୁ । ଧ୍ରୁବଙ୍କ ଚରିତ ଯେତେ ଶୁଣିଲେ ମଧ୍ୟ ମୋର ତୃପ୍ତି ଆସୁନାହିଁ ।

ମୈତ୍ରେୟ କହିଲେ—ପ୍ରଚେତାମାନେ ନିଜ ରାଜଧାନୀ ବ୍ରହ୍ମାବର୍ତ୍ତିର ଗଙ୍ଗାନଦୀ ତୀରରେ ଏକ ବିରାଟ ଯଜ୍ଞାନୁଷ୍ଠାନ କରିଥିଲେ । ହରିଗୁଣ ଗାନ କରିବା ପାଇଁ ସ୍ୱର୍ଗର ଗନ୍ଧର୍ବଗଣ ନିମନ୍ତ୍ରିତ ହୋଇ ସେଠାକୁ ଆସିଥିଲେ । ସେହି ସମୟରେ ନାରଦ ଭଗବାନଙ୍କ ମହିମା କୀର୍ତ୍ତନ ଅବସରରେ ପ୍ରସଙ୍ଗବଶତଃ ଧ୍ରୁବଙ୍କ ସମ୍ବନ୍ଧରେ ଗୀତ ଗାନ କରିଥିଲେ । ସେହି ଗୀତ ଶୁଣି ଉପସ୍ଥିତ ସମସ୍ତେ ସ୍ତମ୍ଭୀଭୂତ ହୋଇ ଯାଇଥିଲେ । ନାରଦ ଯଥୋଚିତ ଆଲାପ ପରେ ଗାଇଥିଲେ—ସୁନୀତି ଜଗଦ୍‌ବନ୍ଦନୀୟା ମହାୟଶସ୍ୱୀ ନାରୀ ଥିଲେ । ତାଙ୍କର ପୁଅ ଥିଲେ ଭକ୍ତ ଚୂଡ଼ାମଣି ଧ୍ରୁବ । ପୁଅକୁ ବୁଝାଇବା ଆଳରେ ସୁନୀତି ସାଧନାର ମାର୍ଗ ବିଷୟରେ ଶିକ୍ଷା ଦେଇଥିଲେ । ଧ୍ରୁବ ସାବତ୍ରୁଣୀମା'ର ବାକ୍ୟବାଣରେ ମର୍ମାହତ ହୋଇ ରାଜବାଟୀ ଛାଡ଼ି ହରିଦର୍ଶନ ପାଇଁ ବଣକୁ ପଳାଇଗଲେ । ଭକ୍ତର ଡାକରେ ହରିଙ୍କ ହୃଦୟ ତରଳିଗଲା । ସେ ଧ୍ରୁବଙ୍କୁ ଦର୍ଶନ ଦେଲେ । ହରିଦର୍ଶନ ଫଳରେ ଧ୍ରୁବ ଦୁର୍ଲଭ ବିଷ୍ଣୁପଦ ଲାଭ କଲେ । ଏହିପରି ଧ୍ରୁବଚରିତ ଗାଇବା ପରେ ନାରଦ ସ୍ୱେଚ୍ଛାପୂର୍ବକ ପ୍ରଚେତାଗଣଙ୍କ ଯଜ୍ଞସ୍ଥଳରୁ ପ୍ରସ୍ଥାନ କରିଥିଲେ ।

ବିଦୁର ! ଆପଣ ମହାଭାଗବତ, ପରମଯଶସ୍ୱୀ ଧ୍ରୁବଙ୍କ ଚରିତ ଶୁଣିବା ପାଇଁ ଇଚ୍ଛା କରିଥିଲେ, ତାହା ମୁଁ ସଂକ୍ଷେପରେ କହିଲି । ଏବେ ଆପଣ ଆଉ କଣ ଜାଣିବା ପାଇଁ ଚାହୁଁଛନ୍ତି ? ମୈତ୍ରେୟଙ୍କ ପ୍ରଶ୍ନ ଶୁଣି ବିଦୁର କହିଲେ—ମହାରାଜ ! ସେହି ଧ୍ରୁବଚରିତ ଶ୍ରବଣର ମାହାତ୍ମ୍ୟ କହନ୍ତୁ, ଯାହା ଶ୍ରୋତାମାନଙ୍କ ମନରେ ଅଧିକ ପ୍ରୀତି ଉତ୍ପନ୍ନ କରିବ ।

ଏହା ଶୁଣି ମହର୍ଷି ମୈତ୍ରେୟ କହିଲେ—ମହାଭାଗ, ବିଦୁର ! ଭକ୍ତମାନଙ୍କ ଚରିତର ମାହାତ୍ମ୍ୟ ବର୍ଣ୍ଣନା କରିବାରେ ସ୍ୱୟଂ ସରସ୍ୱତୀଙ୍କର ମଧ୍ୟ ଶକ୍ତି ନାହିଁ । ମୁଁ ତ ଜଣେ ସାଧାରଣ ଲୋକ । ଧ୍ରୁବଙ୍କ ଚରିତ ଶ୍ରବଣରେ ଧନ, ଧାନ୍ୟ, ପୁତ୍ର, ପୌତ୍ର, ଯଶକୀର୍ତ୍ତି ଓ ଆୟୁବୃଦ୍ଧି ହୁଏ । ଏହା ପାପତାପନାଶକ । ଧ୍ରୁବ ଚରିତ ଶୁଣିବା ଲୋକ ସ୍ୱର୍ଗ ତଥା ଧ୍ରୁବଲୋକ ଲାଭ କରେ । ଏହା ଶୁଣିଲେ ବିଦ୍ୟାର୍ଥୀର ବିଦ୍ୟା, ଧନ୍ୟାର୍ଥୀର ଧନ, ପୁତ୍ରାର୍ଥୀର ପୁତ୍ର, ମନସ୍ୱୀର ମାନ, ତପସ୍ୱୀର ତପ, ଯଶସ୍ୱୀର ଯଶ ବୃଦ୍ଧି ଲାଭ କରେ । ଏହା ସର୍ବସିଦ୍ଧିପ୍ରଦ ।

ଧ୍ରୁବଚରିତ କେତେବେଳେ ଶୁଣିବା ଉଚିତ ବୋଲି ବିଦୁର ପ୍ରଶ୍ନ କରିବାରୁ ମୈତ୍ରେୟ କହିଲେ—ସେଥିପାଇଁ କିଛି ନିତି ନିୟମ ନାହିଁ । ଯେତେବେଳେ ସୁବିଧା ମିଳିବ ସେତେବେଳେ ଧ୍ରୁବଚରିତ ପଠନ ଓ ଶ୍ରବଣ କରାଯାଇପାରେ । ପୂର୍ଣ୍ଣିମା, ଅମାବାସ୍ୟା, ଏକାଦଶୀ, ଦ୍ୱାଦଶୀ, ଶ୍ରବଣାନକ୍ଷତ୍ର, କ୍ଷୟତିଥି, ବ୍ୟତିପାତଯୋଗ, ସଂକ୍ରାନ୍ତି ଆଦି ଦିନରେ ଏହାର ପଠନ, ପାଠନ, ଶ୍ରବଣ, ମନନ ଓ ଆଲୋଚନା କରିବା ବାଞ୍ଛନୀୟ । ଯଦି କାର୍ଯ୍ୟାର୍ଥୀ ଏସବୁ ଦିନରେ ସମୟ ନ ପାଏ ତେବେ ରବିବାର ଦିନ ଶୁଣିବେ । ସାଙ୍ଗସାଥିଙ୍କୁ ଶୁଣାଇବେ ।

ମୈତ୍ରେୟ ମୁନି ଆନନ୍ଦର ସହିତ କହିବାକୁ ଲାଗିଲେ—ବିଦୁର ! ଆପଣ ବି ଜଣେ ବଡ଼ ଭକ୍ତ । ସେଥିପାଇଁ ଏହି କ୍ଷୁଦ୍ର ବାଳକ ଭକ୍ତ ଧ୍ରୁବର ଚରିତ କହିଲେ । ଭଗବାନ ତୁମର ମଙ୍ଗଳ କରନ୍ତୁ । ତୁମରି ପାଇଁ ମୋର ବାଣୀ ପବିତ୍ର ହୋଇଗଲା । ଲେଖିବା ଲୋକର ଲେଖନୀ ଧନ୍ୟ ହେଲା ଏବଂ ଶୁଣିବା ଲୋକର କର୍ଣ୍ଣ ପବିତ୍ର ହେଲା ।

## ଛପ୍ପୟ

"ଅତି ପବିତ୍ର ଯହି ଚରିତ ଜାହି ଜେ ନିଶିଦିନ ଗାଓଁ ।
ତେ ନିଶ୍ଚୟ ହି ପୁରୁଷ ପ୍ରେମ ପ୍ରଭୁପଦ କୋ ପାଓଁ ॥
ଜେ ଶ୍ରଦ୍ଧାତେଂ ପଢ଼େଂ ସୁନେ ପଢ଼ି ସବନି ସୁନାଓଁ ।
ପାଇ ପରମ ପଦ ପୁଣ୍ୟ ଜଗତ ମହିଁ ନହିଁ ଫିର ଆଓଁ ॥
ବାଳ ସୁଲଭ କ୍ରୀଡ଼ା ତଜୀ, ତପ କରି ଅକ୍ଷୟ ପଦ ଲହ୍ୟୋ ।
ଉନି ଧ୍ରୁବଜୀ କୋ ବିଦୁରି ! ଯହି, ବିମଲ
ଚରିତ ତୁମତେଂ କହ୍ୟୋ ॥"



# ଧ୍ରୁବଙ୍କ ବଂଶ ପରିଚୟ

"କେ ତେ ପ୍ରଚେତସୋ ନାମ କସ୍ୟାପତ୍ୟାନି ସୁବ୍ରତ ।
କସ୍ୟାନ୍ୱବାୟେ ପ୍ରଖ୍ୟାତାଃ କୁତ୍ର ବା ସତ୍ରମାସତ ।"
( ଭାଗ—୪. ୧୩-୨ )

## ଛପ୍ପୟ

"ଅତି ଆନନ୍ଦିତ ଭୟୋ ବିଦୁର ବର ବୋଲେ ବାନୀ ।
ଭଗବାନ୍ ! ଧ୍ରୁବକୀ କହୀ, କଳିତ କମନୀୟ କହାନୀ ।।
କହୋ, ପ୍ରଚେତା କବନ କହାଁ ଶୁଭ ସତ୍ର ରଚ୍ୟୋ ।
କୈସେ ନାରଦ ଜାଇ ଉହାଁ ଧ୍ରୁବ କୋ ଗୁନ ଗାୟୋ ।।
ସୁନି ଅତି ପାବନ ପ୍ରଶ୍ନକୁଁ, ହଂସି ବୋଲେ ମୈତ୍ରେୟ ମୁନି ।
ଭୟେ ପ୍ରଚେତା ବଂଶ ଧ୍ରୁବ, ତାକୋ ବରନନ ବିଦୁର ' ସୁନି ।"

ଯେଉଁ ବଂଶରେ ଜଣେ ଭଗବଦ୍‌ଭକ୍ତ ଜାତ ହୁଏ ତା'ଦ୍ୱାରା ସେ ବଂଶ ପବିତ୍ର ହୁଏ । ଯେଉଁ ଦେଶରେ ପରମ ଭାଗବତ ଜନ୍ମହୁଅନ୍ତି ସେ ଦେଶ ପବିତ୍ରତୀର୍ଥ ପାଲଟି ଯାଏ । ଭକ୍ତଙ୍କୁ ଜନ୍ମ ଦେଇଥିବା ଜନନୀ ଧନ୍ୟ, ବଂଶ ଧନ୍ୟ, ସେ ଦେଶ ଧନ୍ୟ ଓ ସେ ପୁରୁଷ ଧନ୍ୟ ଯେ ସେହି କୁଳରେ ଜନ୍ମ ଗ୍ରହଣ କରେ । ଶ୍ରେଷ୍ଠ ସ୍ଥାନ ଲାଭ କରିବାର କେତେକ କାରଣ ଅଛି । ବିଦ୍ୟା, ତପସ୍ୟା, ସତ୍କର୍ମ, ଧନ ଆଦି ବିଭବଦ୍ୱାରା ମଣିଷ ଶ୍ରେଷ୍ଠ ଆସନର ଅଧିକାରୀ ହୁଏ । କିନ୍ତୁ ଏସବୁ ମଧ୍ୟରେ ସତ୍‌କୁଳରେ ଜନ୍ମ ହେବାଦ୍ୱାରା ଲୋକ ଅଧିକ ପ୍ରଶଂସାର୍ହ ହୁଏ । ଧନ ଆଜି ଅଛି କିନ୍ତୁ କାଲି ନଷ୍ଟ ହୋଇଯାଇପାରେ । ଖରାପ କାମ କଲେ ତପସ୍ୟା ଓ ସତ୍କର୍ମ ଜନିତ ସୁନାମ ରହେ ନାହିଁ । ଯଶ ମଧ୍ୟ ଅପଯଶରେ ପରିଣତ ହୁଏ । କିନ୍ତୁ କୁଳର

ଗୌରବ ଏ ଦେଶ ଥିବାଯାଏ ରହିବ । କୁକର୍ମ କଲେ ମଧ୍ୟ ଲୋକେ ବଂଶମର୍ଯ୍ୟାଦାକୁ ଭୁଲି ପାରନ୍ତି ନାହିଁ । ସେଥିପାଇଁ ପୂର୍ବେ କୁଳୀନତାର ଆଦର ଥିଲା । କୁଳୀନ ଗୁଣହୀନ ବ୍ୟକ୍ତି ତୁଳନାରେ ଅକୁଳୀନ ଗୁଣୀ ଲୋକଙ୍କୁ ସମ୍ମାନ ଦିଆଯାଉ ନ ଥିଲା । କାରଣ ବାହ୍ୟଗୁଣ ନ ଥିଲେ ମଧ୍ୟ କୁଳୀନର କୁଳ ପରମ୍ପରାଗତ ସ୍ୱଭାବ ନଷ୍ଟ ହେଉ ନ ଥିଲା । ଏ କଳି କାଳରେ ସେ ସବୁର ଗୁରୁତ୍ୱ ଆଉ ନାହିଁ । ଲୋକ ଯଶ, ଐଶ୍ୱର୍ଯ୍ୟ ଓ ଧନବଳରେ ସମାଜରେ ଶ୍ରେଷ୍ଠ ସ୍ଥାନ ଲାଭ କରୁଛନ୍ତି ।

ଧ୍ରୁବଙ୍କ ପବିତ୍ର ଚରିତ୍ର ଶୁଣି ନୈମିଷାରଣ୍ୟବାସୀ ମୁନିଗଣ ପ୍ରଶଂସା ପୂର୍ବକ କହିଲେ—ମହାଭାଗ ସୂତ ! ଆପଣଙ୍କ ବାଣୀ ଅତି ମଧୁର । କଥା କହିବାର ଶୈଳୀ ଆପଣ ପିତାଙ୍କ ପାଖରୁ ଭଲ ଭାବରେ ହାସଲ କରିଛନ୍ତି । ଆପଣଙ୍କ କଥାରେ ଅଧିକରୁ ଅଧିକ ଉତ୍କଣ୍ଠା ଜାତ ହେଉଛି । ମହାମାନ୍ୟ ବିଦୁର ଧ୍ରୁବଚରିତ ଶୁଣି-ସାରିବା ପରେ ମହର୍ଷି ମୈତ୍ରେୟଙ୍କୁ ଆଉ କ'ଣ ପଚାରିଥିଲେ ତାହା ଆମ୍ଭମାନଙ୍କୁ ଦୟାକରି କୁହନ୍ତୁ ।

ଏହା ଶୁଣି ମହର୍ଷି ସୂତ କହିଲେ— ହେ ମୁନିଗଣ ! ଆପଣମାନଙ୍କୁ ପାଇ କୃତକୃତ୍ୟ ହେଲି । ଆପଣମାନଙ୍କ ପରି ଭକ୍ତିପ୍ରବଣ ଲୋକ ମୁଁ ଦେଖି ନାହିଁ । ପରେ କ'ଣ ହେଲା ତାହା ମୁଁ କହୁଛି ଆପଣମାନେ ମନଦେଇ ଶୁଣନ୍ତୁ । ମୁନି ମୈତ୍ରେୟଙ୍କଠାରୁ ଧ୍ରୁବଚରିତ ଶୁଣିବା ପରେ ବିଦୁରଙ୍କ ଶରୀର ରୋମାଞ୍ଚିତ ହୋଇ ଉଠିଲା । ସେ ପଚାରିଲେ – ବ୍ରହ୍ମନ୍ ! ଆପଣ କହିଲେ ପ୍ରଚେତାମାନଙ୍କ ଯଜ୍ଞସ୍ଥାନରେ ମହର୍ଷି ନାରଦ ଧ୍ରୁବଙ୍କ ଗୁଣଗାନ କରିଥିଲେ । ସେଇ ପ୍ରଚେତା ଗଣଙ୍କ ପରିଚୟ ମୋତେ ବୁଝାଇ ଦିଅନ୍ତୁ । ସେମାନେ କେଉଁ ବଂଶରେ ଜନ୍ମ ହୋଇଥିଲେ ଏବଂ କେଉଁଠି ଯଜ୍ଞ କାର୍ଯ୍ୟ କରିଥିଲେ ।

ବିଦୁରଙ୍କ ପ୍ରଶ୍ନ ଶୁଣି ମୈତ୍ରେୟ କହିଲେ— ଆପଣ ଜଣେ କଥାରସିକ । ଆପଣ ଠିକ୍ ପ୍ରଶ୍ନଟିଏ କହିଛନ୍ତି । ଏହି ପ୍ରଶ୍ନର ଉତ୍ତରରେ ବହୁ କଥାର ସମାବେଶ ଘଟିଛି । ଏହି ପ୍ରଚେତାଗଣ ଧ୍ରୁବଙ୍କ ବଂଶରେ ହିଁ ଜନ୍ମ ଗ୍ରହଣ କରିଥିଲେ ।

ମହାଭାଗବତ ଧ୍ରୁବଙ୍କ ବଂଶରେ ଯେଉଁ ମହାପୁରୁଷମାନେ ଜନ୍ମ ହୋଇଥିଲେ ସେମାନଙ୍କ ଚରିତ ଶୁଣିବାରେ ବିଦୁର ଆଗ୍ରହୀ ଥିବାର ଲକ୍ଷ୍ୟ କରି ମୈତ୍ରେୟ କହିବାକୁ ଲାଗିଲେ— ମୁଁ ଆପଣଙ୍କୁ ପୂର୍ବରୁ କହିଛି ଯେ ମନୁପୁତ୍ର ମହାରାଜ ଉତ୍ତାନ-ପାଦଙ୍କର ଧ୍ରୁବ ଓ ଉତ୍ତମ ନାମରେ ଦୁଇ ପୁଅ ଥିଲେ । ଉତ୍ତମ ବିବାହ ପୂର୍ବରୁ ଯକ୍ଷମାନଙ୍କ ହାତରେ ମୃତ୍ୟୁବରଣ କରିଥିଲେ । ତେଣୁ ତାଙ୍କ ବଂଶ ଲୋପ ପାଇଗଲା ।

ଧ୍ରୁବଙ୍କ ବଂଶଧାରା ପ୍ରବାହିତ ଥିଲା । ତାହାହିଁ ନାରଦ ପ୍ରଚେତାମାନଙ୍କ ଯଜ୍ଞରେ ବର୍ଣ୍ଣନା କରିଥିଲେ ।

ଏହା ଶୁଣି ବିଦୁର ପଚାରିଲେ—ମହାଭାଗ ! ମହର୍ଷି ନାରଦ ଯେଉଁ ବଂଶର ବର୍ଣ୍ଣନା କରିଥିଲେ ତାହା ନିଶ୍ଚୟ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ନାରଦ ସ୍ୱୟଂ ଭଗବାନଙ୍କ ଅଂଶବତାର । ତାଙ୍କଠାରୁ ବଳି ଅନ୍ୟ କେହି ଭାଗବତ ଏ ସଂସାରରେ ନାହିଁ । ସେ ପଞ୍ଚରାତ୍ର ଆଦି ଶାସ୍ତ୍ରର ରଚୟିତା ଓ କ୍ରିୟାଯୋଗ ପଦ୍ଧତିର ପ୍ରବର୍ତ୍ତକ । ସେ ପ୍ରଚେତା ଗଣଙ୍କ ଯଜ୍ଞରେ ଯେଉଁ ମହାପୁରୁଷ ମାନଙ୍କ ଚରିତ ଗାନ କରୁଥିଲେ ଆପଣ ତାହା ବିସ୍ତୃତଭାବେ ବର୍ଣ୍ଣନା କରନ୍ତୁ । ଆପଣଙ୍କ ମୁହଁରୁ କଥା ଶୁଣିବାରେ ମୋର ତୃପ୍ତି ଆସୁ ନାହିଁ ।

ମୈତ୍ରେୟ କହିଲେ—ହେ ବ୍ୟାସନନ୍ଦନ ବିଦୁର ! ଧ୍ରୁବଙ୍କର ଇଳା ଓ ଭ୍ରମି ନାମରେ ଦୁଇ ରାଣୀ ଥିଲେ । ଇଳାଙ୍କ ଗର୍ଭରୁ ଉତ୍କଳ ଓ ଭ୍ରମିଙ୍କ ଗର୍ଭରୁ ବତ୍ସର ନାମରେ ଦୁଇ ପୁଅ ଜନ୍ମ ହେଲେ । ନିୟମ ଅନୁସାରେ ଉତ୍କଳ ରାଜସିଂହାସନର ଅଧିକାରୀ ଥିବାରୁ ତାଙ୍କୁ ରାଜ୍ୟଭାର ସମର୍ପଣ କରି ଧ୍ରୁବ ବନ ଗମନ କରିଥିଲେ । ପିତାଙ୍କ ଆଦେଶକୁ ପ୍ରତ୍ୟାଖ୍ୟାନ କରିବାର ସାମର୍ଥ୍ୟ ଉତ୍କଳଙ୍କର ନ ଥିଲା । କିନ୍ତୁ ପିତାଙ୍କ ବନଗମନ ପରେ ଉତ୍କଳଙ୍କର ରାଜ୍ୟଶାସନ କରିବାର ଇଚ୍ଛା ରହିଲା ନାହିଁ । ତେଣୁ ତାଙ୍କ ଶାସନରେ ପ୍ରଜାବର୍ଗ ଭୀଷଣ ଅସନ୍ତୁଷ୍ଟ ହେଲେ ।

କିନ୍ତୁ ଧ୍ରୁବଙ୍କ ସୁପୁତ୍ର ଉତ୍କଳ ଏପରି କି ଲୋକ ବିରୁଦ୍ଧ କାର୍ଯ୍ୟ କଲେ ଯେ ପ୍ରଜାବର୍ଗ ତାଙ୍କ ପ୍ରତି ଅସନ୍ତୁଷ୍ଟ ହେଲେ । ସେ କିପରି ଏତେ କ୍ରୂରକର୍ମୀ ହେଲେ ? ବିଦୁରଙ୍କର ଏପରି ପ୍ରଶ୍ନ ଶୁଣି ମୈତ୍ରେୟ କହିବାକୁ ଲାଗିଲେ— ଶାସ୍ତ୍ରକାରମାନଙ୍କ ସିଦ୍ଧାନ୍ତ ଅନୁସାରେ ପବିତ୍ର ବଂଶରେ ଯୋଗଭ୍ରଷ୍ଟ ପୁରୁଷମାନେ ଜନ୍ମ ହୁଅନ୍ତି । ଧ୍ରୁବ ସେହିପରି ଜଣେ ଯୋଗଭ୍ରଷ୍ଟ ପୁରୁଷ ଥିଲେ । ସେ ଥିଲେ ପୁଣ୍ୟାତ୍ମା । ସେ ପୃଥିବୀର ଶାସନ ପରେ ଏବେ ଧ୍ରୁବଲୋକରେ ଶାସନରତ ଅଛନ୍ତି; କିନ୍ତୁ ତାଙ୍କ ପୁଅ ଉତ୍କଳ ପୂର୍ବ ଜନ୍ମରେ ପାପ ପୁଣ୍ୟରହିତ ଜଣେ ମହାଯୋଗୀ ଥିଲେ । ପୂର୍ବଜନ୍ମର ଯେତିକି ପୁଣ୍ୟ ଫଳ ଥିଲା ତାହାରି ଫଳସ୍ୱରୂପ ସେ ରାଜକୁଳରେ ଜନ୍ମ ହୋଇଥିଲେ । କିନ୍ତୁ ସେ ଥିଲେ ଜାତିସ୍ମର । ପୂର୍ବଜନ୍ମର ସବୁ କଥା ତାଙ୍କ ମନରେ ଥିଲା । ସେ ଭାବିଲେ—ଯଦି ଏ ଜନ୍ମରେ ମୁଁ ରାଜସୁଖରେ ଲିପ୍ତ ହେବି ତେବେ ମୋର ମୁକ୍ତି ସମ୍ଭବ ହେବ ନାହିଁ । ସଂସାରରେ ବାରମ୍ବାର ଜନ୍ମ ଓ ମୃତ୍ୟୁ କଷ୍ଟ ଭୋଗ କରିବି; ତେଣୁ ଏପରି କୌଣସି କାର୍ଯ୍ୟ କରିବି ଯାହାଦ୍ୱାରା ମୋତେ ଏ ରାଜକାର୍ଯ୍ୟରୁ ମୁକ୍ତି ମିଳିବ । ପ୍ରଜାମାନେ ମୋତେ ଯେପରି ରାଜସିଂହାସନରୁ ହଟାଇ ଦେବେ ସେହି

କାମ କରିବ ।' ଏହା ଭାବି ଉତ୍କଳ ସବୁ ବିଷୟରେ ବିପରୀତ ଆଚରଣ କଲେ । ପ୍ରକୃତରେ ତାଙ୍କର କିଛି ଦୋଷ ନଥିଲା । ଜନ୍ମରୁ ସେ ଶାନ୍ତଚିତ୍ତ, ଅସଙ୍ଗ, ସମଦର୍ଶୀ ଓ ଆତ୍ମଦର୍ଶୀ ଥିଲେ । ସେ ଥିଲେ ପରମ ଜ୍ଞାନୀ ଓ ଯୋଗୀ । ତାଙ୍କର ପାପ ପୁଣ୍ୟ ରୂପ ସଂସ୍କାରର ଯେତିକି ଅବଶେଷ ଥିଲା ସେଥିରେ ସେ ରାଜପୁତ୍ର ଭାବେ ରାଜସୁଖ ଭୋଗକରି ସାରିଥିଲେ । ଏବେ ସେ ସର୍ବ ସୃଷ୍ଟିଭାବେ, ଭେଦରହିତ, ଏକମାତ୍ର ଜ୍ଞାନ ସ୍ୱରୂପ, ଆନନ୍ଦମୟ, ସର୍ବବ୍ୟାପକ, ବିନାଶରୂପ ବ୍ରହ୍ମଙ୍କୁ ଆତ୍ମାରୂପେ ଗ୍ରହଣ କରି ତଦ୍ ବ୍ୟତୀତ ଅନ୍ୟ କିଛି ଦେଖୁ ନଥିଲେ । ତେଣୁ ରାଜା ହୋଇ ମଧ୍ୟ ସେ ଜ୍ଞାନର ଚରମ ସ୍ଥିତିରେ ଅବସ୍ଥାନ କରୁଥିଲେ ।

ଉତ୍କଳ ଚାଲି ଚାଲି ଯିବାବେଳେ କୌଣସି ପ୍ରତିବନ୍ଧକକୁ ଖାତିର କରୁ ନ ଥିଲେ । ହିଂସ୍ର ପଶୁଙ୍କୁ ମଧ୍ୟ ସେ ଭୟ କରୁ ନଥିଲେ । ଲୋକେ ଭାବିଲେ ରାଜା ନିଶ୍ଚୟ ଅନ୍ଧ ହୋଇଯାଇଛନ୍ତି, ତାଙ୍କୁ ଆଉକିଛି ଦେଖା ଯାଉନାହିଁ, ଲୋକେ ଯେତେ ଯାହା ପଚାରିଲେ ମଧ୍ୟ ସେ କୌଣସି ପ୍ରଶ୍ନ ନ ଶୁଣିଲା ପରି ରହୁଥିଲେ । ମନ୍ତ୍ରୀ ବା ପାରିଷଦବର୍ଗ ପ୍ରଶ୍ନ କଲେ ଉତ୍କଳ ମୂକ ହୋଇ ରହି ଯାଉଥିଲେ । ସେ ଏକ ଦଗରେ ଚାହୁଁ ଛନ୍ତି ତ ଚାହିଁଛନ୍ତି, ଏପରି ଅବସ୍ଥାରେ ଦୀର୍ଘ ସମୟ କଟିଯାଉଥିଲା । ଶୋଇଛନ୍ତି ତ ଶୋଇଛନ୍ତି, ବସିଛନ୍ତି ତ ବସିଛନ୍ତି, ଏପରି ଅବସ୍ଥାରେ ଘଣ୍ଟାଘଣ୍ଟା ବିତି ଯାଉଥିଲା । ସମସ୍ତେ ଭାବିଲେ ରାଜା ନିଶ୍ଚୟ ପାଗଳ ହୋଇଯାଇଛନ୍ତି । ରାଜକର୍ମଚାରୀଗଣଙ୍କ ସହିତ ପ୍ରଧାନ ମନ୍ତ୍ରୀ ରାଜାଙ୍କୁ କହିଲେ—'ମହାରାଜ ! ଆପଣ ତ ପାଗଳ ହୋଇଗଲେ । ଏ ରାଜସିଂହାସନ ପରିତ୍ୟାଗ କରନ୍ତୁ । ଆମେ ଅନ୍ୟ ରାଜକୁମାରଙ୍କୁ ରାଜପଦରେ ଅଭିଷିକ୍ତ କରିବୁ ।' ଉତ୍କଳ ତାହାହିଁ ଚାହୁଁଥିଲେ । ସେ ଅବିଳମ୍ବେ ରାଜ୍ୟ ତ୍ୟାଗ କରି ବଣକୁ ପଳାଇଲେ ।

ଉତ୍କଳ ଚାଲିଯିବା ପରେ ମନ୍ତ୍ରୀଗଣ ଧ୍ରୁବଙ୍କର ଦ୍ୱିତୀୟା ପତ୍ନୀ ଭ୍ରମିଙ୍କ ପୁତ୍ର ବତ୍ସରଙ୍କୁ ରାଜପଦରେ ଅଭିଷିକ୍ତ କଲେ । ବତ୍ସର ଧର୍ମପୂର୍ବକ ରାଜ୍ୟପାଳନ କରିବାକୁ ଲାଗିଲେ । ସୁନ୍ଦରୀ ସ୍ୱର୍ଥୀ ସହିତ ବତ୍ସରଙ୍କ ବିବାହ ଅନୁଷ୍ଠିତ ହେଲା । ବତ୍ସରଙ୍କ ଔରସରେ ସ୍ୱର୍ଥୀଙ୍କ ଗର୍ଭରୁ ପୁଷ୍ପାର୍ଣ୍ଣ, ତିଗ୍ମକେତୁ, ଇଷ, ଅର୍ଜ, ବସୁ ଓ ଜୟ ନାମରେ ଛ' ପୁଅ ଜନ୍ମଗ୍ରହଣ କଲେ । ଏମାନଙ୍କ ମଧ୍ୟରେ ପୁଷ୍ପାର୍ଣ୍ଣ ଥିଲେ ଜ୍ୟେଷ୍ଠ ଏବଂ ବତ୍ସରଙ୍କ ପରେ ସେ ରାଜା ହେଲେ । ପିତାମହ ଧ୍ରୁବଙ୍କ ପରି ପୁଷ୍ପାର୍ଣ୍ଣଙ୍କର ପ୍ରଭା ଓ ଜୋଷା ନାମରେ ଦୁଇ ରାଣୀ ଥିଲେ । ପ୍ରଭାଙ୍କ ଗର୍ଭରୁ ଦିବାଭାଗର ତିନିକାଳ ଦେବତା ପ୍ରାତଃ, ମଧ୍ୟାନ୍ଦିନ ଓ ସାୟଂ ନାମରେ ତିନିଜଣ ଓ ଦୋଷାଙ୍କ ଗର୍ଭରୁ ରାତ୍ରିଭାଗର ତିନିକାଳ ଦେବତା ପ୍ରଦୋଷ, ନିଶୀଥ ଓ ବ୍ୟୁଷ୍ଟ ନାମରେ ତିନିଜଣ ଜନ୍ମ ହେଲେ । ଏମାନଙ୍କ ମଧ୍ୟରେ ବ୍ୟୁଷ୍ଟ ରାଜସିଂହାସନ ଅଧିକାର କରିଥିଲେ ।

ବ୍ୟୁଷ୍ଟଙ୍କ ପତ୍ନୀ ପୁଷ୍କରଣୀଙ୍କ ଗର୍ଭରୁ ସର୍ବତେଜସ୍ ନାମରେ ପୁତ୍ର ଜନ୍ମ ଗ୍ରହଣ କଲେ । ମହାରାଜ ସର୍ବତେଜସଙ୍କ ପତ୍ନୀ ଥିଲେ ଆକୂତି । ଚକ୍ଷୁ ମନୁ ହେଲେ ତାଙ୍କର ପୁଅ । ଚକ୍ଷୁମନୁଙ୍କ ଔରସରେ ତାଙ୍କ ପତ୍ନୀ ନଡ୍ଵଲାଙ୍କ ଗର୍ଭରୁ ପରମ-ତେଜସ୍ୱୀ ପୁରୁ, କୁତ୍ସ, ତ୍ରିତ, ଦ୍ୟୁମ୍ନ, ସତ୍ୟବାନ୍, ଋତ, ବ୍ରତ ଅଗ୍ନିଷ୍ଟୋମ, ଅତିରାତ୍ର, ପ୍ରଦ୍ୟୁମ୍ନ, ଶିବ ଓ ଉଲ୍ମୁକ ନାମରେ ଦ୍ଵାଦଶ ପୁତ୍ର ଜନ୍ମ ଗ୍ରହଣ କଲେ । ଏହି ବୀର୍ଯ୍ୟ-ବାନ୍ ଜଗଦ୍ବିଖ୍ୟାତ ପୁତ୍ରମାନଙ୍କ ମଧ୍ୟରେ ଉଲ୍ମୁକ ରାଜା ହେଲେ । ଅନ୍ୟମାନେ ଦେବତ୍ଵ ଲାଭ କରିବାରୁ ସବା ସାନ ପୁଅ ରାଜା ହୋଇଥିବାର ଜଣାଯାଏ ।

ମହାରାଜ ଉଲ୍ମୁକଙ୍କ ମହର୍ଷି ଥିଲେ ପୁଷ୍କରଣୀ । ତାଙ୍କ ଗର୍ଭରୁ ଅଙ୍ଗ, ସୁମନସ୍, ଖ୍ୟାତି, କ୍ରତୁ, ଅଙ୍ଗିରସ୍ ଓ ଗୟ ନାମରେ ଛ ପୁଅ ଜନ୍ମ ହେଲେ । ଏମାନଙ୍କ ମଧ୍ୟରେ ଜ୍ୟେଷ୍ଠ ପୁତ୍ର ଅଙ୍ଗ ରାଜା ହୋଇଥିଲେ । ମହାରାଜ ଅଙ୍ଗ ମୃତ୍ୟୁଙ୍କ କନ୍ୟା ସୁନୀତାଙ୍କୁ ବିବାହ କରିଥିଲେ । ତାଙ୍କଠାରୁ କ୍ରୂରକର୍ମୀ ଦୁଷ୍ଟବେନ ଜନ୍ମ ହୋଇଥିଲେ । ଏହି ବେନ ଯାଗ ଯଜ୍ଞାଦି ଧର୍ମକାର୍ଯ୍ୟମାନ ବନ୍ଦ କରିଦେଇଥିଲେ ।

ଏହା ଶୁଣି ଶୌନକ ପଚାରିଲେ—ହେ ମତ ! ଧ୍ରୁବଙ୍କ ପବିତ୍ର ବଂଶରେ ଜନ୍ମ ହୋଇଥିବା ମହାରାଜ ଅଙ୍ଗଙ୍କ ପର୍ଯ୍ୟନ୍ତ ରାଜାମାନଙ୍କର ଚରିତ ଶୁଣିଲୁ । ଏପରି ଏକ ପବିତ୍ର କୁଳରେ ବେନ ପରି ଜଣେ କ୍ରୂରକର୍ମୀ କୁମାର କିପରି ଜନ୍ମ ଗ୍ରହଣ କଲେ ? କେଉଁ ପାପ ଫଳରେ ଏହା ଘଟିଲା, ତାହା ବିସ୍ତାରିତଭାବେ କହନ୍ତୁ । ମହର୍ଷି ସୂତ କହିଲେ—ମହାରାଜ ! ଅଙ୍ଗଙ୍କ କାହାଣୀ ପରେ ବେନଙ୍କ ଚରିତ କହିବି । ଆପଣ ମନ ଦେଇ ଶୁଣନ୍ତୁ ।

## ଛପ୍‌ପୟ

"ଧ୍ରୁବକେ ବତ୍ସର ପୁତ୍ର ଭୟେ ପୁଷ୍ପାର୍ଣ୍ଣ ତାସୁ ସୁତ ।
ତିନକେ ଜେଷ୍ଠା ବ୍ୟୁଷ୍ଟ, ସର୍ବତେଜସ୍ ସୁତ ଉପଯୁତ ॥
ଆକୂତି ମହଁ ପୁତ୍ର, ଚକ୍ଷୁ ମନୁ ତିନକେ ସୁଖକର ।
ମନୁକେ ଉଲ୍ମୁକ ଭୟେ ତିହ୍ନୀକେ ଅଙ୍ଗ ପୁତ୍ରବର ॥
ମୃତ୍ୟୁସୁତା କୋ ଅଙ୍ଗନେ, ପାଣିଗ୍ରହଣ ବିଧିବତ୍ କୟୋ ।
ତାହିଁ ତେ ଅତି କ୍ରୂରତର, ବେନ ପୁତ୍ର ପୈଦା ଭୟୋ ॥"

●

# ମୃତ୍ୟୁପୁତ୍ରୀ ସୁନୀଥା

"ସୁନୀଥାଙ୍ଗସ୍ୟ ଯା ପତ୍ନୀ ସୁଷୁବେ ବେନମୁଲ୍ବଣମ୍ ।।
ଯ ଦୌଃଶୀଲ୍ୟାତ୍ସ ରାଜର୍ଷିର୍ନିର୍ବିଣ୍ଣୋ ନିରଗାତ୍ପୁରାତ୍ ।।"
(ଭାଗ—୪-୧୩-୧୮)

## ଛପ୍ପୟ

"ଯୋ ଯୋ କାରଜ କରତ ସଦା ମାତା ପିତୁ ଦୀଖେଂ ।
ତୈଁ ଇ ସବରେ କାଜ ବାଳକା ବାଳକ ସୀଖେଂ ।।
ସୁତା ସୁନୀଥା ମୃତ୍ୟ ପିତାକୁଁ ସବକୁଁ ମାରତ ।
କରଖେ ନତ ପ୍ରତି ଦଣ୍ଡ ଦେତ ତାଡ଼ତ ହୁଂକାରତ ।।
ତପ ସୁଶଙ୍ଖ ବନ ମହଁ ତପତ, ମୃତ୍ୟୁସୁତା ତହଁ ଜାଇକେଂ ।
ତଡ଼ ତଡ଼ ତାଡ଼ନ ନିତ କରତି, ମାରତି ତୋତ୍ର ସିହ୍ନାଇକେଂ ।।"

ଅନୁକରଣ କରିବା ପିଲାମାନଙ୍କର ସ୍ୱଭାବ । ବାପା ମା, ଗୁରୁଜନ ଯାହା କରନ୍ତି, ପିଲାମାନେ ତାହାକୁ ପ୍ରଥମେ ଖେଳରେ ପ୍ରୟୋଗ କରନ୍ତି ଏବଂ ପରେ ସେସବୁ ଅଭ୍ୟାସରେ ପରିଣତ ହୁଏ । କେତେକ ପିଲା ଏ ପ୍ରକାର ଅନୁକରଣରୁ ଦୂରେଇରହନ୍ତି, କିନ୍ତୁ ସେମାନଙ୍କ ସଂଖ୍ୟା ଅତି କମ୍ । ସାଧାରଣତଃ ବାପା ମା'ଙ୍କ କାର୍ଯ୍ୟକଳାପ ପିଲାମାନଙ୍କୁ ପ୍ରଭାବିତ କରୁଥିବାର ଦେଖାଯାଏ । ସେଥିପାଇଁ ପୂର୍ବେ କୁଳୀନତା ପ୍ରତି ବିଶେଷ ଧ୍ୟାନ ଦିଆଯାଉଥିଲା । କୁଳୀନ ପରିବାରରେ ବୈବାହିକ ସମ୍ବନ୍ଧ ସ୍ଥାପିତ ହେଉଥିଲା । କାରଣ କୁଳର ସଂସ୍କାର ପିଲାମାନଙ୍କଠାରେ ପ୍ରକାଶ ପାଏ ବୋଲି ବିଶ୍ୱାସ ଥିଲା । ଏ ବିଷୟରେ ଏକ କାହାଣୀ ଅଛି ।

ଜଣେ ମହାପୁରୁଷଙ୍କ ପାଖରେ ଗୋଟିଏ କୁଢକୁକୁର ଥିଲା । ଭିକ୍ଷା ଲବ୍ଧ ଅନ୍ନାଦିରୁ ଯାହା କିଛି ବଳୁଥିଲା ସେତିକ ସେ କୁଢକୁ ଖାଇବା ପାଇଁ ଦେଉଥିଲେ ।

ମହାତ୍ମାଙ୍କ ଉଚ୍ଛିଷ୍ଟ ଖାଇ ଖାଇ ସ୍ୱଭାବ ବଦଳିଗଲା, ତା'ର ସରଳତା ଓ ସୌନ୍ଦର୍ଯ୍ୟ ବୃଦ୍ଧି ପାଇଲା । କୁକୁର ସୁଲଭ ପ୍ରକୃତି ତା'ର ବଦଳିଗଲା । ମହାତ୍ମା ଥିଲେ ଜଣେ ସିଦ୍ଧପୁରୁଷ । କୁତି ପ୍ରତି ମନରେ ତାଙ୍କର ଦୟା ଜାତ ହେଲା । ସେ ଭାବିଲେ —'ଆହା, କେତେ ସରଳ ଏ କୁତିଟା । କେଉଁ ପାପ ଫଳରୁ ଏହା କୁକୁର ଯୋନିରେ ଜନ୍ମ ହୋଇଛି, ନୋହିଲେ ଏହାର କୁକୁର ସ୍ୱଭାବ ଆଦୌ ନାହିଁ । ମହାତ୍ମାମାନେ ଦୟାଳୁ, ଯୁଆଡ଼େ ମନ ସେଆଡ଼େ ବହିଗଲେ । ଦିନେ ସେ ମହାତ୍ମା ଗଙ୍ଗାଜଳ ଆଣି ତାକୁ ମନ୍ତ୍ରପୂତ କରି କୁତି ଉପରେ ଛିଞ୍ଚିଦେଲେ । ଦେଖୁ ଦେଖୁ କୁତିଟି ଏକ ସୁନ୍ଦରୀ କନ୍ୟା ପାଲଟି ଗଲା । ମୁନିଙ୍କ ଦୟାରୁ ସେ ଖୁବ୍ ସୁନ୍ଦରୀ ହୋଇଥିଲା । ଦେଖିବା ଲୋକେ ଆଖି ଫେରାଇ ପାରୁ ନଥିଲେ । ମୁନିଙ୍କ ଆଶ୍ରମରେ ରହି ସେହି ଝିଅ ଆଶ୍ରମ ଭୂମିକୁ ଲିପା ପୋଛା ପରିଷ୍କାର କରିବା କାର୍ଯ୍ୟରେ ଲାଗି ପଡ଼ିଲା ।

ଥରେ ସେ ଦେଶର ରାଜା ମହାତ୍ମାଙ୍କ ଦର୍ଶନ କରିବା ପାଇଁ ଆଶ୍ରମରେ ଆସି ପହଞ୍ଚିଲେ । ଅପୂର୍ବ ଲାବଣ୍ୟମୟୀ ସେହି ସୁନ୍ଦରୀ କନ୍ୟାଟି ଆଶ୍ରମ କାର୍ଯ୍ୟରେ ବ୍ୟସ୍ତ ଥିବାର ଦେଖି ରାଜା ପଚାରିଲେ—ଭଗବନ୍ ' ଏଇ ଝିଅଟି ଆପଣଙ୍କ ଆଶ୍ରମକୁ କେଉଁଠୁ ଆସିଛି । ଏ ଝିଅ ରାଜା ମହାରାଜାଙ୍କ ରାଜମହଲରେ ରହିବା-ଯୋଗ୍ୟ । ଆପଣଙ୍କ ପରି ସନ୍ନ୍ୟାସୀଙ୍କ ଆଶ୍ରମରେ ରହି କରିବ କ'ଣ ?

ମହାତ୍ମା ବୁଝିପାରିଲେ ଯେ, ରାଜା ଝିଅଟି ପ୍ରତି ଆସକ୍ତ ହୋଇ ପଡ଼ିଛନ୍ତି । ସେ ହସି ହସି କହିଲେ—ରାଜନ୍ ! ଆପଣ ନିଜ ମନକୁ ଚଞ୍ଚଳ କରୁଛନ୍ତି କାହିଁକି ? ଆପଣଙ୍କ ଅନ୍ତଃପୁରରେ ଏହାଠାରୁ ବଳି ବହୁ ସୁନ୍ଦରୀ ନାରୀ ଅଛନ୍ତି । ରାଜାମାନଙ୍କ କୁଳରେ କେତେ ସୁନ୍ଦରୀ କନ୍ୟା ଅଛନ୍ତି । ଆପଣ ଏହାକୁ ନେଇ କରିବେ କ'ଣ ? ଏହାର କୁଳଗୋତ୍ର ପିତା ମାତାଙ୍କର ତ ଠିକଣା ନାହିଁ ।

ରାଜା ଉତ୍ସୁକଭାବେ ଆଗ୍ରହର ସହିତ କହିଲେ– ଭଗବନ୍ ! ରତ୍ନର କୁଳ ଗୋତ୍ର ପରିଚୟ ଆବଶ୍ୟକ ପଡ଼େନାହିଁ । ରତ୍ନ ସବୁବେଳେ ରତ୍ନ ହୋଇ ରହେ । ଅଶୁଦ୍ଧ ସ୍ଥାନରେ ପଡ଼ିଥିଲେ ମଧ୍ୟ ରତ୍ନକୁ କେହି କେବେ ଉପେକ୍ଷା କରେ ? ଶୁଦ୍ର ଘର ଗାଈର କ୍ଷୀର କ'ଣ ଅପବିତ୍ର ହୁଏ ? କନ୍ୟାରତ୍ନ ତ ସର୍ବଦା ଶୁଦ୍ଧ । ସେଥିପାଇଁ କହନ୍ତି—ସ୍ତ୍ରୀରତ୍ନଂ ଦୁଷ୍କୁଳାଦପି । ଆପଣ ଦୟାକରି ଏହି କନ୍ୟାରତ୍ନଟି ମୋତେ ଉପହାର ସ୍ୱରୂପ ପ୍ରଦାନ କରନ୍ତୁ ।

ମହାତ୍ମା କହିଲେ—'ହଉ ନେଇଯାଆନ୍ତୁ । ଆମର ମାୟା ମୋହ କିଛି ନାହିଁ । ଆମର ସଙ୍କଳ୍ପ ବଳରେ ଏହିପରି କେତେ ରତ୍ନ ସୃଷ୍ଟି ହେଉଛନ୍ତି ଏବଂ

ନଷ୍ଟ ବି ହୋଇଛନ୍ତି । ଆମ ପକ୍ଷରେ ଏହାର ରୂପ ଯାହା, କୁଡକୁକୁରର ରୂପମଧ୍ୟ ସେଇଆ ।' ରାଜା ଖୁସି ହୋଇ ଝିଅଟିକୁ ସାଙ୍ଗରେ ନେଇଗଲେ । ତାକୁ ବିବାହ କରି ରାଜା ରାଣୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ସ୍ଥାନ ଦେଲେ । ଅନ୍ତଃପୁରରେ ସେ ରାଜାଙ୍କ ସହିତ ରହିଲା । ରାଣୀ ହେଲେ ମଧ୍ୟ ତା'ର କୁଡସୁଲଭ ସଂସ୍କାର ବଦଳିଲା ନାହିଁ । ମହାପୁରୁଷଙ୍କ ଦୟାରୁ ରୂପ ସିନା ବଦଳି ଯାଇଥିଲା, ସଂସ୍କାର କୁଆଡେ ଯିବ ? ଦେହ ଥିବାଯାଏ ଓ ଭୋଗ ଶେଷ ନ ହେବାଯାଏ ସଂସ୍କାର ରହେ । ରାତିରେ ରାଜା ଶୋଇଯିବା ପରେ ସେ ଧୀରେ ଧୀରେ ଉଠି ଆସି ଦୀପରେ ଥିବା ତେଲ ସବୁ ଚାଟି ଚାଟି ଖାଏ । ରାଜା ସକାଳେ ସେବକମାନଙ୍କୁ ଗାଳି ଦିଅନ୍ତି— ସକାଳ ପର୍ଯ୍ୟନ୍ତ ଜଳୁ ନ ଥିବା ଦୀପ ମୋ ଶୋଇବା ଘରେ ରଖୁଛ କାହିଁକି ?

ସେବକମାନେ ବିନୀତଭାବେ କହନ୍ତି—ମହାରାଜ ! ସବୁବେଳେ ଆମେ ଯେପରି ଦୀପରେ ତେଲ ପୂରାଇ ରଖୁ, ଏବେ ବି ସେହିପରି କରୁଛୁ । ସମ୍ଭବତଃ ବାୟୁ ବେଗରେ ସଳିତା ଖୁବ୍ ଜୋର୍ ଜଳି ତେଲ ସରିଯାଉଛି ।

ରାଜା ବିରକ୍ତ ହୋଇ କହନ୍ତି—ଆରେ ସଳିତା ସବୁ ଜଳିଗଲେ ବି ଟିକିଏ ଅଧେ ତେଲ ରହିବ; କିନ୍ତୁ ଟୋପାଏ ବି ତେଲ ରହୁନାହିଁ କାହିଁକି ?

'ଆପଣ, ଆମେ ଦୀପ ରଖିବାବେଳେ ନିଜେ ଦେଖି ନିଅନ୍ତୁ ଆଜ୍ଞା'— ସେବକମାନେ ପ୍ରାର୍ଥନା କଲେ ।

ରାଜା ଦୁଇ ତିନି ଦିନ ଲକ୍ଷ୍ୟ କଲେ । ସେବକମାନଙ୍କ କଥା ଠିକ୍ ବୋଲି ତାଙ୍କର ବିଶ୍ୱାସ ହେଲା । ଦିନେ ସେ ରାତିର ଘୋଡ଼ି ହୋଇ ଗାଢ଼ ନିଦ୍ରାରେ ଶୋଇଲା ପରି ପଡ଼ି ରହିଲେ । ରାଣୀ ଯେତେବେଳେ ଦେଖିଲେ ରାଜା ଶୋଇ ଗଲେଣି, ସେ ଧୀରେ ଧୀରେ ଆସି ତେଲ ଚାଟିବାରେ ଲାଗିଲେ । ରାଜା ଏହା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ସେ ଭାବିଲେ ଏ ରାଣୀ କିଏ ? ଏଠାରେ ତ ଖାଇବା ପିଇବାର ଅଭାବ ନାହିଁ । ତଥାପି ଲୁଚି ଲୁଚି ଦୀପର ତେଲ ଚାଟିବାର କାରଣ କ'ଣ ? ଏ ନିଶ୍ଚୟ କୌଣସି ରାକ୍ଷସୀ । ଏହା ଭାବୁ ଭାବୁ ରାତି ପାହିଗଲା । ରାଜା ଯଥା ଶୀଘ୍ର ନିତ୍ୟକର୍ମ ସାରି ରଥରେ ରାଣୀକୁ ବସାଇ ମହାତ୍ମାଙ୍କ ଆଶ୍ରମକୁ ଗଲେ ।

ରାଜା ଥିଲେ ଜଣେ ଧାର୍ମିକ । କୁକୁର ଅପବିତ୍ର ଭାବେ ଗୃହୀତ ହେଉଥିବାରୁ ତାଙ୍କ ରାଜମହଲ ଭିତରକୁ କୁକୁର ଯାଇପାରୁ ନ ଥିଲା । ସେ ରଥରେ ଯିବାବେଳେ ଗୋଟିଏ ଗାଁ ମୁଣ୍ଡରେ ଗୁଡ଼ାଏ କୁକୁର ଭୁକୁଥିଲେ । କୁଡରାଣୀ ସେହି ଭୁକିବା ଶବ୍ଦ

ଶୁଣି ସ୍ଥିର ହୋଇ ରହିପାରିଲା ନାହିଁ । ସେ ବି ଭେ'କରି ଚିତ୍କାର କରି ଉଠିଲା । ରାଜା ଡରିଗଲେ । ସେ ଭାବିଲେ ଏ ନିଶ୍ଚୟ କୌଣସି ଡାଆଣୀ ହୋଇଥିବ ।

ରାଜା ଆଶ୍ରମରେ ପହଞ୍ଚିଲେ । ରାଜାଙ୍କୁ ଦେଖି ମୁନି ଭାବିଲେ ନିଶ୍ଚୟ କିଛି ଅସୁବିଧା ଘଟିଛି । ରାଜାଙ୍କୁ ସ୍ୱାଗତ ଜଣାଇ ହସି ହସି ମହାତ୍ମା କହିଲେ— ରାଜନ୍ ! ଆପଣଙ୍କର ସବୁ ମଙ୍ଗଳ ତ ? ନୂଆ ରାଣୀ ଆପଣଙ୍କ ପ୍ରତି ଉଚିତ ବ୍ୟବହାର କରୁଛି ତ ?

ରାଜା କହିଲେ—'ଭଗବନ୍ ' ଆପଣ ଗୋଟାଏ ଡାଆଣୀକୁ ମୋତେ ହାବୁଡେଇ ଦେଇଛନ୍ତି । ବର୍ତ୍ତମାନ ତା' କଥା କିଛି ମୋତେ ପଚାରନ୍ତୁ ନାହିଁ । ଏହି ରାହୁର କବଳରୁ ମୋତେ ମୁକ୍ତ କରନ୍ତୁ ।' ରାଜାଙ୍କ କଥା ଶୁଣିବା ମାତ୍ରେ ମହାତ୍ମା ଖୁବ୍ ଜୋର୍ ହସିଲେ ଆଉ ପଚାରିଲେ—ରାଜନ୍ ! କନ୍ୟାରତ୍ନର ଦୋଷ କ'ଣ ?

ରାଜା ବ୍ୟାକୁଳ ହୋଇ କହିଲେ—ଭଗବନ୍ ! ଏ ରତ୍ନ ଆପଣଙ୍କ ଆଶ୍ରମରେ ରହିବା ପାଇଁ ଯୋଗ୍ୟ । ମୋ'ତେ ଦୟା କରନ୍ତୁ । ମୋତେ କହନ୍ତୁ, ଏ କିଏ ? ଏ କୌଣସି ରାକ୍ଷସୀ, ପିଶାଚୀ ବା ଡାଆଣୀ, କ'ଣ ?

ମୁନି ମହାତ୍ମା କହିଲେ—ମୁଁ ପ୍ରଥମରୁ ଆପଣଙ୍କୁ କହିଥିଲି । କୁଳଗୋତ୍ର ବିଚାରି ବିବାହ କରିବା ଉଚିତ । ଖାଲି ଚହଟ ଚକ୍‌କଣ ରୂପ ଦେଖି ଓ ଦେଖାଣିଆ ଭଦ୍ରତାରେ ଭୁଲି ବିବାହ କରିବା ଉଚିତ ନୁହେଁ । ଏ ଡାଆଣୀ କି ରାକ୍ଷସୀ ନୁହେଁ, ସେ କିଏ ମୁଁ ଏବେ ସଙ୍ଗେ ସଙ୍ଗେ ଆପଣଙ୍କୁ କହୁଛି । ଏହା କହି ମହାତ୍ମା ମନ୍ତ୍ର ପଢି ସେହି ସ୍ତ୍ରୀ ଉପରେ ପାଣି ଛିଞ୍ଚିଦେଲେ । ସଙ୍ଗେ ସଙ୍ଗେ ସେ ଏକ କୁତି ପାଲଟି ଯାଇ ଲାଙ୍ଗୁଡ଼ ହଲାଇବାକୁ ଲାଗିଲା । ରାଜା ଆଶ୍ଚର୍ଯ୍ୟ ହୋଇ ମହାତ୍ମାଙ୍କ ଚରଣ ଧୂଳି ମୁଣ୍ଡରେ ମାରି ବିଦାୟ ନେଲେ ।

ମୈତ୍ରେୟ ମୁନି କହିଲେ—ହେ ବିଦୁର ! ମହାରାଜ ଧ୍ରୁବଙ୍କ ବଂଶରେ ଉଲ୍ମୁକ ନାମରେ ଯେଉଁ ରାଜା ଥିଲେ ତାଙ୍କର ଛ ପୁଅଙ୍କ ମଧ୍ୟରେ ସବୁଠୁ ବଡ଼ ଥିଲେ ଅଙ୍ଗ । ସେ ରାଜା ହୋଇଥିଲେ । ମୃତ୍ୟୁଙ୍କ କନ୍ୟା ସୁନିଥାଙ୍କ ସହିତ ତାଙ୍କର ବିବାହ ହୋଇଥିଲା । ସୁନିଥାଙ୍କ ପିତା ସମସ୍ତଙ୍କୁ ନାନା କାରଣରୁ ବାଉଁଆ ପିଟା କରୁଥିଲେ । ତେଣୁ ମାତାମହଙ୍କ ଦୋଷରୁ ସୁନିଥାଙ୍କ ପୁଅ ବେନ ମହାକ୍ରୋଧୀ ଓ କ୍ରୂର ସ୍ୱଭାବର ହୋଇଥିଲେ । ସୁନିଥାଙ୍କ କ୍ରୂର ସ୍ୱଭାବ ହେତୁ ତାଙ୍କର କ୍ରୂରକର୍ମା ପୁଅ ଜନ୍ମ ହେବବୋଲି ତପସ୍ୱୀ ସୁଣଙ୍କ ଅଭିଶାପ ଦେଇଥିଲେ ।

ଶୌନକ ପଚାରିଲେ—'ସୁନୀଥାକୁ ସୁଶଙ୍ଖ କାହିଁକି ଅଭିଶାପ ଦେଲେ ? ଏ ସୁଶଙ୍ଖ କିଏ ? ମହାରାଜ ଅଙ୍ଗଙ୍କ ସହିତ ସୁନୀଥା ବିବାହ ହେଲା କିପରି ? ଏସବୁ ବୁଝାଇ ଦିଅନ୍ତୁ । ଶୌନକଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ମହର୍ଷିସୂତ କହିବାକୁ ଲାଗିଲେ—ହେ ମୁନିଗଣ ! ମୁଁ ଆପଣ ମାନଙ୍କୁ ସଂକ୍ଷେପରେ ସବୁକଥା କହୁଛି ଶୁଣନ୍ତୁ ।

ମୃତ୍ୟୁଦେବ ନିଜ ଝିଅ ସୁନୀଥାକୁ ଅତ୍ୟନ୍ତ ସ୍ନେହରେ ଓ ଯତ୍ନରେ ପାଳନ କରୁଥିଲେ । ଝିଅ ବଡ଼ ହେବା ପରେ ବାପାଙ୍କ କୋଳରେ ବସି ପ୍ରତିଦିନ କିପରି ଜୀବମାନଙ୍କୁ କଷ୍ଟ ଦିଆଯାଉଥିଲା ତାହା ଲକ୍ଷ୍ୟ କରୁଥିଲା । ସେ ଭାବିଲା ବାଡ଼ିଆ ପିଟା କରିବା, ଜୀବଙ୍କୁ ନାନା ପ୍ରକାର କଷ୍ଟ ଦେବା ନିଶ୍ଚୟ ଭଲ କାମ, ତା' ହୋଇ ନ ଥିଲେ ବାପା କେବେ ଏ କାମ କରନ୍ତେ ନାହିଁ । ସୁନୀଥା ବଡ଼ ହେବାପରେ ବନ ଉପବନରେ ବୁଲାବୁଲି କଲା । ନନ୍ଦନ କାନନ ନିକଟରେ ସୁଶଙ୍ଖ ନାମରେ ଜଣେ ତପସ୍ୱୀ ତପସ୍ୟା କରୁଥିଲେ । ସେ ଗନ୍ଧର୍ବ ପରି ସୁନ୍ଦର ଥିଲେ । ସୁନୀଥା ପ୍ରତିଦିନ ସେଠାକୁ ଯାଇ ଅକାରଣରେ ଋଷିଙ୍କୁ ବାଡ଼େଇବାରେ ଲାଗିଲା । ସୁଶଙ୍ଖ ଥିଲେ ଗମ୍ଭୀର, ଦୟାଳୁ ଓ ସ୍ନେହପ୍ରବଣ । ଥରେ ସେ ଆଦର କରି ସୁନୀଥାକୁ ପଚାରିଲେ—ଝିଅ, ମୁଁ ତୋର କ'ଣ କ୍ଷତି କଲି ଯେ ତୁ ମୋତେ ପିଟୁଛୁ ? କିନ୍ତୁ ସୁନୀଥା କିଛି ନ ଶୁଣି ପିଟାପିଟି କରି ଚାଲିଯାଏ । ପାଞ୍ଚ ଦଶଦିନ ସୁଶଙ୍ଖ ସହିଲେ । ଦିନେ ରାଗିଯାଇ କହିଲେ ଝିଅ, ତୁ ଏଠାକୁ ଆସିବୁ ନାହିଁ ।

ସୁନୀଥା କହିଲା— କାହିଁକି ? ତୋ ବୋପାର ଜାଗା କି ଏଟା ? ତୁ ଜାଣ ମୁଁ ତ୍ରିଲୋକର ପ୍ରଭୁ ମୃତ୍ୟୁଙ୍କ ଝିଅ ।

ସୁଶଙ୍ଖ ଆହୁରି ରାଗିଯାଇ କହିଲେ—ତୁ ମୃତ୍ୟୁଙ୍କର କି ଯାହାର ଝିଅ ହେଲେ ବି ମୁଁ ଖାତିର କରେ ନାହିଁ । ତୁ କାଲିଠାରୁ ଯଦି ଏଠାକୁ ଆସିବୁ ତେବେ ତୋର ମଙ୍ଗଳ ହେବ ନାହିଁ, କହି ଦେଉଛି ।

'ମୁଁ ନିଶ୍ଚୟ ଆସିବି, ଆସିବି, ଆସିବି । ମୋର ଯାହା ଇଚ୍ଛା ତାହା କରିବି । ଦେଖିବା ତୁ ମୋର କ'ଣ କରିବୁ ? ଏହା କହି ସୁନୀଥା ଚାଲିଗଲା । ଝିଅ ଯାଇ ବାପାଙ୍କ ପାଖରେ ସବୁ କଥା କହିଲା । ମୃତ୍ୟୁଦେବ ଏକମାତ୍ର ଝିଅ ବୋଲି ତାକୁ କିଛି କହି ପାରିଲେ ନାହିଁ । ପରଦିନ ସୁନୀଥା ପୁଣି ଗଲା । ଋଷି ଧ୍ୟାନମଗ୍ନ ଥିବାର ଦେଖି ତାଙ୍କୁ ପିଟିବାକୁ ଆରମ୍ଭ କଲା । ଋଷି ସୁଶଙ୍ଖ ରାଗିଯାଇ ଅଭିଶାପ ଦେଲେ—ଦୁଷ୍ଟ ଝିଅ, ତୁ ବିନା କାରଣରେ ପିଟୁଛୁ । ସେଥିପାଇଁ ତୋ ଗର୍ଭର

ସନ୍ତାନ ବେଦବିରୋଧୀ, ଗୋବ୍ରାହ୍ମଣନିନ୍ଦକ, ସେ ଯଜ୍ଞ ଓ ସତ୍କର୍ମହୀନ ପାପୀ ହେବ ।

ଅଭିଶାପ ବାକ୍ୟ ଶୁଣିବା ପରେ ସୁନୀଥା ଡରିଗଲା ଓ ଉଦାସ ହୋଇଗଲା । ଦୁଃଖପୂର୍ଣ୍ଣ ହୃଦୟରେ ବାପାଙ୍କ ପାଖରେ ପହଞ୍ଚି ସମସ୍ତ କଥା କହିଲା । ଝିଅର କଥା ଶୁଣି ମୃତ୍ୟୁଦେବ ଖୁବ୍ ଦୁଃଖିତହେଲେ । ସେ କହିଲେ—ଝିଅ, ସେପରି ଜଣେ ଶାନ୍ତ, ପରମ ତେଜସ୍ୱୀ, ସମାଧିସ୍ଥ ଋଷିଙ୍କୁ ତୁ ଅକାରଣେ ଦୁଃଖ ଦେଲୁ କାହିଁକି ?

ସୁନୀଥା ପ୍ରାପ୍ତ ବୟସ୍କା ହୋଇସାରିଥିଲା । ତେଣୁ ତା'ର ବିବାହ ପାଇଁ ମୃତ୍ୟୁଦେବ ଦିନରାତି ଚିନ୍ତା କରୁଥିଲେ । ସେ ବହୁ ସ୍ଥାନରେ ଝିଅର ବିବାହ ପ୍ରସ୍ତାବ ପକାଇଲେ । କିନ୍ତୁ ଦେବତା, ଗନ୍ଧର୍ବ, କିଂପୁରୁଷ, ଗୁହ୍ୟକ କେହିହେଲେ ସେହି ଅଭିଶପ୍ତା ଝିଅ ସହିତ ବିବାହ କରିବାକୁ ରାଜି ହେଲେ ନାହିଁ । ଏ ଅବସ୍ଥାରେ ମୃତ୍ୟୁଦେବଙ୍କ ମନରେ ଖୁବ୍ ଗ୍ଲାନି ଆସିଲା । ସୁନୀଥା ମଧ୍ୟ ନିଜ ଭାଗ୍ୟକୁ ନିନ୍ଦା କରିବାକୁ ଲାଗିଲା । ଶେଷରେ ବାପାଙ୍କୁ ପ୍ରଣାମ ଜଣାଇ ସୁନୀଥା ତପସ୍ୟା କରିବା ପାଇଁ ବନକୁ ଚାଲିଗଲା । ବଣରେ ନ ଖାଇ ନ ପିଇ ଅତି କଠୋର ତପସ୍ୟା କରିବାରେ ଲାଗିଗଲା । ଦିନେ ରମ୍ଭା ଆଦି ଅପ୍ସରାଗଣ ସେଠାରେ ପହଞ୍ଚିଲେ । ସୁନୀଥାର ଅବସ୍ଥା ଦେଖି ସେମାନେ ସ୍ନେହରେ ପଚାରିଲେ—ଭଉଣି ! ତୁ ଏତେ କଷ୍ଟ ବରଣ କରିଛୁ କାହିଁକି ? ଆମକୁ କହ ଆମେ ଯଥାଶକ୍ତି ତୋର ଦୁଃଖ ଦୂର କରିବା ପାଇଁ ଚେଷ୍ଟା କରିବୁ ।

ଅତି ଦୁଃଖରେ ସୁନୀଥା କହିଲା—ଭଉଣି ! ମୋ ଦୁଃଖକୁ କେହି ମେଣ୍ଟେଇ ପାରିବେ ନାହିଁ । ନିଜ କର୍ମ ଦୋଷରୁ ମୁଁ ଏ ଦୁଃଖ ବରଣ କରିଛି । ଜଣେ ନିରପରାଧ ଋଷି ସୁଶଙ୍ଖଙ୍କୁ ମୁଁ ବହୁତ ହଇରାଣ କଲି, କଷ୍ଟ ଦେଲି । ସେ ବାରମ୍ବାର ନିଷେଧ କରିବା ପରେ ବି ଯେତେବେଳେ ତାଙ୍କ କଥା ମୁଁ ମାନିଲିନାହିଁ ସେତେବେଳେ ସେ ରାଗିଯାଇ ମୋତେ ଅଭିଶାପ ଦେଲେ ଯେ, ତୋ' ଗର୍ଭରୁ ଗୋଟିଏ ଦୁଷ୍ଟ, ପ୍ରାଣୀଘାତକ ପୁତ୍ର ଜନ୍ମ ହେବ । ଏହି ଦୋଷରୁ ମୋତେ କେହି ବିବାହ ହେଲେ ନାହିଁ । ମୋର ବାପା ତିନି ଲୋକର ପ୍ରଭୁ । ମୋର ପାଇଁ ସେ ସମସ୍ତଙ୍କଠାରେ ନତମସ୍ତକ ହେଲେ । ମୋତେ ବିବାହ କରିବା ପାଇଁ ସେ ବହୁ ଦେବତା, ଗନ୍ଧର୍ବ, ଗୁହ୍ୟକଙ୍କ ପାଖକୁ ଯାଇ ପ୍ରାର୍ଥନା କଲେ । କିନ୍ତୁ ସେହି ଅଭିଶାପ ହେତୁ କେହି ରାଜି ହେଲେ ନାହିଁ । ଏ ଅବସ୍ଥାରେ ମୁଁ ଆଉ ବଞ୍ଚିବା ପାଇଁ ଇଚ୍ଛା କରୁ ନାହିଁ । ଏହି ବଣରେ ନ ଖାଇ ନ ପିଇ ମୁଁ ଜୀବନ ହରେଇ ଦେବା ପାଇଁ ପ୍ରସ୍ତୁତ ହୋଇସାରିଛି ।

ସୁନୀଥାର ଦୁଃଖମୟ କାହାଣୀ ଶୁଣି ରମ୍ଭା କହିଲେ—ଭଉଣି ! ତୁ ଚିନ୍ତା କରନା । ପ୍ରାଣୀମାନେ ସାଧାରଣତଃ ଭୁଲ୍ କରନ୍ତି । ସଂସାରରେ ପୁରାପୁରି ନିରପରାଧ କିଏ ଅଛି ? ବ୍ରହ୍ମା, ବିଷ୍ଣୁ, ଇନ୍ଦ୍ର, ରୁଦ୍ର, ସୂର୍ଯ୍ୟ, ଚନ୍ଦ୍ର, ଋଷି, ମୁନି ସମସ୍ତଙ୍କର ଭୁଲ ହୋଇଥାଏ । ବର୍ତ୍ତମାନ ଯାହା ଘଟିଯାଇଛି ସେ ବିଷୟରେ ମନସ୍ତାପ ନକରି କିପରି ସେ ଅଭିଶାପରୁ ମୁକ୍ତି ମିଳିବ ତାହା ଭାବିବା ଉଚିତ ହେବ । କିଏ ଶାପଗ୍ରସ୍ତ ହୋଇନି ? ଅପୂଜା ରହିବେ ବୋଲି ବ୍ରହ୍ମା ଅଭିଶପ୍ତ ହେଲେ । ଦଶାବତାର ଗ୍ରହଣ ପାଇଁ ବିଷ୍ଣୁ, କପାଳଧାରୀ ଓ ଲଙ୍ଗଳା ହେବା ପାଇଁ ଶିବ, ସହସ୍ରନେତ୍ର ହେବା ପାଇଁ ଇନ୍ଦ୍ର, ସୂର୍ଯ୍ୟ ଚନ୍ଦ୍ର କୁଷ୍ଠ ଓ କ୍ଷୟ ରୋଗୀ ହେବାର ଅଭିଶାପ ପାଇଛନ୍ତି । ତୁ କାହିଁକି ଏତେ ଦୁଃଖ କରୁଛୁ । ମୁଁ ତୋତେ ଏକ ସୁନ୍ଦର ବର ସହିତ ବିବାହ କରାଇଦେବି ।

ଏହା ଶୁଣି ସୁନୀଥା ଖୁସି ହେଲା । ରମ୍ଭା ତାକୁ ମୋହିନୀ ବିଦ୍ୟା ଶିଖାଇ ଦେଲେ । ସେ ଯେଉଁ ପୁରୁଷ ପ୍ରତି ପ୍ରେମପୂର୍ଣ୍ଣ ନୟନରେ ଚାହିଁବ ସେ ପୁରୁଷ ବଶୀଭୂତ ହେବ । ମୋହିନୀ ବିଦ୍ୟାର ପ୍ରୟୋଗ ବିଷୟରେ ଶିକ୍ଷା ଦେଇ ରମ୍ଭାଦି ଅପ୍ସରାଗଣ ସୁନୀଥା ସହ ନନ୍ଦନ ବନକୁ ଫେରିଗଲେ । ଏଣେ ମହାରାଜ ଅଙ୍ଗ ପୁତ୍ର କାମନାରେ ନନ୍ଦନ ବନରେ ଘୋର ତପସ୍ୟା କରୁଥିଲେ । ରମ୍ଭା ଦୂରରୁ ସୁନୀଥାକୁ ତପସ୍ୟାରତ ମହାରାଜ ଅଙ୍ଗଙ୍କୁ ଦେଖାଇ ହସି ହସି କହିଲେ—'ସୁନୀଥା ! ଏହି ପରମ ସୁନ୍ଦର ପୁରୁଷଙ୍କୁ ଯଦି ତୋର ପସନ୍ଦ ହେଉଛି ତେବେ ତାଙ୍କ ପ୍ରତି ମୋହିନୀ ବିଦ୍ୟାର ପ୍ରୟୋଗ କର । ସୁନୀଥା କାମଦେବ ତୁଲ୍ୟ ଅଙ୍ଗଙ୍କ ପ୍ରତି ଆକୃଷ୍ଟ ହୋଇ-ପଡ଼ିଲା । ତାଙ୍କୁ ମୋହିନୀ ଦୃଷ୍ଟିରେ ଚାହିଁରହି ସୁନୀଥା ବୀଣା ବଜାଇ ସୁମଧୁର କଣ୍ଠରେ ଗୀତ ଗାଇବାକୁ ଲାଗିଲା । ବୀଣାଧ୍ୱନି ଓ ମୋହିନୀର ମଧୁର କଣ୍ଠସ୍ୱରରେ ତପସ୍ୱୀ ଅଙ୍ଗଙ୍କ ଦେହ ମନ ପୁଲକିତ ହୋଇ ଉଠିଲା ସେ ଧ୍ୟାନ ଛାଡ଼ି ଚାରିଆଡ଼କୁ ଚାହିଁଲେ । ଅଙ୍ଗଙ୍କ ପାଖକୁ ଯାଇ ହସି ହସି ରମ୍ଭା ପଚାରିଲେ—ଦେବ ! କଣ ଦେଖୁଛନ୍ତି ଆପଣ ପଲକ ନ ପକାଇ କାନ ଠିଆ କରି କଣ ଶୁଣୁଛନ୍ତି ?

ମହାରାଜ ଅଙ୍ଗ କହିଲେ —ଏହି ବୀଣାର ଝଙ୍କାର ଓ ନାରୀ କଣ୍ଠରେ କୋମଳ ମଧୁର ଧ୍ୱନି ମୋ କାନକୁ ହରଣ କରିନେଇଛି । ମୁଁ ନିଜକୁ ଆୟତ୍ତ କରିପାରୁ ନାହିଁ । ମୁଁ ପାଖରେ ସେହି ଗାନ ଶୁଣିବାକୁ ଇଚ୍ଛା କରୁଛି ।

ମହାରାଜ ! ଆପଣ କେବଳ ଗୀତ ଶୁଣିବାକୁ ଚାହୁଁଛନ୍ତି ନା ଗାୟିକାକୁ ମଧ୍ୟ ନିଜର କରିବା ପାଇଁ ଚାହୁଁଛନ୍ତି, ବୋଲି ରମ୍ଭା ପଚାରିବାରୁ ଅଙ୍ଗ କହିଲେ—ମୁଁ ଗାୟିକାଙ୍କୁ ପାଇଲେ ମୋର ତପସ୍ୟା ସିଦ୍ଧ ହେଲା ବୋଲି ଜାଣିବି । ତପସ୍ୱୀ

ଅଙ୍ଗଙ୍କର ଅନୁରାଗ ଦେଖି ରମ୍ଭା ତାଙ୍କୁ ସୁନୀଥା ପାଖକୁ ନେଇଗଲେ । ସୁନୀଥାକୁ ଦେଖି ଅଙ୍ଗ ଆତ୍ମହରା ହୋଇପଡ଼ିଲେ । ଗନ୍ଧର୍ବ ଓ ଅପ୍‌ସରାମାନଙ୍କ ମିଳିତ ଉଦ୍ୟମରେ ଅଙ୍ଗ ଓ ସୁନୀଥାଙ୍କର ବିବାହ ସମ୍ପନ୍ନ ହେଲା ।

ରମ୍ଭା ବିନୀତଭାବେ କହିଲେ—ମହାରାଜ ! ମୋର ସଖୀ ପ୍ରତି ଆପଣ କେବେହେଲେ କପଟ ଆଚରଣ କରିବେ ନାହିଁ ବୋଲି ଅନୁରୋଧ ଜଣାଉଛି । ପୁରୁଷମାନେ ବଡ଼ ସ୍ୱାର୍ଥପର । କାମ ଥିଲେ ସେମାନେ ନାନାପ୍ରକାର ସ୍ନେହ ମମତାର ଛଳନା ଦେଖାଇ ସ୍ତ୍ରୀମାନଙ୍କୁ ଆଦର କରିନଥାନ୍ତି ଏବଂ କାମସରିଯିବା ପରେ ତାଙ୍କୁ ଆଉ ଆଖିରେ ବି ଚାହାଁନ୍ତି ନାହିଁ ।

ମହାରାଜ ଅଙ୍ଗ ପ୍ରତିଶ୍ରୁତି ଦେଲେ—ନାଁ । କେବେ ସେପରି ହେବ ନାହିଁ । ତୁମେ ଯାହା କହିବ ମୁଁ ତାହାହିଁ କରିବି । ମୁଁ ପ୍ରତିଜ୍ଞା କରୁଛି, ସୁନୀଥା ଯେ କୌଣସି ଅପରାଧ କଲେ ବା ଭୁଲ କଲେ ମଧ୍ୟ ମୁଁ ଏ ଜୀବନରେ ତାଙ୍କୁ ପରିତ୍ୟାଗ କରିବି ନାହିଁ ।

ରମ୍ଭା ଆଉ ବିଦାୟ ନେଇ ଯିବା ପରେ ମହାରାଜ ଅଙ୍ଗ ସୁନୀଥା ସହିତ ରାଜନଗରକୁ ଫେରିଆସିଲେ । ସୁନ୍ଦରୀ ପତ୍ନୀ ସହିତ ବିବାହ କରି ଅଙ୍ଗ ସୁଖୀ ହେଲେ । ଯଥା ସମୟରେ ସୁନୀଥା ଗର୍ଭରୁ କ୍ରୂରକର୍ମା ବେନ ଜନ୍ମ ହେଲା ।

ଶୌନକ ପଚାରିଲେ—ଆମେ ଜାଣିଥିଲୁ ମହାରାଜ ଅଙ୍ଗ ଅତ୍ରିଙ୍କ ପୁତ୍ର ଥିଲେ । ଆପଣ ତାଙ୍କୁ ଧ୍ରୁବବଂଶୀୟ ଉଲ୍ମୁକଙ୍କ ପୁତ୍ର ବୋଲି କହିଲେ କିପରି ? ଏହାର ଉତ୍ତର ଦେଇ ମହର୍ଷି ସୂତ କହିଲେ—ଆପଣଙ୍କ କଥା ଠିକ୍ ହୋଇଥିବ । କିନ୍ତୁ ଭାଗବତ କଥା ପ୍ରସଙ୍ଗରେ ମୁଁ ଯାହା କହିଲି ତାହା ଠିକ୍ କୌଣସି କଳ୍ପରେ ହୁଏତ ସେ ଅତ୍ରିଙ୍କ ପୁତ୍ର ହୋଇଥିବେ । ବର୍ତ୍ତମାନ ମହାରାଜ ପୃଥୁଙ୍କ ପିତା ବେନଙ୍କ କାହାଣୀ କହୁଛି, ଶୁଣନ୍ତୁ ।

## ଛପ୍‌ପୟ

"ବରଜେ ବହୁତ ସୁଗଙ୍ଗ ସୁନୀଥା ସଦା ସତାଓ୍ୱେ ।
ଦୟୋ ଶାପ ଅତି କ୍ରୂର ପୁତ୍ର ତୁ ଦୁଷ୍ଟ ଜାଓ୍ୱେ ॥
ଭଈ ଖିନ୍ନ ମୁନି ଶାପ ସମୁଝି ନହିଁ ବ୍ୟାହ ଭୟୋ ଜବ ।
ତପହୀନ ବନମହ ଗଈ ମ ଅଙ୍ଗ ସଙ୍ଗ ମେଲ ଭୟୋତବ ॥
ରମ୍ଭା ନେ ତିକଡ଼ମ କରୀ, ଅଙ୍ଗ ସଙ୍ଗ ମନ ମିଲି ଗୟୋ ।
ଭୟୋ ବ୍ୟାହ ରାନୀ ବନୀ, ଦୁଷ୍ଟ ବେନ ତାକେଁ ଭୟୋ ॥"



# ମହାରାଜ ଅଙ୍ଗଙ୍କ ପୁତ୍ରେଷ୍ଟି ଯଜ୍ଞ

"ନରଦେବେହ ଭବତୋ ନାଘଂ ତାବନ୍ମନାକ୍ ସ୍ଥିତମ୍ ।
ଅସ୍ତ୍ୟେକଂ ପ୍ରାକ୍ତନମଘଂ ଯଦିହେଦୃକ୍ ତ୍ୱମପ୍ରଜଃ ॥
ତଥା ସାଧୟ ଭଦ୍ରଂ ତେ ଆତ୍ମାନଂ ସୁପ୍ରଜଂ ନୃପ ।
ଇଷ୍ଟସ୍ତେ ପୁତ୍ରକାମସ୍ୟ ପୁତ୍ରଂ ଦାସ୍ୟତି ଯଜ୍ଞଭୁକ୍ ॥"

(ଭାଗବତ—୪ର୍ଥ ସ୍କନ୍ଦ-୧୩ ଅଧ୍ୟାୟ-ଶ୍ଳୋକ ୩୧,୩୨ )

ଛପ୍‌ପୟ

"ଅଙ୍ଗ କର୍‌ୟୋ ଇକ ରାଜସୂୟ ସୁର ନହିଁ ଆୟେ ।
କାରଣ ପୁଚ୍ଛ୍ୟୋ ଭୂପ ବିପ୍ର ଅଘ ପୂର୍ବ ବତାୟେ ॥
ତିନକୀ ଆଜ୍ଞା, ମାନ ଯଜ୍ଞ ପୁତ୍ରେଷ୍ଟି ରଚୟୋ ।
ଯଜ୍ଞେଶ୍ୱର ତେ ଭୂପ ପାତ୍ର ପାୟସ କୋ ପାୟୋ ॥
ସୂଂଘି ସୁନୀଥା କୂଁ ଦୟୋ, ଖାଇ ଗର୍ଭ ତାକେ ରହ୍ୟୋ ।
ଗର୍ଭବତୀ ରାନୀ ଲଖୀ, ମନ ପ୍ରସନ୍ନ ସବ କୋ ଭୟୋ ।

ଶରୀରରେ ଯେ ପର୍ଯ୍ୟନ୍ତ ପୂର୍ବପାପ ଅଛି ସେ ପର୍ଯ୍ୟନ୍ତ କୌଣସି ପୁଣ୍ୟ କାର୍ଯ୍ୟରେ ସଫଳତା ମିଳେ ନାହିଁ । ତେଣୁ ଯଜ୍ଞାଦି ଶୁଭକାର୍ଯ୍ୟ କରିବା ପୂର୍ବରୁ ପ୍ରାୟଶ୍ଚିତ୍ତ କରିବାର ବିଧି ଅଛି । ପ୍ରଥମେ ପ୍ରାୟଶ୍ଚିତ୍ତଦ୍ୱାରା ଦେହ ଓ ମନ ଶୁଦ୍ଧି ପରେ ପୁରୁଷ ଯଜ୍ଞଦୀକ୍ଷା ପାଇଁ ଯୋଗ୍ୟ ବିବେଚିତ ହୁଏ । ଅନଧିକାର ଚେଷ୍ଟା ବ୍ୟର୍ଥ ହୁଏ ।

ମୈତ୍ରେୟ କହିଲେ—ହେ ବିଦୁର ! ମୃତ୍ୟୁପୁତ୍ରୀ ସୁନୀଥା ସହିତ ମହାରାଜ ଅଙ୍ଗଙ୍କର ବିବାହ ହୋଇଗଲା । ସେ ଭାବିଲେ, ଯେପରି ପୂର୍ବଜମାନେ ସ୍ୱର୍ଗ, ଋଷି ଓ

ଐଶ୍ୱର୍ଯ୍ୟ କାମନାରେ ଅଶ୍ୱମେଧାଦି ଯଜ୍ଞ କରିଥିଲେ ମୋର ମଧ୍ୟ ସେହି ସବୁ କାର୍ଯ୍ୟ କରିବା ଉଚିତ; କାରଣ ରାଜ ଐଶ୍ୱର୍ଯ୍ୟ ଯଜ୍ଞ ଅନୁଷ୍ଠାନ ଦ୍ୱାରା ପ୍ରକାଶିତ ହୁଏ। ଲୋକେ କିଏ କେତେ ଯଜ୍ଞ କରିଛି ତାହାର ଆଲୋଚନା କରନ୍ତି। ଯେ ୧୦୦ଟି ଅଶ୍ୱମେଧ ଯଜ୍ଞ କରେ ସେ ସ୍ୱର୍ଗରେ ଇନ୍ଦ୍ରପଦ ଲାଭ କରେ। ତେଣୁ ବିପୁଳ ଧନ ବ୍ୟୟ କରି ଏକ ବିରାଟ ଯଜ୍ଞର ଆୟୋଜନ କରାଯିବା ବାଞ୍ଛନୀୟ।

ରାଜା ନିଜର ମନୋଭାବ ବେଦଜ୍ଞ ପଣ୍ଡିତ ବ୍ରାହ୍ମଣମାନଙ୍କ ଆଗରେ ପ୍ରକାଶ କଲେ। ବ୍ରାହ୍ମଣମାନେ ତ ସ୍ୱଭାବତଃ ଚାହାନ୍ତି ଧର୍ମର ବୃଦ୍ଧି ଓ ଅଧର୍ମର କ୍ଷୟ ଘଟୁ। ସେମାନେ ଦକ୍ଷିଣା ପାଆନ୍ତି ଆଉ ଦରିଦ୍ରମାନଙ୍କର ଧନ ଜାକଜମକରେ କଟିଯାଉ। ବ୍ରାହ୍ମଣମାନେ ସମସ୍ତେ ଏକସ୍ୱରରେ କହିଲେ ମହାରାଜ ଅଙ୍ଗଙ୍କ ଅଭିଳାଷ ପୂର୍ଣ୍ଣ ହେଉ।

ଯଜ୍ଞର ଆୟୋଜନ ଆରମ୍ଭ ହେଲା। ଯଜ୍ଞଭୂମିର ପ୍ରସ୍ତୁତି, ଅଶ୍ୱସଂଗ୍ରହ, ବ୍ରାହ୍ମଣମାନଙ୍କ ଆଗମନ ଓ ଯଜ୍ଞକାର୍ଯ୍ୟ ଆରମ୍ଭ ହୋଇଗଲା। ହଜାର ହଜାର ଦର୍ଶନାର୍ଥୀ ସମବେତ ହେଲେ। ବ୍ରାହ୍ମଣମାନେ ଯଥାବିଧି ପୂଜା କରି ଯଜ୍ଞ ଅଶ୍ୱକୁ ଛାଡିଦେଲେ। ବିରାଟ ଆକାରରେ ଯଜ୍ଞବେଦୀ ନିର୍ମାଣ କରାଗଲା। ଯଜ୍ଞସାମଗ୍ରୀ ଠୁଳ କରାଗଲା। ପ୍ରସିଦ୍ଧ ବେଦ୍‌ବିଦ୍ ବ୍ରାହ୍ମଣମାନେ ନିମନ୍ତ୍ରିତ ହୋଇଆସିଲେ। ସର୍ବଲକ୍ଷଣ ସମ୍ପନ୍ନା ସୁନ୍ଦରୀରାଣୀ ସୁନୀଥାଙ୍କ ସହିତ ମହାରାଜ ଅଙ୍ଗ ଯଜ୍ଞଦୀକ୍ଷା ନେଲେ। ହାତରେ ମୃଗ ଶିଙ୍ଗ ଧରି ଓ ମୌନବ୍ରତ ଅବଲମ୍ବନ କରି ଅଙ୍ଗ ଯଜ୍ଞକର୍ମରେ ପ୍ରବୃତ୍ତ ହେଲେ।

ସେ ସମୟରେ ଦେବତାଗଣ ଯଜ୍ଞସ୍ଥଳକୁ ଆସି ନିଜ ନିଜର ଭାଗ ଗ୍ରହଣ କରୁଥିଲେ। କିନ୍ତୁ ଦେବତାଭାଗ ବିଭାଜନ ସମୟରେ ବିଧିବିଧାନ ପୂର୍ବକ ଦେବଗଣଙ୍କୁ ଆବାହନ କଲେ କୌଣସି ଦେବତା ଯଜ୍ଞ କ୍ଷେତ୍ରକୁ ଆସିଲେ ନାହିଁ। ଏହା ଦେଖି ଅଙ୍ଗ ମର୍ମାହତ ହେଲେ। ସେ ବ୍ରାହ୍ମଣମାନଙ୍କୁ ସଙ୍କେତରେ ପଚାରିଲେ —ମୋର କିଛି କହିବାର ଅଛି। ମୌନବ୍ରତ ଭଙ୍ଗ କରିବି ତ ?

ହଁ, ମହାରାଜ ! ଆପଣ କଥା କହିପାରିବେ—ବ୍ରାହ୍ମଣମାନେ ସମ୍ମତି ଦେଲେ।

ମହାରାଜ ଅଙ୍ଗ କହିଲେ—ହେ ସଦସ୍ୟଗଣ! ମୁଁ କେତେ ଶ୍ରଦ୍ଧାରେ ଏ ଯଜ୍ଞ ଆରମ୍ଭ କଲି। ଯଥା ବିଧି ସମସ୍ତ କାର୍ଯ୍ୟ ଓ ଦ୍ରବ୍ୟାଦି ସଂଗୃହୀତ ହେଲା। ତଥାପି ଆବାହନ କଲେ ମଧ୍ୟ ଦେବଗଣ ଯଜ୍ଞଭାଗ ନେବା ପାଇଁ ଆସିଲେ ନାହିଁ କାହିଁକି ?

ଋତ୍ୱିକ ଆଶ୍ଚର୍ଯ୍ୟ ହୋଇ ଜଣାଇଲେ—ମହାରାଜ ! ଆମେ ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହୋଇଛୁ । ଦେବଗଣ ନ ଆସିବାର ତିନୋଟି କାରଣ ଅଛି । ହୁଏତ ଯଜ୍ଞ ସାମଗ୍ରୀ ଅପବିତ୍ର ବା ଦୋଷଯୁକ୍ତ ହୋଇଛି । ନୋହିଲେ ଯଜମାନ ଶ୍ରଦ୍ଧାହୀନ ହୋଇଛନ୍ତି ଅଥବା ଯଜ୍ଞ କାର୍ଯ୍ୟରେ ନିଯୁକ୍ତ ବ୍ରାହ୍ମଣଗଣ ବ୍ରହ୍ମଚର୍ଯ୍ୟହୀନ, ଅଶୁଦ୍ଧ ଓ ଶକ୍ତିହୀନ ହୋଇଛନ୍ତି । ଏହି ତିନୋଟି କାରଣରୁ ଏଠାରେ କୌଣସିଟି ଘଟି ନାହିଁ । ଆପଣଙ୍କ ସଂଗୃହୀତ ଯଜ୍ଞସାମଗ୍ରୀ ପବିତ୍ର ଓ ଶୁଦ୍ଧ । ଧର୍ମ ମାର୍ଗରେ ଆପଣ ସେସବୁ ସଂଗ୍ରହ କରିଛନ୍ତି । ଆପଣ ନ୍ୟାୟପୂର୍ବକ ପ୍ରଜାପାଳନ କରୁଛନ୍ତି । ଆମର ମନ୍ତ୍ର ମଧ୍ୟ ଅମୋଘ । ତଥାପି ଦେବଗଣ ଆସିଲେ ନାହିଁ, ଏହା ବଡ଼ ଅଦ୍‌ଭୁତ ଘଟଣା ପରି ମନେ ହେଉଛି ।

ମହାରାଜ ! ଆପଣଙ୍କର ଅଣୁମାତ୍ର ପାପ ନାହିଁ । ଆପଣ ପିଲାଦିନରୁ ଧର୍ମପ୍ରତି ଅନୁରକ୍ତ ଅଛନ୍ତି । ସମ୍ଭବତଃ ପୂର୍ବ ଜନ୍ମରେ ଆପଣ କୌଣସି ବାଳକ ହତ୍ୟା ଦୋଷରେ ପାପୀ ହୋଇଛନ୍ତି । ତେଣୁ ଏ ପର୍ଯ୍ୟନ୍ତ ଆପଣଙ୍କ ସ୍ତ୍ରୀଙ୍କଠାରୁ କୌଣସି ସନ୍ତାନ ସନ୍ତତି ଜନ୍ମଗ୍ରହଣ କରିନାହାନ୍ତି । ପୁତ୍ର ବିନା କାହାର ଗତି ନାହିଁ । ଅପୁତ୍ରିକର ସବୁ କିଛି କାର୍ଯ୍ୟ ନିଷ୍ଫଳ ହୁଏ । ତେଣୁ ପ୍ରଥମେ ଆପଣ ପୁଅ ପାଇଁ ପୁତ୍ରେଷ୍ଟି ଯଜ୍ଞ କରନ୍ତୁ । ଯଜ୍ଞ ପୁରୁଷ ଭଗବାନ୍ ଆପଣଙ୍କ ଭକ୍ତିରେ ସନ୍ତୁଷ୍ଟ ହୋଇ ପୁତ୍ର ପ୍ରଦାନ କରିବେ ବୋଲି ଆମର ବିଶ୍ୱାସ । ଆପଣ ପୁତ୍ରବାନ୍ ହେବା ପରେ ଯଜ୍ଞ କଲେ ଦେବଗଣ ଯଜ୍ଞଭାଗ ପାଇଁ ନିଶ୍ଚୟ ଆସିବେ ।

ମୈତ୍ରେୟ ମୁନି କହିଲେ—ହେ ବିଦୁର ! ବ୍ରାହ୍ମଣ ସଦସ୍ୟଙ୍କ ପରାମର୍ଶ ଅନୁସାରେ ମହାରାଜ ଅଙ୍ଗ ପୁତ୍ରେଷ୍ଟି ଯଜ୍ଞ ଆରମ୍ଭ କଲେ । ଯେତେବେଳେ ଭଗବାନଙ୍କ ଉଦ୍ଦେଶ୍ୟରେ ପୁରୋଡ଼ାଶ ସମର୍ପଣ କଲେ ସେତେବେଳେ ଅଗ୍ନିକୁଣ୍ଡରୁ ମାଳା ପରିହିତ ସ୍ୱର୍ଣ୍ଣବର୍ଣ୍ଣ, ବିଶୁଦ୍ଧ ବସ୍ତ୍ର ଓ ଆଭୂଷଣ ଭୂଷିତ ଦିବ୍ୟ ପୁରୁଷ ପାୟସ ପାତ୍ର ଧରି ଆବିର୍ଭୂତ ହେଲେ । ମୁନି, ଋଷି, ପୁରୋହିତ, ଯଜମାନ ସମସ୍ତେ ଉଠିପଡ଼ି ତାଙ୍କୁ ସ୍ୱାଗତ ଜଣାଇଲେ । ଋତ୍ୱିକମାନେ ନମ୍ରତାର ସହିତ କହିଲେ —ମହାରାଜ ! ଆପଣ ଶ୍ରଦ୍ଧାର ସହିତ ଏହି ପାୟସ ପାତ୍ର ଗ୍ରହଣ କରନ୍ତୁ ।

ରାଜା ପାୟସ ପାତ୍ର ଗ୍ରହଣ କରିବା ପରେ ଦିବ୍ୟ ପୁରୁଷ ଅନ୍ତର୍ଦ୍ଧାନ ହୋଇଗଲେ । ବ୍ରାହ୍ମଣମାନଙ୍କ ପରାମର୍ଶ ଅନୁସାରେ ଅଙ୍ଗ ପାୟସକୁ ଆଘ୍ରାଣ କରିବାପରେ ରାଣୀଙ୍କ ହାତରେ ଦେଲେ । ସେହି ପାୟସ ଭକ୍ଷଣ କରି ରାଣୀ ଗର୍ଭବତୀ ହେଲେ । ରାଣୀ ସୁନୀଥାଙ୍କର ଅଭିଶାପ କଥା ମନେପଡ଼ିଲା । ସେ ଦିନରାତି ସବୁବେଳେ ପିତାଙ୍କ କାର୍ଯ୍ୟାବଳୀ ଭାବିବାକୁ ଲାଗିଲେ—'ମୋ ବାପା

କେଡ଼େ ନିର୍ମମ ଓ କ୍ରୂର । ସମସ୍ତଙ୍କୁ ଦଣ୍ଡ ଦିଅନ୍ତି, ମାରନ୍ତି, ନାନାଭାବରେ ନିର୍ଯ୍ୟାତିତ କରନ୍ତି । ମୁଁ ପିଲାଦିନୁ ଏସବୁ ତାଙ୍କଠାରୁ ଶିଖିଲି । ସେଇଥି ପାଇଁ ମୁଁ ନିରପରାଧ ମୁନି ସୁଶଙ୍ଖଙ୍କୁ ପିଟିଥିଲି । 'ସେ କ୍ରୋଧବଶତଃ ମୋତେ ଅଭିଶାପ ଦେଲେ—ତୋର କ୍ରୂରକର୍ମା ପୁଅ ଜନ୍ମ ହେବ । ସମ୍ଭବତଃ ମୋ ଗର୍ଭରେ ସେହି ପାପାତ୍ମା ପୁତ୍ରର ଉଦ୍ଭବ ଘଟିଛି । ହାୟ ଦୁଷ୍ଟ ପୁଅକୁ ଜନ୍ମ ଦେଇ ପିତାମାତା ସାରାଜୀବନ ଦୁଃଖ ଭୋଗ କରନ୍ତି । ସୁନୀଥା ଏହିପରି ସବୁବେଳେ ନିଜ ବାପାଙ୍କ କାର୍ଯ୍ୟ ଓ ମୁନି ସୁଶଙ୍ଖଙ୍କ ଅଭିଶାପ କଥା ଭାବିବାକୁ ଲାଗିଲେ । ଗର୍ଭସ୍ଥ ବାଳକ ଉପରେ ଏହି ଭାବନାର ପ୍ରଭାବ ପଡ଼ିଲା ।

ମୈତ୍ରେୟ ପୁଣି ବୁଝାଇ କହିଲେ—ହେ ବିଦୁର ! ଗର୍ଭବତୀ ସବୁବେଳେ ଯେଉଁ ଭାବନାରେ ବୁଡ଼ି ରହେ ସନ୍ତାନ ଉପରେ ହିଁ ତା'ର ପ୍ରଭାବ ପଡ଼େ । ତେଣୁ ଗର୍ଭବତୀ ନାରୀ କେବେହେଲେ ଅଯଥା କଥା, ଅମଙ୍ଗଳକର ଓ କଦର୍ଯ୍ୟ ଚିନ୍ତା କରିବା ଉଚିତ ନୁହେଁ । ସବୁବେଳେ ଭଗବାନଙ୍କ ଚିନ୍ତା କରିବା, ସାଧୁ ସଜ୍ଜନଙ୍କ କଥା ଶୁଣିବା ଓ ବିଭିନ୍ନ ଶାସ୍ତ୍ର ଅଧ୍ୟୟନ କରିବା ଗର୍ଭବତୀର ପ୍ରଧାନ କାର୍ଯ୍ୟ । ଏହାଦ୍ୱାରା ସନ୍ତାନ ଦୀର୍ଘାୟୁ ଓ ସଦ୍‌ଗୁଣସମ୍ପନ୍ନ ହୁଏ । କିନ୍ତୁ ସୁନୀଥା ସର୍ବଦା ପିତା ମୃତ୍ୟୁଦେବଙ୍କ କଥା ଭାବିବାରୁ ଓ ଅଭିଶାପଗ୍ରସ୍ତା ହୋଇଥିବାରୁ ତାର ପୁତ୍ର ନିର୍ଦ୍ଦୟ, ବେଦବିରୋଧୀ ନାସ୍ତିକ ହୋଇଥିଲା । ତେଣୁ ବ୍ରାହ୍ମଣମାନେ ଅତିଷ୍ଠ ହୋଇ ତାକୁ ମାରି ପକାଇଥିଲେ ।

## ଛପ୍‌ପୟ

"ଗର୍ଭବତୀ ବନି ସଦା ସୁନୀଥା ଜହୀ ବିଚାରେ ।
ହୋଓ୍ୱେ ପାପୀ ପୁତ୍ର କ୍ରୂରତା ମନ ମହଁ ଧାରେ ।।
ଅଙ୍ଗ ଅଙ୍ଗ କୋ ପାପ ଜିମିଟି ବୀରଜ ମହଁ ଆୟୋ ।
ଶାପ ସୁନୀଥା ଫଲ୍ୟୋ କ୍ରୂରକର୍ମା ସୁତ ଜାୟୋ ।।
ଗର୍ଭକାଲ ମହଁ ମାତୁ କୋ, ସୋଚ ସଦା ଜୈସୋ କରେ ।
ପୂର୍ଣ୍ଣ ଗର୍ଭ କେ ହୋତ ଈ, ସୁତ ପୈଦା ତୈସେ କରେ ।।"



# କ୍ରୂରକର୍ମା ବେଣ

"ସଃ ବାଲ ଏବ ପୁରୁଷୋ ମାତାମହମନୁବ୍ରତଃ ।
ଅଧର୍ମାଂଶୋଦ୍ଭବଂ ମୃତ୍ୟୁଂ ତେନାଭବଦଧାର୍ମିକଃ ॥
ସ ଶରାସନମୁଦ୍ୟମ୍ୟ ମୃଗୟୁର୍ବନଗୋଚରଃ ।
ହନ୍ତ୍ୟସାଧୁର୍ମୃଗାନ୍‌ଦୀନାନ୍ ବେନୋଽସାବିତ୍ୟରୌଜ୍ଜନଃ ॥"

( ଭାଗବତ ୪ର୍ଥ ସ୍କନ୍ଧ-୧୩ ଅଧ୍ୟାୟ-ଶ୍ଳୋକ ୩୯, ୪୦ )

## ଛପ୍ପୟ

"ଭୟୋ ପାପମତ ବେନ ସଦା ମଦମାତୋ ଝୁମେ ।
ତୀର କମଣ୍ଟା ଲୟେ ମୃଗନ ମାରତ ବନ ଘୂମେ ॥
ଛୋରନ ବାନେ ଦୁଷ୍ଟ ଐଂଠ କେଂ ଜଳ ମେଂ ଡାରେ ।
ମଗ ମହଁ ମୂରଖ ପକରି ମାର ମୁକକନି କୀ ମାରେ ॥
ଶଠତା ସୁତ କୀ ସୁନି ସବହିଂ, ଦୁଃଖ ଅଙ୍ଗ କୂଁ ଅତି ଭୟୋ ।
ଯୋତେଁ ମନୁ କେ ବଂଶ ମହଁ, କୁଳ କଳଙ୍କ ୟହ ହ୍ୱୈ ଗୟୋ ॥"

ଜନ୍ମାନ୍ତରର ସଂସ୍କାରର କେବେହେଲେ ଦୂର ହୁଏ ନାହିଁ । ଗରୁଡ଼ ଭଗବାନଙ୍କ ସଖା, ସେବକ, ବାହନ ଓ ଭକ୍ତ, ତଥାପି ସାପକୁ ଖାଇବାର ସ୍ୱଭାବ ସେ ଛାଡ଼ିପାରି ନାହିଁ । ସର୍ପ ଶିବଙ୍କ ଭୂଷଣ । ତାଙ୍କର ବନ୍ଧୁ ହେଲେ ଅମୃତସ୍ରବା ଚନ୍ଦ୍ର । ସେହି ଚନ୍ଦ୍ରଙ୍କ ପାଖରେ ରହି ସାପମାନେ ଶିବଙ୍କ ଶୋଭା ବର୍ଦ୍ଧନ କରନ୍ତି । ଚନ୍ଦ୍ର ଶିବଙ୍କ ମସ୍ତକରେ ଓ ସର୍ପ ତାଙ୍କ ଜଟାମୁକୁଟରେ ଅଛନ୍ତି । ଚନ୍ଦ୍ରଙ୍କ ଅତି ନିକଟରେ ରହି ମଧ୍ୟ ସର୍ପ ବିଷ ଉଦ୍‌ଗାର କରିବାର ସ୍ୱଭାବ ଛାଡ଼ିପାରି ନାହିଁ । ଗାଈକୁ କେହି ଶିଖାଏ ନାହିଁ କି ତା'ର କ୍ଷୀରରେ ମଧୁରତା ଆଣିବା ପାଇଁ କେହି ଚେଷ୍ଟା କରେ ନାହିଁ । ତଥାପି ଗାଈର କ୍ଷୀର ସ୍ୱଭାବତଃ ମଧୁର ହୁଏ । ସେହି

ପିଲାର ପୂର୍ବସଂସ୍କାର ଦୋଷଯୁକ୍ତ ତାକୁ କେହି ନ ଶିଖାଇଲେ ବି ସେ ଅସମ୍ଭବ ପ୍ରକାର ଦୁଷ୍ଟାମି କରେ । କଥା କହିବା ଶିଖିବାମାତ୍ରେ ପାପାତ୍ମା ଶିଶୁ ଅନ୍ୟକୁ ଦୁଃଖ ଦିଏ ।

ମୈତ୍ରେୟ ମୁନି କହିବାକୁ ଲାଗିଲେ—ବିଦୁର ! ପୁତ୍ରେଷ୍ଟି ଯଜ୍ଞ ପରେ ସୁନୀଥା ଯଥାସମୟରେ ପୁଅ ଜନ୍ମ କଲା । ସୁନୀଥାର ଚିନ୍ତା ଓ ମହାରାଜ ଅଙ୍ଗଙ୍କ ପାପସମୂହକୁ ନେଇ ପଢି ଜନ୍ମ ହେଲା । ତା'ର ନାମ ଦିଆଗଲା, ବେନ, ଅର୍ଥାତ୍ ଦୁଃଖଦାୟକ । ବେନ ବଡ ହେବା ପରେ ହିଂସାତ୍ମକ କାର୍ଯ୍ୟରେ ପ୍ରବୃତ୍ତ ହେଲା । ଧନୁ ତୀର ଧରି ଜଙ୍ଗଲରେ ବୁଲିଲା । ଯାହାକୁ ଦେଖିଲା ତାକୁ ମାରିଲା । ଶରାଘାତରେ ଛଟପଟ ହୋଇ ମୃତ୍ୟୁବରଣ କରୁଥିବା ପଶୁପକ୍ଷୀଙ୍କୁ ଦେଖି ବେନ ଆନନ୍ଦ ଲାଭ କରୁଥିଲା । ଶ୍ରେଷ୍ଠ ଶ୍ରେଷ୍ଠ ପିଲାଙ୍କୁ ଧରି ତଣ୍ଟି ଚିପି ସେ ମାରୁଥିଲା । ନିଜର ଆନନ୍ଦ ପାଇଁ ମଣିଷ, ପଶୁ, ପକ୍ଷୀ ଯାହାଙ୍କୁ ଆଗରେ ଦେଖୁଥିଲା ତାକୁ ଜୀବନରେ ମାରିଦେଉଥିଲା ।

ମହାରାଜ ଅଙ୍ଗ ପୁଅର ଏ ପ୍ରକାର ଅତ୍ୟାଚାର ଶୁଣି ତାକୁ ପାଖକୁ ଡାକି ବୁଝାଇଲେ—ଦେଖ ବେନ ! କାହାରିକୁ ମାରିବା ଉଚିତ ନୁହେଁ । ସବୁ ସେହି ଭଗବାନ୍ ଶ୍ରୀହରିଙ୍କର ଭିନ୍ନ ଭିନ୍ନ ରୂପ । ସମସ୍ତଙ୍କଠାରେ ଭଗବତ୍ ସତ୍ତା ରହିଛି । ନିଜର ଯେପରି କଷ୍ଟ, ଦୁଃଖ, ବେଦନା ରହିଛି ଅନ୍ୟର ମଧ୍ୟ ସେହିପରି ଦୁଃଖ ଅଛି । ସମସ୍ତଙ୍କ ପ୍ରତି ଦୟାଳୁ ହେବା ଆମର କର୍ତ୍ତବ୍ୟ । ଧର୍ମର ମୂଳ ହେଉଛି ଦୟା । ଦୟାଳୁ ଲୋକ ସ୍ୱର୍ଗକୁ ମଧ୍ୟ ଜୟ କରିପାରେ । ବୁଝିଲୁ ? ବେନ ସ୍ୱୀକୃତିସୂଚକ 'ହଁ' ବୋଲି କହିବାରୁ ରାଜା ପଚାରିଲେ—କଣ ବୁଝିଲୁ ?

ବେନ କହିଲା—ବୁଝାଇବାକୁ ଆରମ୍ଭ କରିବା ମାତ୍ରେ ମୁଁ ଏହି ପିମ୍ପୁଡି ଗାତକୁ ଚାହିଁଲି । ଆପଣଙ୍କ କଥା ଆରମ୍ଭ ହେବାଠାରୁ ଏ ପର୍ଯ୍ୟନ୍ତ ୧୭୫୮ଟି ପିମ୍ପୁଡି ଗାତରୁ ବାହାରିକୁ ଆସିଲେ ଏବଂ ସେଗୁଡ଼ିକୁ ମୁଁ ଦଳି ମାରିଦେଇଛି ।

ଏହା ଶୁଣି ମହାରାଜ ଅଙ୍ଗ ନିଜ ମୁଣ୍ଡରେ ହାତ ଦେଲେ । ସେ ଜାଣିପାରିଲେ ଯେ ଏ ଦୁଷ୍ଟକୁ ବୁଝାଇହେବ ନାହିଁ । କଣ କରିବି, କିପରି ମୋର ଏ ଦୁଃଖ ଦୂର ହେବ; ଏହି ଚିନ୍ତାରେ ସେ ବ୍ୟାକୁଳ ହେଲେ । ବେନର ଦୁଷ୍କର୍ମ କଥା ସେ ସବୁବେଳେ ଭାବୁଥିଲେ । ଦିନେ ଜଣେ ମହାତ୍ମା ଆସି ପହଞ୍ଚିଲେ । ମହାରାଜ ଅଙ୍ଗ ତାଙ୍କୁ ସ୍ୱାଗତ କଲେ । ସେ ଥିଲେ ସ୍ୱଭାବତଃ ଦୟାଳୁ । ରାଜାଙ୍କ ମନୋଭାବ ଲକ୍ଷ୍ୟ କରି ମହାତ୍ମା ପଚାରିଲେ—ରାଜନ୍ ! ଆପଣଙ୍କ ମୁହଁରୁ କୌଣସି ଆତ୍ମ-ବେଦନାରେ ଆପଣ ଦୁଃଖୀ ଥିବାର ମନେ ହେଉଛନ୍ତି । ଆପଣ ଚିନ୍ତାଗ୍ରସ୍ତ ଅଛନ୍ତି । ଦୁଃଖର କାରଣ କଣ ମୋତେ କୁହନ୍ତୁ ।

ମହାରାଜ ଅଙ୍ଗ ଉତ୍ତର ଦେଲେ—ଭଗବନ୍ ! ମୁଁ କଣ କହିବ ? ପୂର୍ବ ଜନ୍ମରେ ଏପରି କି ଘୋର ପାପ କରିଥିଲି ଯେ ଏ ଜୀବନ ମୋର କେବଳ ମାନସିକ ଦୁଃଖରେ କଟୁଛି । ମୋ' ପୁଅ ମୋର ଚିନ୍ତାର କାରଣ । ପୁଅଟି ମୋର କ୍ରୂର, ଦୁଷ୍ଟ ଓ ଦୁର୍ଦ୍ଦାନ୍ତ । ସେ ସମସ୍ତଙ୍କୁ ନିର୍ଯ୍ୟାତିତ କରୁଛି । ଅସମ୍ଭବ ଦୁଃଖ ଓ ଯନ୍ତ୍ରଣା ଦେଉଛି । ଏପରି କୁପୁତ୍ରର ପିତା ହେବାଠାରୁ ପୁତ୍ରହୀନ ହେବା ହଜାରେ ଗୁଣରେ ଶ୍ରେୟସ୍କର । ସେ ପୁରୁଷର ଜୀବନ ଧନ୍ୟ ଯାହାର ପୁତ୍ର ଆଦୌ ନାହିଁ । ଦୁଷ୍ଟ, ମୂର୍ଖ, କୁପୁତ୍ର ଜନିତ ଦୁଃଖ ଅନନ୍ତ ପାପର ଫଳ । ଯେଉଁମାନେ ପୂର୍ବଜନ୍ମରେ ଭଗବାନଙ୍କୁ ଭକ୍ତିସହକାରେ ପୂଜା କରି ନାହାଁନ୍ତି ସେଇମାନଙ୍କର ଏ ଜନ୍ମରେ କୁପୁତ୍ର ଜନ୍ମ ହୁଅନ୍ତି । ମୂର୍ଖ ଓ ଦୁଷ୍ଟ ପୁତ୍ର କେବଳ ଅନର୍ଥର କାରଣ ହୁଏ ।

ଯେଉଁ ବଂଶରେ କୁପୁତ୍ର ଜନ୍ମ ହୁଏ ସେ କୁଳର ସମସ୍ତ ପ୍ରତିଷ୍ଠା ମାଟିରେ ମିଶିଯାଏ । ଯେତେ ପ୍ରତିଷ୍ଠିତ ଓ ସୁଖ୍ୟାତ ବଂଶ ହେଲେ ମଧ୍ୟ ତା'ର ଯଶ ନଷ୍ଟ ହୋଇଯାଏ । ଦୁଷ୍ଟ, ମୂର୍ଖ ବା କୁପୁତ୍ର ଅଧର୍ମ କାର୍ଯ୍ୟ କରି କେବଳ ନିଜେ ନୁହେଁ ବଂଶର ସମସ୍ତଙ୍କୁ କଳଙ୍କିତ କରେ ଏବଂ ପିତୃଲୋକଙ୍କୁ ଦୁଃଖ ଦିଏ । ଏହି କାରଣରୁ ପରିବାରଙ୍କୁ ଅଜସ୍ର ଦୁଃଖ ଭୋଗ କରିବାକୁ ପଡ଼େ । ସମସ୍ତେ ବିରୋଧୀ ହୁଅନ୍ତି । ପ୍ରତିଦିନ ଲୋକ ନାନାପ୍ରକାର ଅଭିଯୋଗ ନେଇ ଆସନ୍ତି । ସମସ୍ତେ ବାପା ମା'ଙ୍କୁ ଦାୟୀ କରନ୍ତି ଏବଂ ବିରୋଧଭାବ ପ୍ରକାଶ କରନ୍ତି ।

ସବୁଠାରୁ ବଡ଼କଥା ହେଉଛି ଦୁଷ୍ଟ ପୁଅ ପାଇଁ ଦିନ-ରାତି ହୃଦୟ ଜଳୁଥାଏ ଓ ମାନସିକ ଚିନ୍ତା ଲାଗି ରହେ । ସବୁବେଳେ ଅନୁତାପ ଜ୍ୱାଳାରେ ଦଗ୍ଧ ହେବାକୁ ପଡ଼େ । ଏଇସବୁ କାରଣରୁ ସମସ୍ତ ସୁଖ ଦୁଃଖରେ ପରିଣତ ହୁଏ । ସମସ୍ତ ପ୍ରକାର ଆମୋଦ ପ୍ରମୋଦ ବିଷମୟ ହୋଇଯାଏ ଏବଂ ଘରର ସମସ୍ତ ଆନନ୍ଦ ମଉଳିଯାଏ ।

ରାଜାଙ୍କର ମନୋବେଦନାର କାରଣ ଶୁଣି ମହାତ୍ମା ହସିଦେଇ କହିଲେ —ରାଜନ୍ ! ନିଜ ବଂଶରେ କୁପୁତ୍ର ଜନ୍ମ ହେବା ବଡ଼ ଭାଗ୍ୟର କଥା । ଯାହା ଘରେ କୁପୁତ୍ର ଜନ୍ମ ହୁଏ ସେ ସବୁଠାରୁ ଭାଗ୍ୟବାନ୍ ପୁରୁଷ ।

ରାଜା ଆଶ୍ଚର୍ଯ୍ୟ ହୋଇ ପଚାରିଲେ—ଭଗବନ୍ ! କୁପୁତ୍ର କିପରି ସୌଭାଗ୍ୟର ସୂଚକ ତାହା ବୁଝାଇ ଦିଅନ୍ତୁ ।

ମାହାତ୍ମା କହିଲେ—ରାଜନ୍ ! ସୁପୁତ୍ର ଜନ୍ମ ହେଲେ ସେ ନିଜର ସ୍ୱଭାବ, ସେବା, ସତ୍କାର, ସଦାଚାର ଓ ସଦ୍‌ଗୁଣଦ୍ୱାରା ପିତାମାତାଙ୍କୁ ବଶୀଭୂତ କରିଥାଏ । ବାପା ମା' ତା' ପ୍ରତି ଅନୁରକ୍ତ ହୋଇ ତା'ର କିପରି ମଙ୍ଗଳ ହେବ ତାହାହିଁ ଚିନ୍ତା

କରନ୍ତି । ତାଙ୍କୁ ଝୁରି ରଖିବା ପାଇଁ ସେମାନେ କେବେହେଲେ ବାହାରକୁ ଯାଆନ୍ତି ନାହିଁ । ସୁପତ୍ରର ମୋହରେ ପଡ଼ି ତାଙ୍କର ବୈରାଗ୍ୟ ଜାତ ହୁଏ ନାହିଁ ବରଂ ଘର, ଦ୍ୱାର, ପରିବାର ପ୍ରତି ଅଧିକରୁ ଅଧିକ ଆସକ୍ତ ହୋଇପଡ଼ନ୍ତି । ସେପରି ଲୋକର ପରଲୋକ ନଷ୍ଟ ହୋଇଯାଏ । ମରିବାବେଳେ ପୁଅ ନାତିଙ୍କୁ ସ୍ମରଣ କରି ପ୍ରାଣ ଯାଏ । ସେଥିପାଇଁ ପୁଣି ସେହି ପରିବାରରେ ସେ ଜନ୍ମ ଗ୍ରହଣ କରେ ।

କୁପୁତ୍ର ସବୁବେଳେ ଦୁଃଖ ଦିଏ । ତେଣୁ ମନରେ ବିରାଗ ଆସେ । ଘର, ପରିବାର ଆଦି ସଂସାରର ସୁଖ ନଷ୍ଟଭ୍ରଷ୍ଟ ହୋଇଯାଏ । ଏ ଅବସ୍ଥାରେ ଯେ ଘର ତ୍ୟାଗ କରି ଚାଲିଯାଏ ନାହିଁ ତା'ଠାରୁ ବଳି ପତିତ ଅଧମ ଆଉ କେହି ନାହାଁନ୍ତି । ବୈରାଗ୍ୟ ଉତ୍ପନ୍ନ କରିବାରେ କୁପୁତ୍ର ବ୍ୟତୀତ ଅନ୍ୟ କେହି ସହାୟକ ହୁଅନ୍ତି ନାହିଁ । ତେଣୁ ଆପଣ ମୋ କଥା ମାନି ଘରଦ୍ୱାର ଓ ପରିବାରର ମୋହ ତ୍ୟାଗ କରନ୍ତୁ । ସର୍ବାନ୍ତଃକରଣରେ ଶ୍ରୀହରିଙ୍କ ଚରଣରେ ଶରଣ ପଶନ୍ତୁ । ସେଥିରେ ଆପଣଙ୍କର କଲ୍ୟାଣ ହେବ ଓ ଆପଣ ସୁଖୀ ହେବେ ।

ଏହା କହି ମହାତ୍ମା ଚାଲିଗଲେ । ଏବେ କଣ କରିବା ଉଚିତ ହେବ ବୋଲି ମହାରାଜ ଅଙ୍ଗ ଭାବିବାକୁ ଲାଗିଲେ ।

## ଛପ୍‌ପୟ

"ସମଝାୟୋ ବହୁ ଭାନ୍ତି କିନ୍ତୁ ଓ ହି ବେନ ନ ମାନେୟା ।
ନହିଁ ସମଝେଂଗୋ ଦୁଷ୍ଟ ଅଙ୍ଗ ଯହି ନିଶ୍ଚୈ ଜାନେୟା ।।
ସୋଚେଂ କୁଲ ମହଁ କୋଢ଼ ଭୟୋ ଖଲ ମତ୍ତ ସୁତ ପାପୀ ।
କୈସେ ତ୍ୟାଗୁଁ ଜାହି ଜହୀ ଚିନ୍ତା ଚିତ ବ୍ୟାପୀ ।।
କହା କରୂଁ କଛୁ ବସ ନହୀଁ, ଅବ ତଜି ଘର ହରିକୁଁ ଭଜୂଁ ।
ତଜୈ ଦୁଷ୍ଟତା ଜହି ନହୀଂ, ସୋ ଜାକୂଁ ହୌଂ ହୀ ତଜୂଁ ।।"



# ମହାରାଜ ଅଙ୍ଗଙ୍କ ଗୃହତ୍ୟାଗ

"ଏବଂ ସ ନିର୍ବିଣ୍ଣମନା ନୃପୋ ଗୃହାତ୍
ନିଶୀଥ ଉତ୍ଥାୟ ମହୋଦୟୋଦୟାତ୍ ।
ଅଲବ୍ଧନିଦ୍ରୋ ନୁପଲକ୍ଷିତୋ ନୃଭି-
ର୍ହିତ୍ୱା ଗତୋ ବେନସୁବଂ ପ୍ରସୁପ୍ତାମ୍ ॥"

(ଭାଗବତ-୪ର୍ଥ ସ୍କନ୍ଧ-୧୩ ଅଧ୍ୟାୟ-ଶ୍ଳୋକ ୪୭)

## ଛପ୍ପୟ

ନିବିଡ଼ ତିମିରମୟ ନିଶା ନୀଂଦ ନୃପକୁଁ ନହିଁ ଆଇ ।
କରିକେ ଇତ ଉତ ବାତ ବେନ କୀ ମାତ ସୁଆଇ ॥
ସବକୁଁ ସୋବତ ଛୋଡ଼ି ରାଜଘର ତେଂ ନୃପ ନିକସେ ।
ଚନ୍ଦ୍ରହୀନ ଲଖି ନିଶା ଅସଂଖ୍ୟାଂ ଉଡ଼ୁଗନ ବିକସେ ॥
ଜନମେ ଜା ଘର ମେଁ ନୃପତି, ବଡେ ଭୟେ ରାଜା ଭୟେ ।
କେଂଚୁଲ ତଜି ଅହି ଜାହି ଜ୍ୟୋଂ, ସୁତ ଦୁଖତେ ତ୍ୟୋଂ ଭଗି ଗୟେ

ମଣିଷ ନିଜର ଦେହ ଓ ଦେହ ସହିତ ସମ୍ବନ୍ଧ ଥିବା ବସ୍ତୁଗୁଡ଼ିକ ପ୍ରତି ଏପରି ଆସକ୍ତ ହୋଇପଡେ ଯେ ସ୍ୱେଚ୍ଛାରେ ସେଗୁଡ଼ିକୁ କେବେହେଲେ ଛାଡ଼ିବା ପାଇଁ ସେ ଇଚ୍ଛା କରେ ନାହିଁ । ଘରର କାଠି କୁଟା ପ୍ରତି ମଧ୍ୟ ତାର ମୋହ ଥାଏ । ଏପରିକି ଯେ କୌଣସି ଅଦରକାରୀ ଓ ପରିତ୍ୟକ୍ତ ଜିନିଷ ମଧ୍ୟ ସେ ଅନ୍ୟକୁ ଦେବା ପାଇଁ କୁଣ୍ଠିତ ହୁଏ । ଗଛର ପତ୍ରଟିଏ କି ଫୁଲ ବା ଫଳଟିଏ ଛଡ଼େଇନେଲେ ବା

ମାଟି କଳସୀଟି ଭାଙ୍ଗିଗଲେ ମୋହଗ୍ରସ୍ତର ହୃଦୟରେ ଆଘାତ ଲାଗେ । ଏସବୁ ସତ୍ତ୍ୱେ ମନରେ ବୈରାଗ୍ୟଭାବରେ ଉଦୟ ହେଲେ ଅଥବା ଅତ୍ୟନ୍ତ ଶୋକାବିଷ୍ଟ ହେଲେ ମଣିଷ ସବୁକିଛୁ ତୃଣ ପରି ତୁଚ୍ଛ ମନେକରି ସେଗୁଡ଼ିକୁ ତ୍ୟାଗ କରି ଚାଲି-ଯାଏ । ଏ ସଂସାରର ଅନିତ୍ୟତାକୁ ଦେଖି ଯାହାର ବୈରାଗ୍ୟ ଆସେ ନାହିଁ, ଯେ ସବୁ ପ୍ରକାର ନିନ୍ଦା, ଅପମାନ, ଦୁଃଖ ସହି ଅତି କୁତ୍ସିତ ଜୀବନ ଯାପନ କରେ ଓ ପାର୍ଥୀବ ବସ୍ତୁ ପ୍ରତି ଆସକ୍ତ ହୋଇ ପଡ଼ିରହେ, ସେ ନରରୂପୀ ପଶୁ । ତା'ର ଜୀବନ ନିରର୍ଥକ । ତାର ବଞ୍ଚିବା ମରିବା ସମାନ । କିନ୍ତୁ ମନସ୍ୱୀ ପୁରୁଷ ଅପଯଶ ଅପେକ୍ଷା ମରଣକୁ ଶ୍ରେୟସ୍କର ମନେକରେ ।

ମୈତ୍ରେୟ ମୁନି କହିଲେ—ହେ ବିଦୁର ! ବେନ ପ୍ରାପ୍ତବୟସ୍କ ହୋଇ-ସାରିଥିଲା । ମହାରାଜାଙ୍କର ଏକମାତ୍ର ପୁତ୍ର, କିନ୍ତୁ ଅତ୍ୟଧିକ କ୍ରୂର ସ୍ୱଭାବର ହୋଇ ଥିବାରୁ ଲୋକେ ତାକୁ ଭୟ କରୁଥିଲେ । ମନ୍ତ୍ରୀମାନେ ମଧ୍ୟ ତା' ଆଗରେ କଥା କହି ନ ଥିଲେ । ଡେଣ୍ଡି ସମସ୍ତେ ତା' ଆଗରେ ଭୟରେ ଥରୁଥିଲେ । ବହୁତ ବୁଝାଇବା ପରେ ମଧ୍ୟ ଯେତେବେଳେ ସେ କିଛି ବୁଝିଲା ନାହିଁ, ସେତେବେଳେ ମହାରାଜ ଅଙ୍ଗ ମନେ ମନେ ସ୍ଥିର କଲେ ଯେ, ଏ ଘରଦ୍ୱାର ଛାଡ଼ି ଚାଲିଯିବା ଉଚିତ ହେବ । ବେନକୁ ଦମନ କରିବା ସମ୍ଭବ ନୁହେଁ । ବୁଝେଇ ବୁଝେଇ ମରିଗଲେ ମଧ୍ୟ ସେ କୌଣସି କଥା ମାନିବ ନାହିଁ । ଆଖି ଆଗରୁ ଟିକିଏ ଦୂରେଇ-ଗଲେ ଯାହା ତାହା କରୁଛି । ଏଇସବୁ କଥା ଭାବି ମହାରାଜ ଗୃହତ୍ୟାଗ କରିବାର ସିଦ୍ଧାନ୍ତ ନେଲେ ।

ସେଦିନ ଥିଲା ଅନ୍ଧାର ରାତି । ନାନା ଚିନ୍ତା ହେତୁ ଅଙ୍ଗଙ୍କ ଆଖିରେ ନିଦ ନ ଥିଲା । ସେ ଭାବୁଥିଲେ—ମୋ' ବଂଶର ଖ୍ୟାତି ବେନ ରୂପକ ପାପଦ୍ୱାରା ସବୁ-କାଳ ପାଇଁ ନଷ୍ଟ ହୋଇଗଲା । ଚଣ୍ଡାଳ ଏ ବଂଶରେ ଏପରି କଳଙ୍କ ସୃଷ୍ଟି କଲା ଯେ ଆମର ପାରମ୍ପରିକ ଖ୍ୟାତି ଓ ମହାନ ଯଶ ଧୂଳିସାତ୍ ହୋଇଗଲା । ଆଉ ଏପରି ମିଳିତ ଓ ନାସ୍ତିକ ପୁତ୍ରର ଅଧୀନରେ ରହିବା ଉଚିତ ନୁହେଁ ।

ମହାରାଣୀ ସୁନୀଥା ପତିଙ୍କ ସେବା ଶୁଶ୍ରୂଷା ପରେ ଶେଯରେ ଶୋଇଗଲେ । ରାଣୀ ଗାଢ଼ ନିଦ୍ରାରେ ଶୋଇପଡ଼ିବାର ଦେଖି ମହାରାଜ ଧୀରେ ଧୀରେ ଉଠିଲେ ଏବଂ ନିଜର ବେଶ ବଦଳାଇ ରାଜବାଟୀରୁ ବାହାରକୁ ଚାଲି ଆସିଲେ । ସୌଭାଗ୍ୟ ବଶତଃ କେହି କିଛି ଜାଣି ପାରିଲେ ନାହିଁ । ନଗରରେ ବାହାରକୁ ଯାଇ ସେ ଏକ ଗୁପ୍ତ ସ୍ଥାନରେ ଲୁଚି ରହିଲେ ।

ସକାଳ ହେଲା । ମହାରାଣୀ ରାଜାଙ୍କ ଶଯ୍ୟା ଶୂନ୍ୟ ପଡ଼ିଥିବାର ଦେଖି ନିର୍ବାକ୍ ହୋଇ ରହିଗଲେ । ଦାସଦାସୀମାନେ ଆସିଲେ । ସମସ୍ତଙ୍କୁ ପଚାରିଗଲା । ବିଭିନ୍ନ ସ୍ଥାନରେ ଖୋଜ ଖବର ନିଆଗଲା । କିନ୍ତୁ କେହି ରାଜାଙ୍କ ସନ୍ଧାନ ପାଇଲେ ନାହିଁ । ଶୀଘ୍ର ମହାମନ୍ତ୍ରୀଙ୍କୁ ଡକାଇ ଅଣାଗଲା । ପ୍ରଧାନ ସେନାପତି ଆସିଲେ ଚାରିଆଡ଼କୁ ଦୂତମାନେ ଗଲେ । ମନ୍ତ୍ରୀ ଓ ପୁରୋହିତ ନିଜ ନିଜର ଅନୁଗତ ଲୋକଙ୍କୁ ନେଇ ଚାରିଆଡ଼େ ଅନୁସନ୍ଧାନ କଲେ । କିନ୍ତୁ ସମସ୍ତଙ୍କ ଚେଷ୍ଟା ବିଫଳ ହେଲା । ଦୁଷ୍ଟ ଯୋଗୀ ଯେପରି ନିଜ ହୃଦୟରେ ଥିବା ପରମାତ୍ମାଙ୍କ ସନ୍ଧାନ ପାଇପାରେ ନାହିଁ ସେହିପରି ରାଜପୁରୁଷମାନେ ରାଜାଙ୍କୁ ପାଇଲେ ନାହିଁ । ଅନ୍ତର୍ଯାମୀ ପ୍ରଭୁ ଅତି ନିକଟରେ ନିଜ ହୃଦୟ ମଧ୍ୟରେ ଅଛନ୍ତି । କିନ୍ତୁ ଲୋକେ ତାଙ୍କୁ ଖୋଜିବା ପାଇଁ କାଶୀ, ପ୍ରୟାଗ, ଜଗନ୍ନାଥ, ରାମେଶ୍ୱର, ଦ୍ୱାରକା, ବଦ୍ରିନାଥ ଆଦି ନାନା ସ୍ଥାନରେ ବୁଲନ୍ତି । କେହି ତାଙ୍କୁ ନିଜ ଭିତରେ ଖୋଜନ୍ତି ନାହିଁ । ସେହିପରି ରାଜା ନଗର ନିକଟରେ ଲୁଚି ରହିଥିଲେ ମଧ୍ୟ ଚାକର ବାକର, ମନ୍ତ୍ରୀ, ପୁରୋହିତ ସମସ୍ତେ ତାଙ୍କୁ ଦୂର ଦୂର ସ୍ଥାନରେ ଖୋଜି ବୁଲୁଥିଲେ । କୌଣସିଠାରୁ ରାଜାଙ୍କ ଖବର ନ ପାଇବାରୁ ସେବକମାନେ କାନ୍ଦି କାନ୍ଦି ଯାଇ ମହାରାଣୀ ସୁନୀଥାଙ୍କୁ ଜଣାଇଲେ ।

ରାଜ୍ୟରେ ରାଜା ନ ଥିଲେ, ଶାସକ ନ ଥିଲେ ଅରାଜକତା ବ୍ୟାପିଯାଏ । ରାଜା ଚାଲିଯିବା ପରେ ଚାରିଆଡ଼େ ଲୁଣ୍ଠତରାଜ ଆରମ୍ଭ ହୋଇଗଲା । ଚୋର ଡକାୟତି ବଢ଼ିଲା । ଦିନ ଦୁଇପହରେ ହତ୍ୟା ଲୁଣ୍ଠତରାଜ ଲାଗିଗଲା । ବେନ ଏପରି ଦୁଷ୍ଟ ଥିଲା ଯେ କୌଣସି ମନ୍ତ୍ରୀ ତାକୁ ରାଜା କରିବାପାଇଁ ରାଜି ହେଲେ ନାହିଁ । କିନ୍ତୁ ରାଜାଙ୍କ ବିନା କିପରି ଶାସନକାର୍ଯ୍ୟ ଚାଲିବ କାହାର ଆଦେଶକୁ ସମସ୍ତେ ମାନିବେ ? ରାଜ୍ୟର ଅରାଜକତା କଥାଭାବି ମୁନିଋଷିମାନେ ଏକତ୍ରିତ ହେଲେ । ମହାରାଜ ଅଙ୍ଗ ଚାଲିଯିବା ପରେ ରାଜସିଂହାସନ ଖାଲି ପଡ଼ିଲା । ପ୍ରଜାମାନଙ୍କ ମଧ୍ୟରେ ନାନା ଉପଦ୍ରବ ସୃଷ୍ଟି ହେଲାଣି ।'ଏବେ କଣ କରାଯିବ—ଏହି କଥା ସମସ୍ତେ ବିଚାର କଲେ ।

ମନ୍ତ୍ରୀମାନେ କହିଲେ—ମୁନିଗଣ ! ଆପଣମାନେ ଯାହାକୁ ଇଚ୍ଛା ତାକୁ ରାଜା କରନ୍ତୁ । କିନ୍ତୁ ମହାରାଜ ଅଙ୍ଗଙ୍କ ପୁତ୍ର ରାଜା ହେବା ପାଇଁ ଏକାନ୍ତ ଅଯୋଗ୍ୟ ।

ମୁନିମାନେ ବୁଝାଇଲେ—'ରାଜାଙ୍କ ପୁଅ ଥାଉଁ ଥାଉଁ ଅନ୍ୟ କେହି କିପରି ରାଜା ହେବ ? ମନୁବଂଶର ସିଂହାସନରେ କେବଳ ସେହି ବଂଶର ଦାୟାଦ ବସି ପାରିବେ । ମହାରାଜ ଉତ୍ତାନପାଦ, ଧ୍ରୁବ, ଆଦି ପୁଣ୍ୟାତ୍ମା ରାଜାମାନଙ୍କ ବଂଶର

ମୂଳୋଚ୍ଛେଦ କରାଯିବା ଉଚିତ ନୁହେଁ । ତେଣୁ ଯାହା ହେଲେ ମଧ୍ୟ ବେନକୁ ହିଁ ରାଜସିଂହାସନରେ ଅଭିଷିକ୍ତ କରିବାକୁ ପଡ଼ିବ ।' ସମସ୍ତେ ଏ ସିଦ୍ଧାନ୍ତର ବିରୋଧ କଲେ ମଧ୍ୟ ମୁନିମାନେ କାହାର କଥା ମାନିଲେ ନାହିଁ ।

ଶୌନକ ପଚାରିଲେ—ବେନ କ୍ରୂର ଓ ଦୁର୍ଦ୍ଦାନ୍ତ ହୋଇଥିବାର ଜାଣି ମଧ୍ୟ ମୁନିମାନେ କାହିଁକି ତାକୁ ରାଜା କରିବା ପାଇଁ ଆଗ୍ରହ ପ୍ରକାଶ କଲେ ? ଅନ୍ୟ କୌଣସି ଯୋଗ୍ୟ ଲୋକକୁ ରାଜା କରାଯାଇ ପାରିଥାନ୍ତା । ସେଥିରେ ଆପତ୍ତି କରିବାର କାରଣ କଣ ?

ମହର୍ଷି ସୂତ କହିଲେ—ମହାଭାଗ ! ହଁ, ଆପଣଙ୍କ କହିବାମତେ ରାଜା ବା ରାଜବଂଶୀୟ ପୁରୁଷ ଅଭାବରେ ଅନ୍ୟକୁ ରାଜପଦରେ ଅଭିଷିକ୍ତ କରାଯାଇଥାଏ । କିନ୍ତୁ ସେ ସମୟରେ ବଂଶର ଉଚ୍ଛେଦ ବିଧିକୁ ସ୍ୱୀକାର କରାଯାଉ ନ ଥିଲା । କେବଳ ପାପବଶତଃ ରାଜବଂଶରେ ଉଚ୍ଛେଦ ଘଟୁଥିଲା । କଳିଯୁଗରେ ଶୁଦ୍ଧ କ୍ଷତ୍ରୀୟ-ବଂଶ ରହିବ ନାହିଁ । ତେଣୁ ଯେଉଁ ଜାତିର ବଳ ବେଶୀ ହେବ ସେ ରାଜା ହୋଇଯିବ । ଏହା ଅଧର୍ମର କାରଣ । ଧର୍ମ ଥିବାଯାଏ କୁଳମର୍ଯ୍ୟାଦା, ବଂଶପରମ୍ପରା ପାଳନ କରାଯାଇଥାଏ । ବର୍ଣ୍ଣାଶ୍ରମ ଧର୍ମରେ ସବୁ ବିଷୟରେ ସଂସ୍କାରର ପ୍ରାଧାନ୍ୟ ସ୍ୱୀକୃତହୁଏ । କ୍ଷତ୍ରିୟ ବୀର୍ଯ୍ୟରେ କ୍ଷତ୍ରିୟ ଗର୍ଭରୁ ଯଥାବିଧି ସଂସ୍କାରଦ୍ୱାରା ଯେଉଁ ପୁତ୍ର ଜନ୍ମଗ୍ରହଣ କରେ ସେ କ୍ଷତ୍ରିୟହୁଏ । ସେ କ୍ଷତ୍ରିୟସୁଲଭ ବୃତ୍ତି ଅବଲମ୍ବନ କରେ । ଏଥିରେ କେବେ କେବେ ବ୍ୟତିକ୍ରମ ଘଟିଥିଲେ ମଧ୍ୟ ତାହା ନିୟମ ରୂପେ ଗୃହୀତ ହୁଏ ନାହିଁ । ମୁନିମାନେ ଧର୍ମମତବାଦୀ ଥିଲେ । ସେମାନେ ଭାବିଲେ—ଯାହା ହେଲେ ମଧ୍ୟ ବେନ କୁଳୀନ ବଂଶର ସନ୍ତାନ । ବର୍ତ୍ତମାନ ବୁଦ୍ଧି ତା'ର ପରିପକ୍ୱ ହୋଇ ନାହିଁ । ସିଂହାସନରେ ବସିବା ପରେ ଏବଂ ରାଜ୍ୟଭାର ଗ୍ରହଣ କରିବା ପରେ ତା'ର ପରିବର୍ତ୍ତନ ହେବ । ସେ ସବୁକଥା ବୁଝିବ । ଏହା ଭାବି ମହାରାଣୀ ସୁନୀଥାଙ୍କର ଅନୁମତି ନେଇ ମନ୍ତ୍ରୀମାନଙ୍କ ବିରୋଧ ସତ୍ତ୍ୱେ ଭୃଗୁ, ଆଦି ଋଷିଗଣ ବେନକୁ ରାଜସିଂହାସନରେ ଅଭିଷିକ୍ତ କରାଇଦେଲେ । ଜଗତର କଲ୍ୟାଣ କରିବାରେ ଅଭିଳାଷୀ ମୁନିଗଣ ଅରାଜକତାର ପ୍ରତିକାର ପାଇଁ ଏହା କରିଥିଲେ ।

ମୈତ୍ରେୟ କହିଲେ—ହେ ବିଦୁର ! ବିଷ ରୋଗର ବିଷ ହେଉଛି ଔଷଧ । ବେନ ରାଜା ହେବା ପରେ ଦେଶର ଚୋର, ଡକାୟତି ବନ୍ଦ ହୋଇଗଲା, କାରଣ ବେନ ଥିଲେ ଅତ୍ୟନ୍ତ ଉଗ୍ର ସ୍ୱଭାବର ଲୋକ ।

## ଛପ୍‌ପୟ

"ଢୁଁଢ଼ବାୟେ ଚହୁଁ ଓର ପ୍ରଭୁ କୋ ପତୋ ନ ପାୟୋ ।
ତବ ଋଷି ମୁନି ମିଲି ଦୁଷ୍ଟ ବେନ କୂଁ ନୃପତି ବନାୟୋ ॥
ଯଦ୍ୟପି ମନ୍ତ୍ରୀ ସଚିବ ସବହିଁ ସହମତ ନହିଁ ଜାତେ ।
ତଉ ଅଙ୍ଗ କୋ ତନୟ ମୁନିନ ନୃପୋ କୀହ୍ନୋ ତାତେ ॥
ଏକ ଗିଲୋୟ ସ୍ୱଭାବ ଟେଂ, କଡ଼ୁଈ ଫିର ନୀମହିଁ ଚଢ଼ୀ ।
ତସ ସିଂହାସନ ପାଇକେ, ବେନ ଦୁଷ୍ଟତା ଅତି ବଢ଼ୀ ॥"



# ବେନରାଜା ଚରିତ

"ସ ଆରୂଢ଼ନୃପସ୍ଥାନ ଉନ୍ନଦ୍ଧୋ ଽଷ୍ଟ ବିଭୂତିଭିଃ ।
ଅବମେନେ ମହାଭାଗାନ୍ ସ୍ତବ୍ଧଃ ସମ୍ଭାବିତଃ ସ୍ୱତଃ ।।
ନ ଯଷ୍ଟବ୍ୟଂ ନ ଦାତବ୍ୟଂ ନ ହୋତବ୍ୟଂ ଦ୍ୱିଜାଃ କ୍ୱଚିତ୍ ।
ଇତି ନ୍ୟବାରୟଦ୍ଧର୍ମଂ ଭେରୀଘୋଷେଣ ସର୍ବଶଃ ।।"

(ଭାଗବତ-୪ର୍ଥ ସ୍କନ୍ଧ-୧୪ ଅଧ୍ୟାୟ-ଶ୍ଳୋକ-୪,୯)

## ଛପ୍ପୟ

"ଫିରୈଁ ନିରଙ୍କୁଶ ଭୟୋ କରେ ପଅମାନ ସବନୀ କୋ ।
ଭାନେ ବେଦ ନ ଯଜ୍ଞ କରେ ପୂଜନ ନ ସୁରନି କୋ ।।
ଡେଯାଡ଼ୀ ଦଈ ପିଟାୟ ଯଜ୍ଞ ମଖ ଦାନ କରୋ ମତ ।
ମୈଂ ହି ଇନ୍ଦ୍ର, କୁବେର, ଯମ, ରୁଦ୍ର ବୃହସ୍ପତ ।।
ମୋଇ ଛାଁଡ଼ି କେ ଔର କୁଁ, ଜପ ତପ କରକେଂ ଭଜିଂଗେ ।
ସମଝୋ ମେରେ ଖଡ୍ଗ ତେଁ, ପ୍ରାନ ତୁରତ ତେ ତଜଂଗେ ।।"

ଶରୀର ହିଁ ସବୁ କିଛୁ, ଈଶ୍ୱର ବୋଲି କେହି ନାହିଁ, କେହି ନମସ୍ୟ ନୁହେଁ, ମୁଁ ହେଉଛି ସବୁ, ଏହି ସବୁ ବିଚାରକୁ ନାସ୍ତିକତା କୁହାଯାଏ। ଏ ଶରୀର ଅସ୍ଥାୟୀ, ଆତ୍ମା ଏ ଦେହଠାରୁ ସ୍ୱତନ୍ତ୍ର, ଈଶ୍ୱର ଅଚିନ୍ତ୍ୟଶକ୍ତିର ଆଧାର, କଥା ଓ କାର୍ଯ୍ୟରେ ତାଙ୍କୁ ନମୋ ନମଃ, ନମୋ ନମଃ କହି ପ୍ରଣତି ଜଣାଇବି ଏବଂ ଜଗତରେ ସବୁ କିଛୁ ତାଙ୍କର, ଏ ପ୍ରକାର ଭାବନାକୁ ଆସ୍ତିକତା କୁହାଯାଏ । ଆସ୍ତିକତାର ବିପରୀତ ଭାବକୁ ନାସ୍ତିକତା କହନ୍ତି । ସଂସାରର ବିପତ୍ତିସୁଖ ପ୍ରାରବ୍ଧ କର୍ମ ଅନୁସାରେ ନାସ୍ତିକକୁ ମିଳିଥାଏ। ସେହିପରି ପୂର୍ବଜନ୍ମାର୍ଜିତ କର୍ମ ଫଳ

ସ୍ୱରୂପ ଆସ୍ତିକ ବେଳେ ବେଳେ ସାଂସାରିକବସ୍ତୁ ଅଭାବରେ ଦୁଃଖରେ ଥାଏ । କିନ୍ତୁ ନାସ୍ତିକ କେବେହେଲେ ମାନସିକ ଶାନ୍ତି ପାଏ ନାହିଁ । ଧନହୀନ ହେଲେ ମଧ୍ୟ ଆସ୍ତିକଠାରେ ମାନସିକ ଶାନ୍ତି ଓ ସନ୍ତୋଷ ଦେଖାଯାଏ । ଏଥିରୁ ସୁଖ ଦୁଃଖର ସମ୍ପର୍କ ବସ୍ତୁ ସହିତ ନୁହେଁ ମନ ସହିତ ରହିଥିବାରୁ ଜଣାଯାଏ । ଯେ ଐଶ୍ୱର୍ଯ୍ୟ ଗର୍ବରେ ପରମେଶ୍ୱରଙ୍କୁ ସମ୍ମାନ ଦିଏ ନାହିଁ, କି ପ୍ରଣାମ କରେ ନାହିଁ, ସେ ଶେଷରେ ନାନା ପ୍ରକାର ଦୁର୍ଗତିର ଶିକାର ହୁଏ ।

ମୈତ୍ରେୟ କହିଲେ—ହେ ବିଦୁର ! ବେନ, ରାଜସିଂହାସନରେ ଅଭିଷିକ୍ତ ହେବା ପରେ ପ୍ରଥମେ ବୁଢ଼ା ମନ୍ତ୍ରୀଙ୍କୁ ଡାକି ପଚାରିଲେ – ତୁମେ ସକାଳେ ଶୀଘ୍ର କାହିଁକି ଆସୁନାହଁ ?

ମନ୍ତ୍ରୀ ଉତ୍ତର ଦେଲେ—ଅଜ୍ଞା ! ମୁଁ ସକାଳରେ ସନ୍ଧ୍ୟା, ପୂଜାପାଠ ସାରିବା ପରେ ଆସୁଛି ।

କାହାର ପୂଜା କରୁଛ ? ଏହାର ଉତ୍ତର ଦେଇ ମନ୍ତ୍ରୀ କହିଲେ—ପ୍ରଭୋ ! ପରମାତ୍ମାଙ୍କର । ।

ବେନ ସଗର୍ବରେ ପଚାରିଲେ —ପରମାତ୍ମା କିଏ ? କେଉଁଠି ? ତୁମେ କଣ ତାକୁ ଦେଖିଛ ?

ମନ୍ତ୍ରୀଙ୍କ ମୁଣ୍ଡ ଘୂରିଗଲା । କଣ ବା ଉତ୍ତର ଦେବେ । ତଥାପି ବିନମ୍ର ହୋଇ କହିଲେ—ମହାରାଜ ! ସମସ୍ତ ବିଶ୍ୱର ସେ ପ୍ରଭୁ । ସେ ସବୁଠାରେ ଅଛନ୍ତି ।

ବେନ ଗର୍ଜି ଉଠି କହିଲେ—ମୁଁ ସମସ୍ତଙ୍କର ସ୍ୱାମୀ । ମୁଁ ସମସ୍ତଙ୍କର ଈଶ୍ୱର । ମୋଠାରୁ ବଳି ବଡ଼ ଈଶ୍ୱର କିଏ ଅଛି କୁହ ।

ମନ୍ତ୍ରୀ କହିଲେ—ହଁ, ଆପଣ ସମସ୍ତଙ୍କର ପ୍ରଭୁ; କିନ୍ତୁ ପରମାତ୍ମା ଆପଣଙ୍କ ଓ ସମସ୍ତଙ୍କର ପ୍ରଭୁ ।

ବେନ ଚିତ୍କାର କରି ପ୍ରହରୀକୁ ଆଦେଶ ଦେଲେ—ନେଇଯାଅ ଏହାକୁ କାରାଗାରରେ ବନ୍ଦୀ କରି ରଖ । ହଁ, ଶୀଘ୍ର ପୁରୋହିତଙ୍କୁ ଖବର ଦିଅ ଆସିବାକୁ ।

ପୁରୋହିତ ଡରି ଡରି ଆସି ଆସନରେ ବସିବାକୁ ଯିବାବେଳେ ବେନ କହିଲେ—ଏଇ କାଠଗଡ଼ାରେ ଠିଆ ହୁଅ । ପୁରୋହିତ କ'ଣ କରିବେ ବୋଲି

ଶାଉବାବେଳେ ବେନ ପଚାରିଲେ - ତୁମେ ପ୍ରତିଦିନ ଏତେ ଘିଅ ପୋଡ଼ି ପକାଉଛ କାହିଁକି ? କାହା ଉଦ୍ଦେଶ୍ୟରେ ଆହୂତି ଦେଉଛ ?

ପୁରୋହିତ ଉତ୍ତର ଦେଲେ—ମହାରାଜ ! ବହୁକାଳରୁ ରାଜଗୃହରେ ହୋମ, ଅଗ୍ନିହୋତ୍ର ଯଜ୍ଞ ହୋଇଆସୁଛି । ଦେବତାମାନଙ୍କୁ ଘୃତ ଆହୂତି ଦିଆଯାଉଛି । ଏହା ମୋର ଦୈନନ୍ଦିନ କାର୍ଯ୍ୟ ।

'କିଏ ତୁମର ଦେବତା' ବେନ ପଚାରିବାରୁ ପୁରୋହିତ କହିଲେ—ମହାରାଜ ! ଇନ୍ଦ୍ର, ବରୁଣ, କୁବେର, ଯମ, ଏକାଦଶରୁଦ୍ର, ଅଷ୍ଟବସୁ, ଅଟଗୃଣ ମରୁତ, ଦ୍ୱାଦଶ ଆଦିତ୍ୟ ଓ ଆହୁରି ଅନ୍ୟାନ୍ୟ ଦେବତା ଅଛନ୍ତି । ସେମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଅଗ୍ନିହୋତ୍ର ଅନୁଷ୍ଠିତ ହୁଏ ।

ବେନ ଗର୍ଜିଉଠି କହିଲେ—ମୋ ବାପାଙ୍କ ସମୟରେ ଯାହାସବୁ ହେଉଥିଲା ତାହା ଆଜିଠାରୁ ବନ୍ଦ କରାଗଲା । ମୋ ବାପା ବୁଦ୍ଧିହୀନ ଓ ବଳହୀନ ଥିବାରୁ ଏସବୁ ଚାଲିଥିଲା । ମୁଁ ସବୁ ଦେବତାଙ୍କ ଗୁରୁ । ତୁମେ ଯେଉଁସବୁ ଦ୍ରବ୍ୟ ହୋମକୁଣ୍ଡରେ ଆହୂତି ଦେଉଛ, ସେସବୁ ମୋତେ ଦେବ । ଦେବତାମାନଙ୍କୁ ଆହୂତି ଦେବା ବନ୍ଦ କର । କଣ କହୁଛ ?

"ମହାରାଜ ! ଆପଣ ଏପରି ଧର୍ମବିରୁଦ୍ଧ କଥା କହୁଛନ୍ତି କପରି ?"

ପୁରୋହିତଙ୍କ କଥା ଶୁଣି ବେନ କହିଲେ—ଆମର ଏ ନୂଆ ଧର୍ମ । ମୁଁ ଦେବତା, ମୁଁ ଈଶ୍ୱର, ମୁଁ ଯଜ୍ଞଫଳର ଭୋକ୍ତା । ତୁମେ ମୋତେ ପୂଜା କର, ମୋତେ ସମସ୍ତ ବଳି ଭୋଜ୍ୟ ସମର୍ପଣ କର । ଏହି ଆଦେଶ ପାଳନ କଲେ ଏଠାରେ ରହିବ । ଯେ ମୋ ଆଦେଶ ଅମାନ୍ୟ କରିବ, ମୁଁ ତାକୁ ଯମରାଜାଙ୍କ ଦରବାରକୁ ପଠାଇଦେବି । କଣ କହୁଛ ? ମୋ' କଥା ମାନିବ ନା ତୁମକୁ ଯମ ଦରବାରକୁ ବଦଳି କରିଦେବି ?

ପୁରୋହିତ କହିଲେ—ମହାରାଜ ! ମୋ ଦ୍ୱାରା ଏସବୁ ହୋଇପାରିବ ନାହିଁ ।

ବେନ ଆଦେଶ ଦେଲେ—ନେଇଯାଅ, ଏହାକୁ ଶୂଳୀରେ ବସାଇ ମୋର ସେବକ ଯମରାଜା ପାଖକୁ ପଠାଇଦିଅ । ସଙ୍ଗେ ସଙ୍ଗେ ପୁରୋହିତଙ୍କୁ ଶୂଳି ଦିଆଗଲା । ଏହା ଦେଖି ସମସ୍ତେ ସ୍ତମ୍ଭୀଭୂତ ହୋଇଗଲେ । ଏହାପରେ ବେନ ଯେଉଁ ମନ୍ତ୍ରୀକୁ ପଚାରିଲେ ସେ କହିଲା—ମହାରାଜ ! ଆପଣ ହେଉଛନ୍ତି ପ୍ରଭୁ

ପରମାତ୍ମା । ଆମେ ଆପଣଙ୍କ ନାମ, ଗୁଣ କୀର୍ତ୍ତନ କରିବୁ ଏପରି କହୁ ନ ଥିବା ରାଜକର୍ମଚାରୀ ଓ ସାଧାରଣ ଲୋକଙ୍କୁ ବେନ ସଙ୍ଗେ ସଙ୍ଗେ ହତ୍ୟା କରୁଥିଲେ । ଯେତେବେଳେ ସମସ୍ତେ ଅନୁକୂଳ ହୋଇଗଲେ ସେତେବେଳେ ବେନ ସମଗ୍ର ସେନାବାହିନୀ ନେଇ ଦିଗ୍‌ବିଜୟ କରିବାକୁ ଗଲେ । ପାଗଳ ସିଂହ ପରି ବେନ ଚାରିଆଡ଼େ ଘୂରି ବୁଲିଲେ ।

ଋଷିମାନଙ୍କ ଯଜ୍ଞସ୍ଥଳକୁ ଯାଇ ବେନ ପଚାରିଲେ—ଇନ୍ଦ୍ରାୟ ସ୍ୱାହାର ମାନେ କଣ ? ଋଷି ଉତ୍ତର ଦେଲେ—ଇନ୍ଦ୍ର ସ୍ୱର୍ଗର ଦେବତା । ଅଗ୍ନି ମାଧ୍ୟମରେ ହବିର୍ଭାଗ ତାଙ୍କ ପାଖକୁ ପଠାଯାଉଛି । ସ୍ୱାହା ଅଗ୍ନିଙ୍କ ପତ୍ନୀ । ତେଣୁ ସ୍ୱାହା କହି ଆମେ ଅଗ୍ନିକୁ ଆହୁତି ଦେଉଛୁ ।

ବେନ କହିଲେ—ମୁଁ ହେଉଛି ତୁମର ସେହି ଇନ୍ଦ୍ର, କୁବେର, ବରୁଣ ଏବଂ ମୁଁ ହେଉଛି ଯଜ୍ଞପୁରୁଷ । ତୁମେ ମୋ' ପାଟିରେ ଆହୁତି ଦିଅ । ମୋର ପେଟ ବଢ଼ାଅ । ଯଜ୍ଞପାତ୍ର ସବୁ ଭାଙ୍ଗି ଦିଅ । ଏହି ଚାଉଳ, ତଣ୍ଡୁଳକୁ ଖିରି କର । ବେଦକୁ ଫୋପାଡ଼ି ଦିଅ । ମୁଁ ସମସ୍ତଙ୍କର ସ୍ୱାମୀ, ପ୍ରଭୁ । ମୋତେ ପୂଜା କର । ଏହା ଶୁଣି ମୁନିଋଷିଗଣ ଡରିଯାଇ 'ହଁ' ବୋଲି ଉତ୍ତର ଦେଲେ ।

ଏହିପରି ଦାନ କରୁଥିବା ଲୋକଙ୍କୁ ବେନ ପଚାରିଲେ—ଏସବୁ ଲଣ୍ଡାମୁଣ୍ଡିଆ, ପେଟକୁ ଡାଗଡା ବ୍ରାହ୍ମଣଙ୍କୁ ନ ଦେଇ ଯାହା ଦେବ ମୋତେ ଦିଅ । ରାଜକୋଷକୁ ସମୃଦ୍ଧ କର, ଅଯଥା ଅପବ୍ୟୟ କରନାହିଁ । ଜପ କରୁଥିବା ଲୋକକୁ ଦେଖି କହିଲେ —କଣ ଗୁଡ଼ାଏ ଟୁପର୍ ଟୁପର୍ ହେଉଛ ? କି ମନ୍ତ୍ର ଜପ କରୁଛ ?

କେହି କହେ ମୁଁ ଏକାକ୍ଷର, ଦୁଇ ଅକ୍ଷର, ଚାରି ଅକ୍ଷର, ଛ'ଅକ୍ଷର , ଅଷ୍ଟାକ୍ଷର, ଦ୍ୱାଦଶାକ୍ଷର ବା ଅଷ୍ଟାଦଶାକ୍ଷର ମନ୍ତ୍ର ଜପ କରୁଛି । କିଏ ଗାୟତ୍ରୀ ମନ୍ତ୍ର କିଏ ପ୍ରଣବ ଜପୁଥିବାର କହେ । ଏ ସବୁ ଶୁଣି ବେନ କହିଲେ—ଏ ମନ୍ତ୍ରଗୁଡ଼ିକ ପୁରୁଣା ହୋଇଗଲାଣି । ବର୍ତ୍ତମାନ ପରିବର୍ତ୍ତନ ଓ ସଂଶୋଧନ କରିବାର ସମୟ ଆସିଛି । ସମସ୍ତେ ଆଜିଠାରୁ 'ବେନ' ଏଇ ଦୁଇଅକ୍ଷର ବିଶିଷ୍ଟ ମନ୍ତ୍ର ଜପ କର । ଯେ ଏ ମନ୍ତ୍ର ଜପ କରିବ ତାକୁ ତତ୍କାଳ ସିଦ୍ଧି ମିଳିବ । ଯେ ଦେବତାଙ୍କ ମନ୍ତ୍ର ଜପିବ ତାକୁ ଖଡ଼୍‌ଗ ସାହାଯ୍ୟରେ ଜବରଦସ୍ତ ସେହି ଦେବତାଙ୍କ ପାଖକୁ ପଠାଇ-ଦିଆଯିବ ।

ଲୋକେ ଭୟରେ ବେନର କଥା ମାନି ଯାଉଥିଲେ । ଯେ ବିରୋଧ କରୁଥିଲା ତାକୁ ସଙ୍ଗେ ସଙ୍ଗେ ହତ୍ୟା କରିଯାଉଥିଲା । ଏହା ଫଳରେ ଯଜ୍ଞ, ଦାନ, ଜପ,

ତପ, ଅଗ୍ନିହୋତ୍ର ଆଦି ବୈଦିକ କର୍ମସବୁ ବନ୍ଦ ହୋଇଗଲା । ବେନର ସେନାବାହିନୀ ଆଗରେ ଥିବା ଏକ ବିରାଟ ହସ୍ତୀ ପୃଷ୍ଠରୁ ଘୋଷଣାକାରୀ ଘୋଷଣା କରୁଥିଲେ —ସାବଧାନ ! ଯଜ୍ଞ କରନାହିଁ, ଦାନ' ଧ୍ୟାନ, ଜପ, ତପ, ପୂଜାପାଠ ବନ୍ଦ କର । ଈଶ୍ୱର ବୋଲି କେହି ନାହାନ୍ତି । ଯେ ଏହାର ବିରୋଧ କରିବ ତା' ମୁଣ୍ଡକୁ ଗଣ୍ଡିରୁ ଅଲଗା କରି ଦିଆଯିବ ।

ଏହି ଉପାୟରେ ବେନ ଯେତେବେଳେ ସମଗ୍ର ପୃଥିବୀରେ ଯାଗ ଯଜ୍ଞସବୁ ବନ୍ଦ କରାଇଦେଲେ, ସେତେବେଳେ ଦେବତାମାନଙ୍କ ଯଜ୍ଞଭାଗ ବନ୍ଦ ହୋଇଗଲା । ଫଳରେ ଚାରିଆଡେ ଅଶାନ୍ତି ଦେଖାଗଲା । ମୁନି ଋଷିଗଣ ସଂଗଠିତ ହେଲେ । ଚାରିଆଡେ ରାଜାଙ୍କ ଆଦେଶ ବିରୁଦ୍ଧରେ ସଭା ହେଲା । ସମସ୍ତେ ମିଶି ଧର୍ମରକ୍ଷିଣୀ ସଭାର ଆୟୋଜନ କଲେ । ଏହି ସଭାରେ ବହୁ ତର୍କବିତର୍କ ଚାଲିଲା । ସଭାର ଅଧ୍ୟକ୍ଷ କହିଲେ - ଭୃଗୁ ଆଦି ମୁନିମାନେ ବେନକୁ ରାଜା କରାଇ ବଡ଼ ଭୁଲ୍ କଲେ । ଆଉ ଜଣେ କହିଲେ—ଏହା ସାଧାରଣ ଭୁଲ୍ ନୁହେଁ, ଏହା ଏକ ବଡ଼ ଭୁଲ୍ । ମୁଁ ନିଜେ ଉପସ୍ଥିତ ଥିଲି । ବେନକୁ ରାଜା ନ କରିବା ପାଇଁ ମନ୍ତ୍ରୀ, ପୁରୋହିତ, ଅମାତ୍ୟ ତଥା ବଡ଼ ବଡ଼ ଅଧିକାରୀମାନେ ମତ ଦେଇଥିଲେ । କିନ୍ତୁ ମୁନିମାନେ ମାନିଲେ ନାହିଁ । ବହୁ ବିରୋଧ ସତ୍ତ୍ୱେ ତାକୁ ରାଜା କରାଗଲା । ଆଜିର ଏ ଅତ୍ୟାଚାର ପାପାଚାର ଓ କଦାଚାର ସବୁ କିଛି ତାହାର ପରିଣତି ।

ଜଣେ ବୟସ୍କ ଋଷି କହିଲେ—ଆପଣମାନେ ଦେଖନ୍ତୁ, ବୁଦ୍ଧିମାନ୍ ଓ ପରୋପକାରୀ ପୁରୁଷ ନିଜ ବୁଦ୍ଧି ବଳରେ କାର୍ଯ୍ୟ କରେ । ତା ଦ୍ୱାରା ଜଗତର କଲ୍ୟାଣ ହୁଏ । କିନ୍ତୁ ପରେ ଯଦି ସେଥିରେ କିଛି ଅସୁବିଧା ହେଲେ ତାହାକୁ ଦୈବ ବୋଲି ଗ୍ରହଣ କରିବା ଉଚିତ । ରାଜା ନ ଥିଲେ ଦେଶରେ ଅରାଜକତା ବ୍ୟାପିଯାଏ । ଅରାଜକ ଦେଶରେ ଧର୍ମ, କର୍ମ, ଯଜ୍ଞାଦି କାର୍ଯ୍ୟ ହୋଇପାରେ ନାହିଁ । ଏଣୁ ବୁଦ୍ଧିମାନ୍ ଲୋକ ଦେଶକୁ ରାଜାଶୂନ୍ୟ ହେବାକୁ ଦିଏ ନାହିଁ ।

ପ୍ରଜାମାନଙ୍କର ଧନ ଜୀବନ ରକ୍ଷା ପାଇଁ ବେନକୁ ରାଜା କରାଯାଇଥିଲା । କିନ୍ତୁ ସେ ରାଜା ଓ ରକ୍ଷକ ହୋଇ ପ୍ରଜାମାନଙ୍କୁ ଦୁଃଖ ଦେଲା । ଯେଉଁଠି ପାପର ମାତ୍ରା ବଢିଯାଏ ସେଠାରେ ଚୋର, ଡକାୟତ, ସ୍ୱାର୍ଥପର ଓ ଅଧର୍ମ କାର୍ଯ୍ୟ ବ୍ୟାପିଯାଏ । ବର୍ତ୍ତମାନ ପ୍ରଜାଗଣ ଉଭୟ ପକ୍ଷରୁ ଉତ୍ପୀଡ଼ିତ ହେଉଛନ୍ତି । ଏକ-ପକ୍ଷରେ ରାଜାଙ୍କ ଅତ୍ୟାଚାର ଓ ଅନ୍ୟ ପକ୍ଷରେ ଚୋର, ଡକାୟତଙ୍କ ଦୌରାତ୍ମ୍ୟ ଅସହ୍ୟ ହୋଇପଡ଼ିଛି । ଦୁଇଟି ସ୍ତ୍ରୀ ଥିବା ପୁରୁଷ ପରି ପ୍ରଜାମାନେ ହିନ୍ତସନ୍ତ ହେଉଛନ୍ତି । ଉଭୟ ଉଭୟଙ୍କ ଆଡ଼କୁ ଟାଣୁଛନ୍ତି । ପେଷଣାରେ ପଡିଥିବା ଗୁହାଳ ଓ

ଜଳନ୍ତା କାଠ ମଝିରେ ପଡ଼ିଥିବା ଜନ୍ତୁ ପରି ପ୍ରଜାମାନେ କଷ୍ଟ ପାଉଛନ୍ତି । ବର୍ତ୍ତମାନ ସେ ବିଷୟରେ ଯୁକ୍ତିତର୍କକୁ ବାଦଦେଇ କିପରି ଦେଶବାସୀଙ୍କୁ ଦୁଃଖମୁକ୍ତ କରିବାକୁ ହେବ ତାହାହିଁ ବିଚାର କର ।

ରାଜା ଶିବ ହେଉ ପଛେ ତାକୁ ଦେବତାତୁଲ୍ୟ ଜ୍ଞାନ କରିବା ଉଚିତ ବୋଲି କେହି ଜଣେ କହିବାରୁ ଅନ୍ୟ ଜଣେ କହିଲେ—ଆପଣ କଣ କହୁଛନ୍ତି ? ଜଣେ ଅନ୍ୟାୟ ଆଚରଣ କରୁଥିବା ରାଜାର ଆଦେଶକୁ ବିନା ବିଚାରରେ ପାଳନ କରିବା ଆବଶ୍ୟକ ବୋଲି କୌଣସି ଧର୍ମଶାସ୍ତ୍ରରେ ଉଲ୍ଲେଖ ନାହିଁ । ସାପକୁ ଦୁଧପିଆଇ ବଢ଼ାଇବା ଅଥବା ଜନପଦ ନଷ୍ଟ ହୋଇଯିବ ବୋଲି ଭାବି ବିଷ ମିଶ୍ରିତ ମିଠେଇ ଖାଇବା ସହିତ ଦୁଷ୍ଟ ରାଜାର ଆଦେଶ ପାଳନକୁ ତୁଳନା କରାଯାଇପାରେ । ଆପଣମାନେ ଜ୍ଞାନୀ ଓ ଅନୁଭବୀ । ତେଣୁ ଧର୍ମଶାସ୍ତ୍ରୀୟ ଉଲ୍ଲେଖର ପ୍ରକୃତ ମର୍ମ ବୁଝିବା ଉଚିତ । ଧର୍ମପୂର୍ବକ ଯେ ପ୍ରଜାପାଳନ କରେ ସେହି ରାଜା ସମସ୍ତଙ୍କଦ୍ୱାରା ସମ୍ମାନିତ ଓ ପୂଜିତ ହୁଏ । ମୃତ୍ୟୁ ପୁତ୍ରୀ ସୁନୀଥାର ପୁତ୍ର ହୋଇଥିବାରୁ ବେନ ସ୍ୱଭାବତଃ ଦୁଷ୍ଟ ପ୍ରକୃତିର । ଆମର ଧାରଣା ଥିଲା ସିଂହାସନରେ ଅଭିଷିକ୍ତ ହେବାପରେ ବେନଙ୍କ ସ୍ୱଭାବର ପରିବର୍ତ୍ତନ ଘଟିବ । କିନ୍ତୁ ଜନ୍ମରୁ ଯାହାର ସ୍ୱଭାବ ଯାହା ତାହାର ପରିବର୍ତ୍ତନ ଅସମ୍ଭବ । ତେଣୁ ତା' ବିରୁଦ୍ଧରେ କୌଣସି କାର୍ଯ୍ୟକ୍ରମ ଗ୍ରହଣ କରାଯିବା ଉଚିତ ।

ଜନୈକ ଋଷି ପ୍ରସ୍ତାବ ଦେଲେ—ଚାଲନ୍ତୁ ସମସ୍ତେ ଯାଇ ତାଙ୍କୁ ବୁଝାଇ-ଦେବା । ଅଯଥା କଥା ବଢ଼େଇବା ବୁଦ୍ଧିମାନ୍‌ର କାମ ନୁହେଁ । ଏହା ଶୁଣି ଅନ୍ୟ ଜଣେ କହିଲେ—ଆଜ୍ଞା, ଆପଣ ନିଜ ପରି ସମସ୍ତଙ୍କୁ ଭାବୁଛନ୍ତି କାହିଁକି ? ମାଡ଼ ଖାଇବା ଲୋକ, କଥାରେ କେବେ ବୁଝିବ ନାହିଁ । ବୁଝେଇ ଶୁଝେଇ କହିବାର କୌଣସି ପ୍ରଭାବ ତା' ଉପରେ ପଡ଼ିବ ନାହିଁ । ମୋ ମତରେ ବେନ ଉପରେ ଆକ୍ରମଣ କରିବା ଉଚିତ ହେବ ।

ଏହାପରେ ଗମ୍ଭୀର ସ୍ୱରରେ ଆଉ ଜଣେ ଋଷି କହିଲେ—ମୋତେ ଆପଣମାନେ କ୍ଷମା କରିବେ । ଆପଣମାନଙ୍କ ଭିତରେ ଅନେକ ଯୁବକ ଅଛନ୍ତି । ତେଣୁ ଉତ୍ତେଜିତ ଭାବେ କେହି କେହି ଆଲୋଚନା କରୁଛନ୍ତି । ରାଜ୍ୟଶାସନର ପରିବର୍ତ୍ତନ ପାଇଁ ତିନୋଟି ଉପାୟ ଅଛି । ଅନ୍ୟ କୌଣସି ବଳଶାଳୀ ରାଜାର ଆକ୍ରମଣରେ ଶାସକ ପରିବର୍ତ୍ତିତ ହୁଏ । ଆଉ ଶାମାଦି ଉପାୟରେ ବା ସଂଗଠିତ ଶକ୍ତି ମାଧ୍ୟମରେ ଶାସକକୁ ପରିବର୍ତ୍ତନ କରିବା ସହଜ ହୁଏ । ପ୍ରଜାମାନଙ୍କର ସହଯୋଗ ବିନା କୌଣସି ଶାସକ ଶାସନ ପରିଚାଳନା କରିପାରିବେ ନାହିଁ । ତୃତୀୟରେ ଦୈବୀଶକ୍ତି ସାହାଯ୍ୟରେ ଶାସକର ପ୍ରଭାବକୁ ନଷ୍ଟ କରାଯାଇପାରେ ।

ଆମ୍ଭେମାନେ କ୍ଷତ୍ରିୟ ହୋଇ ନ ଥିବାରୁ ଆକ୍ରମଣ କରିପାରିବା ନାହିଁ । ଅନ୍ୟ କୌଣସି ରାଜା ନାହାନ୍ତି ଯାହା ସାହାଯ୍ୟରେ ଅମେ ବେନକୁ ସିଂହାସନଚ୍ୟୁତ କରିପାରିବା । ପ୍ରଜାମାନଙ୍କର ମଧ୍ୟ ଏତେ ସାହସ ନାହିଁ, ଯାହାଦ୍ୱାରା ସେମାନେ ରାଜାଙ୍କ ବିରୋଧାଚରଣ କରିବେ । ତେଣୁ ବାକି ରହିଲା ତୃତୀୟ ଉପାୟ । ଆପଣ-ମାନେ କେତେ ବଡ଼ ବଡ଼ ଋଷି, ମହର୍ଷି, ତ୍ୟାଗୀ ଓ ତପସ୍ୱୀ ଅଛନ୍ତି । ଆପଣମାନେ ଋଷ୍ଟ ହେଲେ ତ ବେନ ଭସ୍ମ ହୋଇଯିବ । ଏଣୁ ଅଭିଶାପ ଦେଇ ବେନକୁ ନଷ୍ଟ କରିଦେବା ମୋର ମତ ।

ଏହା ଶୁଣି ଜଣେ ବୃଦ୍ଧ ଋଷି କହିଲେ—ଶାପ କଥା ଛାଡ଼, ଯାହାଦ୍ୱାରା ସିଧାସଳଖ ଶାନ୍ତିପୂର୍ବକ କାର୍ଯ୍ୟ ହୋଇପାରିବ ସେହି କାର୍ଯ୍ୟ କରିବା ଉଚିତ । ଅଭିଶାପ ଦେଲେ ତପସ୍ୟା ନଷ୍ଟ ହୁଏ । ମୁନିମାନଙ୍କ ପକ୍ଷରେ ଏହା ନିନ୍ଦିତ କାର୍ଯ୍ୟ ।

ଏହାପରେ ଆଉ ଜଣେ ଋଷି ଗମ୍ଭୀରଭାବେ ପଚାରିଲେ—ଭଗବନ୍ ! ଆମେ ଆପଣଙ୍କ କଥା ମାନିଲୁ । ଅଭିଶାପ ଦ୍ୱାରା ତପସ୍ୟା ନଷ୍ଟ ହୁଏ, ଏହା ସତ; କିନ୍ତୁ ଏବେ ଆପଣଙ୍କ ତପସ୍ୟାର କି ପ୍ରକାର ବୃଦ୍ଧି ଘଟୁଛି । ଆପଣମାନେ ନିଜ ଇଚ୍ଛାରେ ଜପ, ତପ, ଦାନ, ଧ୍ୟାନ, ଶୁଭକାର୍ଯ୍ୟ କରିପାରୁ ନାହାନ୍ତି । ଗୃହସ୍ଥମାନେ ସଂସ୍କାର ଓ ଧର୍ମ କାର୍ଯ୍ୟ କରିପାରୁ ନାହାନ୍ତି । ଏ ଅବସ୍ଥାରେ ଆମର ତପସ୍ୟା କଣ ନଷ୍ଟ ହେଉନାହିଁ । ବର୍ଣ୍ଣାଶ୍ରମ ଧର୍ମ କଣ ଲୋପ ହେଉନାହିଁ । ଲୋକେ ସ୍ୱେଚ୍ଛାଚାରୀ ଓ ପାଷଣ୍ଡ ପାଲଟି ଯିବେ । ବୈଦିକ ଧର୍ମ କର୍ମ ଲୋପ ହୋଇଯିବ । ତେଣୁ ସର୍ବସ୍ୱ ଯେତେବେଳେ ଯିବାକୁ ବସିଛି, ସେତେବେଳେ ଅର୍ଦ୍ଧେକ ତ୍ୟାଗ କରି ବାକି ଅଧିକ ରକ୍ଷା କରିବା ଉଚିତ । ନିଜର ସାମାନ୍ୟ କ୍ଷତିରେ ଯଦି ବହୁ ଲୋକଙ୍କର ମଙ୍ଗଳ ସାଧିତ ହେବ, ତେବେ ସେ କ୍ଷତିକୁ ବରଣ କରିନେବା ଆବଶ୍ୟକ । ତେଣୁ ମୋ ମତରେ ବେନ ପ୍ରତି ଦୟା କରିବା ନିରର୍ଥକ । ତା' ଉପରେ ଦୈବୀଶକ୍ତି ପ୍ରୟୋଗ କରିବା ଉଚିତ ।

ଏ ପ୍ରକାର ବାଦ ବିବାଦ ଶୁଣିବା ପରେ ସଭାର ଅଧ୍ୟକ୍ଷ କହିଲେ—ମୋ ବିଚାରରେ ପ୍ରଥମେ କେତେଜଣ ବଶିଷ୍ଠ ଓ ବୟସ୍କ ଋଷି ଯାଇ ବେନକୁ ତାର କୁଳପରମ୍ପରା ବିଷୟରେ ବୁଝାନ୍ତୁ । ନମ୍ର ତଥା ନିର୍ଭୀକଭାବେ ତା'ର କର୍ତ୍ତବ୍ୟ ସୂଚାଇ ଦିଆଯାଉ । ଯଦି ସେ ମାନିଯିବ ତେବେ ଭଲ; କିନ୍ତୁ ନ ମାନିଲେ ଦୈବୀଶକ୍ତି ପ୍ରୟୋଗ କରାଯିବ । ସମସ୍ତେ ଏହି ପ୍ରସ୍ତାବକୁ ସ୍ୱୀକୃତି ଦେଇଥିଲେ ।

ମୈତ୍ରେୟ କହିଲେ—ହେ ବିଦୁର ! ସେହି ବୃଦ୍ଧ ମୁନିଙ୍କୁ ସାଙ୍ଗରେ ନେଇ ଦଳେ ଋଷି, ମହାରାଜ ବେନଙ୍କୁ ବୁଝାଇବା ପାଇଁ ରାଜଧାନୀକୁ ଗଲେ ।

## ଛପ୍ପୟ

"ଜବ ନାସ୍ତିକତା କରତ ବେନ ଧୂମେ ଭୁବ ମାହିଁ ।
ତବ ସବ  ଋଷି ମୁନି ବିପ୍ର ଦେବଗଣ ଅତି ଘବରାଈ ॥
କହେଁ ପରସ୍ପର ଦୁଷ୍ଟ ଦେହି ଅତି ସବନି ଯନ୍ତ୍ରଣା ।
ଧର୍ମ କର୍ମ କଯ ହୋହି କରହିଁ ମିଲି ବିପ୍ର ମନ୍ତ୍ରଣା ॥
ସବକୀ ସମ୍ମତି ଜିହ ଭଈ, ପହିଲେ ଚଲି ସମଝାଇଂଗେ ।
ଜୋ ନହିଁ ମାନେ ମଢ ମତି, ତୋ ଫିର ତାହି ବତାଇଂଗେ ॥"



# ବେନଙ୍କଠାରେ ମୁନିମାନଙ୍କ ନିବେଦନ

"ନୃପବର୍ଯ୍ୟ ନିବୋଧୈତଦ୍ୟତେ ବିଜ୍ଞାପୟାମ ଭୋଃ ।
ଆୟୁଃ ଶ୍ରୀବଲକୀର୍ତ୍ତୀନାଂ ତବ ତାତ ବିବର୍ଦ୍ଧନମ୍ ।।
ଧର୍ମ ଆଚରିତଃ ପୁଂସାଂ ବାଙ୍ ମନଃକାୟବୁଦ୍ଧିଭିଃ ।
ଲୋକାନ୍ ଶୋକାନ୍ ତରତ୍ୟଥାନନ୍ତ୍ୟମସଙ୍ଗିନାମ୍ ।।"
(ଭାଗବତ—୪ର୍ଥ ସ୍କନ୍ଧ—୧୪ ଅଧ୍ୟାୟ—ଶ୍ଳୋକ ୧୪, ୧୫)

## ଛପ୍ପୟ

"ଯେଁ। କଷ୍ଟୟ କରି ଗଲେ ଭୂପ ଭୃଂଗ ମୁନି ଉପକାରୀ ।
ବୋଲେ ବଚନ ବିନୀତ ବେନ, ସୁନି ବିନୟ ହମାରୀ ।।
ତେଁଓ କରିବାଯେ ବନ୍ଦ ଯଜ୍ଞ, ବ୍ରତ, ଦାନ, ଧର୍ମ, ବର ।
ତେଁଓ ମେଂଟି ମର୍ଯ୍ୟାଦା ବେଦକୀ ଅତିଶୟ ସୁଖକର ।।
ରାଜନ୍ ! ତୁମରେ ରାଜ୍ୟ ମହଁ, ହୋହିଁ ଯଜ୍ଞ ଜୋ ବିଧି ସହିତ ।
ତୋ ହୋୱେଂ ସବଇ ସୁଖୀ, ପ୍ରଜା ବ୍ୟାଧି ପୀଡ଼ା ରହିତ ।।"

ସର୍ବସାଧାରଣରେ ଯେ ସମ୍ମାନିତ ଓ ପୂଜିତ ହୁଅନ୍ତି, ତାଙ୍କୁ କୌଣସି ଅଭିମାନୀ ଲୋକ ସହିତ ସାକ୍ଷାତ କରିବା ପାଇଁ ଯିବାକୁ ପଡ଼ିଲେ, ସେ ମରଣ ସମାନ କଷ୍ଟ ଭୋଗ କରନ୍ତି । ଗର୍ବୀ ଲୋକ ଆଗରେ ସେ ଅପମାନବୋଧ କରନ୍ତି । ମାନନୀୟ, ପୂଜ୍ୟ ବ୍ୟକ୍ତିଙ୍କୁ ଦେଖିବା ମାତ୍ରେ ଅହଙ୍କାରୀର ଅହଙ୍କାର ଅତ୍ୟଧିକ ବଢିଯାଏ । ତାଚ୍ଛଲ୍ୟଭାବେ ସେ ସମ୍ମାନନୀୟ ପୁରୁଷଙ୍କ ସହିତ କଥାବାର୍ତ୍ତା କରେ । ଭଗବାନ ଏପରି ଅହଙ୍କାରୀଙ୍କୁ କେବେହେଲେ କ୍ଷମା ଦିଅନ୍ତି ନାହିଁ; କିନ୍ତୁ ଏ ସଂସାରରେ

ଅବା ଯାଏ ମଣିଷ ଭଲ ମନ୍ଦ ନିଜର ପ୍ରାରବ୍ଧ କର୍ମ ଅନୁସାରେ ଭୋଗ କରିଥାଏ । ସାଧୁ, ସଜ୍ଜନମାନେ ଏ ସବୁ ସମ୍ବନ୍ଧ ପରର ଉପକାର ପାଇଁ । ଜଗତର କଲ୍ୟାଣ ସାଧନ ପାଇଁ ସେମାନେ ହସି ହସି ସମସ୍ତ ଦୁଃଖ, କଷ୍ଟ, ନିନ୍ଦା, ଅପମାନକୁ ସହିଯାନ୍ତି ।

ମୈତ୍ରେୟ ମୁନି କହିଲେ—ହେ ବିଦୁର ! ସବଂସମ୍ମତିକ୍ରମେ ବୟସ୍କ ମୁନିମାନେ ଏକାଠି ମିଶି ରାଜସଭାରେ ପହଞ୍ଚିଲେ । ସେତେବେଳେ ବେନ ରାଜସିଂହାସନରେ ବସିଥିଲେ ଏବଂ ରାଜ୍ୟରେ କିଏ ଯଜ୍ଞ କରୁଛି କି ନାହିଁ, ଦାନ, ଧ୍ୟାନ, ଜପ, ତପ ବନ୍ଦ ହୋଇଛି କି ଚାଲୁଛି ଏସବୁ ବିଷୟରେ ମନ୍ତ୍ରୀମାନଙ୍କ ସହିତ ଆଲୋଚନା କରୁଥିଲେ ।

ମନ୍ତ୍ରୀମାନେ କହିଲେ—ମହାରାଜ ! ଆପଣଙ୍କ ପ୍ରବଳ ପରାକ୍ରମ ପାଖରେ ସମସ୍ତେ ହାର ମାନି ଯାଇଥିଲେ ମଧ୍ୟ କେତେକ ମୁନି ଋଷି ଏବେ ବି···

ବେନ କଥା ମଝିରେ କହିବାକୁ ଲାଗିଲେ—ହଁ, ମୁଁ ଜାଣେ, ସେହି ଜଟାଧାରୀ, ଦାଢିଆ ଋଷିପୁଡ଼ାକ ବଡ଼ ବଦମାସ୍ । ସେମାନଙ୍କ ନିଶ ଦାଢ଼ିକୁ କାଟି ପକାଅ । ସମସ୍ତଙ୍କୁ ଲଣ୍ଡା କରିଦିଅ । ସେମାନଙ୍କ ଯଜ୍ଞ ଉପକରଣ ସବୁ ନିଆଁରେ ପୋଡ଼ି ପକାଅ । ରାଜାଦେଶ ପ୍ରଚାର କରିଦିଅ, କେହି ବିନା ଅନୁମତିରେ ଘୃତ, ଅନ୍ନାଦି ଅଗ୍ନିରେ ଆହୁତି ଦେଇପାରିବେ ନାହିଁ । ସମସ୍ତଙ୍କର ଖାଦ୍ୟପେୟ ନିୟନ୍ତ୍ରଣ କରିଦିଅ, ଯେପରି କେହି, ବ୍ରାହ୍ମଣ ଭୋଜନ, ଶ୍ରାଦ୍ଧ, ଉତ୍ସବ, ଅତିଥିସେବା କରିପାରିବେ ନାହିଁ । ଅନ୍ନ, ବସ୍ତ୍ର, ଘିଅ, ଗୁଡ଼ ଲୋକର ଆବଶ୍ୟକତାଠାରୁ କମ୍ କରି ଯୋଗାଇ ଦିଅ । ସବୁ ଗୋଳମାଳର କାରଣ ହେଉଛନ୍ତି ଏହି ଅଳସୁଆ ବାବାଜୀଗୁଡାକ । ଉଚ୍ଚ, ନୀଚ, ଭେଦଭାବନା ସେଇମାନେ ସୃଷ୍ଟି କରିଛନ୍ତି । ସେମାନେ ପିଲାର ଜନ୍ମଠାରୁ ମରଣଯାଏ ନାନା ନୀତିନିୟମ ଲେଖିଛନ୍ତି । ନିଜ ପେଟ ବଢ଼େଇବା ପାଇଁ ସେମାନେ ଏ ପ୍ରକାର ବ୍ୟବସ୍ଥା କରିଛନ୍ତି । ପିଲାଟିଏ ଜନ୍ମ ହେଲା ତ ବ୍ରାହ୍ମଣକୁ ଦାନ ଦିଅ, ନାନ୍ଦୀମୁଖୀ ଶ୍ରାଦ୍ଧ କର । ବାଳ ବଢ଼ିଲେ କାଟିବା କଥା । ତାକୁ ଚୂଡ଼ାକର୍ମ ନାଁ ଦେଇ ପିଲାର ବାପ ମା'ଙ୍କ ଠାରୁ ଚାନ୍ଦା ଆଦାୟ ଚାଲିଛି । ଆଜି କର୍ଣ୍ଣବେଧ, କାଲି ବିଦ୍ୟାରମ୍ଭ, ପୁଣି ଉପନୟନ, ସମାବର୍ତ୍ତନ, ବିବାହ ଲାଗିଛି । ଏସବୁ କାର୍ଯ୍ୟ ପାଇଁ ଲୋକ ବର୍ଷ ବର୍ଷ ଧରି ଯୋଗାଡ଼ ଯନ୍ତ୍ରରେ ବ୍ୟସ୍ତ ହୋଇ ପଡ଼ୁଛି । ଯେତେବେଳେ ଦେଖିଲେ ପୁରୋହିତ ଆଖିରେ ଚାଉଳ, ଧୂପ, ଦୀପ, ନୈବେଦ୍ୟ, କଦଳୀ, ଗୁଆ ଓ ଦକ୍ଷିଣା ଥୋଇ ପୂଜା ପ୍ରସ୍ତୁତରେ ଲାଗିଲେ । ଯାହା କିଛି ହେଲେ ପୂଜାକର । ଛିଙ୍କିଲେ ପୂଜା ତ କଡ଼ ଲେଉଟେଇ ଶୋଇଲେ ପୂଜା । ଏସବୁ ପଇସା ନେବାର ଫିକର ।

କର୍ମକାଣ୍ଡୀ ବ୍ରାହ୍ମଣମାନଙ୍କ ଦୌରାତ୍ମ୍ୟ ଅସହ୍ୟ । ଏ ସଂସାର ଯେପରି ପୁରୋହିତ ବିନା ଅଚଳ ହୋଇ ପଡ଼ିବ ସେଇ ଧନ୍ଦା ଲାଗିଛି । ଘରେ ପିଲା ଭୋକରେ ଆଉଟୁ ପାଉଟୁ ହେଉଥିବେ, ଭାତ ମୁଠାଏ ପାଇଁ ଚିତ୍କାର କରୁଥିବେ, କିନ୍ତୁ ପୁରୋହିତଙ୍କର ଗରମାଗରମ ଖାନା ଦରକାର । ମିଠା ନ ହେଲେ ବ୍ରାହ୍ମଣ ସନ୍ତୁଷ୍ଟ ହେବେ ନାହିଁ । କାଳକାରୁ ଘିଅ ନ ବୋହିଲେ ପିତୃପୁରୁଷଙ୍କ ତୃପ୍ତି ହେବ ନାହିଁ । ଖୁଆଇ ପିଆଇ ଦକ୍ଷିଣା ନ ଦେଲେ ସବୁ ନିରର୍ଥକ । ସାଧା ସିଧା ଲୋକଙ୍କୁ ଠକିବା ପାଇଁ ନାନା ଯୁକ୍ତି, ନାନା ପ୍ରକାର ଶ୍ଳୋକ ପଢ଼ନ୍ତି । ଏହି ବ୍ରାହ୍ମଣମାନଙ୍କ ପେଟ ସମୁଦ୍ରର ବାଡ଼ବାଗ୍ନି ପରି, ଯେତେ ଯାହା ଦେଲେ ବି ଯେ ପେଟ ପୂରେ ନାହିଁ ।

ଘରେ ପଛେ ମଣିଷ ମରି ଶୋଇଥିବ, କିନ୍ତୁ ବ୍ରାହ୍ମଣମାନଙ୍କ ଭୋଜନ ବ୍ୟବସ୍ଥା କରାଯିବ । ଶ୍ରାଦ୍ଧ ନ କରିବାଯାଏ ଶବ ପୋଡ଼ାଯାଇ ପାରିବ ନାହିଁ । ସାରାବର୍ଷ ଆଜି ଦିବସା ଶ୍ରାଦ୍ଧ ତ କାଲି ମାସିକ ଶ୍ରାଦ୍ଧ, ତ୍ରୈମାସିକ, ଷାଣ୍ମାସିକ ବାର୍ଷିକ ଶ୍ରାଦ୍ଧ ଏପରି ନାନାପ୍ରକାର ଶ୍ରାଦ୍ଧ ଚାଲିବ । କେତେବେଳେ ଦେବତାଙ୍କ ନାମରେ, କେବେ ପୁଣି ପିତୃଗଣଙ୍କ ନାମରେ ପୁଣି କେତେବେଳେ ଯକ୍ଷ, ଗନ୍ଧର୍ବ ବା ସେହିପରି ଅନ୍ୟ କାହା ନାମରେ ଏ ବ୍ରାହ୍ମଣମାନେ ଠିକା ନେଇଥିବାର ଦେଖା-ଯାଏ । ସେମାନଙ୍କ ପେଟରେ ପଡ଼ିଲା ତ ସବୁ କିଛି ସିଦ୍ଧ ହେଲା । ମୁଁ ଏହି ବ୍ରାହ୍ମଣମାନଙ୍କୁ ଚଟି ନେବା ଚାକର ରୂପେ ନିଯୁକ୍ତ କରିବି । ଯଦି ବ୍ରାହ୍ମଣଙ୍କ ପେଟ ପୂର୍ତ୍ତି ହେଲେ ସବୁ ହେବ ତେବେ ଏଇ ବଡ଼ ପେଟୁଆଙ୍କ ପେଟରେ ଚଟ ସବୁ ପକାଇ ଦେବି । ଯେ ଚଟି ପାଇବା କଥା ସେ ପାଇଯିବ । ଯଦି ପାଇବା ଲୋକ ଚଟି ନ ପାଇବ ତେବେ ଏମାନଙ୍କ ପେଟକୁ ଚିରଦେବି ।

ବେନ ଏପରି କହୁଥିବା ବେଳେ ଋଷିମାନେ ସଭାରେ ପହଞ୍ଚିଲେ । ଦୂରରେ ଦଳେ ଦାଢିଆ, ମୋଟାସୋଟା ଋଷି, ବ୍ରାହ୍ମଣ ସଭାକୁ ଆସିବାର ବେନ ଲକ୍ଷ୍ୟ କରୁଥିଲେ । ସେମାନଙ୍କ ଅଙ୍ଗୁଳିରେ କୁଶ ଥିଲା । ହାତରେ କୁଶ ମୁଠାକୁ ବ୍ରହ୍ମଦଣ୍ଡ ରୂପେ ଧରିଥିଲେ ଏବଂ ଅତି ସନ୍ତର୍ପଣରେ ସେମାନେ ସିଂହାସନ ପାଖକୁ ଆସିଲେ । ପାଖରେ ସେମାନଙ୍କୁ ଦେଖିବାମାତ୍ରେ ରାଗରେ ବେନଙ୍କ ବ୍ରହ୍ମ ଜଳିଗଲା । ସେ ଭାବିଲେ—ଏଇ ଧୂର୍ତ୍ତମାନେ ମୋ ବିରୁଦ୍ଧରେ ଚକ୍ରାନ୍ତ କରୁଛନ୍ତି । ଏମାନେ ମୋ' ଆଦେଶ ବିରୁଦ୍ଧରେ ସଂଗଠିତ ହୋଇ ସଭା କରୁଛନ୍ତି । ଆଜି ଦେଖିବି ଏମାନଙ୍କୁ । ଆଖି ଲାଲ୍ ଲାଲ୍ କରି ବେନ ସିଂହାସନରେ ବସି ରହିଲେ । ଋଷିମାନଙ୍କୁ ସ୍ୱାଗତ କଲେନାହିଁ କି ବସିବା ପାଇଁ କହିଲେ ନାହିଁ ।

ଋଷିମାନେ ନିରୁପାୟ ଭାବେ ଠିଆ ହୋଇରହିଲେ । ଏ ପ୍ରକାର ବ୍ୟବହାରରେ ଯୁବକ ଋଷିମାନେ ଖୁବ୍ ରାଗିଗଲେ । କିନ୍ତୁ ବୃଦ୍ଧ ଋଷିମାନେ

ଗମ୍ଭୀରଭାବେ ଠିଆ ହୋଇ ଅବସ୍ଥା ଲକ୍ଷ୍ୟ କରୁଥିଲେ । ସହସା କିଛି କରିବା ଉଚିତ ନୁହେଁ । ତେଣୁ ଅନୁଚିତ ବ୍ୟବହାର ହୋଇଥିଲେ ମଧ୍ୟ ବୟସ୍କ ମୁନିମାନେ ଉତ୍ତେଜିତ ହେଲେନାହିଁ । ବେନ ଉପରେ ପ୍ରଥମରୁ ସେମାନଙ୍କର ରାଗ ଥିଲା, ତାଙ୍କର ଏପ୍ରକାର ଅଶିଷ୍ଟତାରେ ତାହା ଆହୁରି ବଢ଼ିଗଲା । ତଥାପି ସେମାନେ ନିଜର ମନୋଭାବକୁ ଗୁପ୍ତ ରଖିଲେ । ଭିତରେ କ୍ରୋଧକୁ ଲୁଚାଇ ଉପରେ ହସିହସି ସେମାନେ ବିନୀତଭାବେ କହିଲେ—ହେ ରାଜରାଜେଶ୍ୱର ! ଆମେ ଆପଣଙ୍କ ପାଖରେ କିଛି ନିବେଦନ କରିବା ପାଇଁ ଆସିଛୁ ।

ହଉ କୁହ କଣ କହୁଛ—ବେନ କହିଲା ।

ଜଣେ ବୃଦ୍ଧ ମୁନି କହିଲେ—ରାଜନ ! ଆମେ ଯାହା କହୁଛୁ ଦୟାକରି ଆପଣ ମନ ଦେଇ ଶୁଣନ୍ତୁ । ଆପଣଙ୍କ ମଙ୍ଗଳ କଥା ହିଁ ଆମେ କହିବୁ । ଆମ କଥା ମାନିଲେ ଆପଣଙ୍କର ଆୟୁ, ବଳ, ଯଶ ଓ ଗୌରବ ବଢ଼ିବ ।

ବେନ କଠୋର ସ୍ୱରରେ ଆଦେଶ ଦେଲେ—ଏତେ ବଡ଼ ଭୂମିକାର ଆବଶ୍ୟକତା ନାହିଁ, ନିଜର ପ୍ରୟୋଜନ ସଂକ୍ଷେପରେ ପ୍ରକାଶ କର ।

ବୃଦ୍ଧ ମୁନି ନିର୍ଭୀକ ଭାବେ କହିଲେ—ରାଜନ୍ ! ଆପଣ ଏକ ପବିତ୍ର ବଂଶରେ ଜନ୍ମ ହୋଇଛନ୍ତି । ଆପଣଙ୍କ ପୂର୍ବଜ ଉତ୍ତାନପାଦ, ଧ୍ରୁବ, ଉତ୍କଳ ଓ ଆପଣଙ୍କ ପିତା ମହାରାଜ ଅଙ୍ଗ ଜଣେ ବଡ଼ ଧର୍ମାତ୍ମା ଥିଲେ । ସଂସାରରେ ଧର୍ମ ବ୍ୟତୀତ ସବୁ କିଛି ଅସାର । ଆପଣଙ୍କ ପିତୃପିତାମହଗଣ ଯେଉଁ ଧର୍ମ ପାଳନ କରି ଆସିଥିଲେ ତାହା ଲୋପ ହେବା ଉଚିତ ନୁହେଁ । ଆପଣ କୁଳକ୍ରମାଗତ ସଦାଚାରକୁ ସର୍ବଦା ପାଳନ କରିବା ଆବଶ୍ୟକ । ମଣିଷ କାୟମନୋବାକ୍ୟରେ ଶ୍ରୀକୃଷ୍ଣଙ୍କ ପ୍ରୀତିସମ୍ପାଦନ ପାଇଁ ନିଷ୍କାମଭାବେ ଯେଉଁ ଧର୍ମକାର୍ଯ୍ୟ କରେ ତାହାଦ୍ୱାରା ସେ ମୁକ୍ତିଲାଭ କରେ । ଯେଉଁ ଧର୍ମକାର୍ଯ୍ୟଦ୍ୱାରା ଆଜି ପର୍ଯ୍ୟନ୍ତ ପ୍ରଜାମାନଙ୍କ କଲ୍ୟାଣ ସାଧିତ ହୋଇଛି ଏବଂ ଭବିଷ୍ୟତରେ ମଧ୍ୟ ହେବ ସେହି ଧର୍ମ ଆପଣଙ୍କ ଦ୍ୱାରା ନଷ୍ଟହେବା ଉଚିତ ନୁହେଁ । ଆପଣ ପୂର୍ବଜ ମହାପୁରୁଷମାନଙ୍କ ପଦାଙ୍କ ଅନୁସରଣ କରନ୍ତୁ । ପ୍ରାଚୀନ ପରମ୍ପରା ଓ ପୁଣ୍ୟ ମାର୍ଗରୁ ଆପଣଙ୍କର ସ୍ଖଳନ ନ ହେଉ । ଯେ ମହାଜନମାନଙ୍କ ପଥରୁ ବିଚ୍ୟୁତ ହୁଏ ସେ ନିଶ୍ଚିତଭାବେ ଦୁଃଖଭୋଗ କରେ । ତେଣୁ ଆପଣ ସନାତନ ରାଜଧର୍ମର ଅନୁସରଣ କରନ୍ତୁ ।

'ସନାତନ ରାଜଧର୍ମ କ'ଣ ବୋଲି ବେନ ପଚାରିବାରୁ ବୃଦ୍ଧ କହିଲେ—ରାଜନ୍ ! ସନାତନ ରାଜଧର୍ମ କୌଣସି ଏକ ପଶୁ ବା ପକ୍ଷୀ ନୁହେଁ । ତାହା

ସର୍ବବ୍ୟାପୀ ଦେବତା । ଦୁଷ୍ଟମନ୍ତ୍ରୀ ଓ ରାଜକର୍ମଚାରୀ, ଧର୍ମହୀନ ଅଧିକାରୀ ଓ ଚୋର-ଖଣ୍ଟଙ୍କ କବଳରୁ ପ୍ରଜାମାନଙ୍କୁ ରକ୍ଷା କରିବା, ନ୍ୟାୟତଃ ଷଷ୍ଠାଂଶ କର ନେବା ଓ ତାହାକୁ ପୁଣ୍ୟକାର୍ଯ୍ୟରେ ବିନିଯୋଗ କରିବା ହେଉଛି ସନାତନ ରାଜଧର୍ମ । ଏହାକୁ ଯଥାଯଥ ଭାବେ ପାଳନ କରୁଥିବା ରାଜା ଇହଲୋକ ଓ ପରଲୋକରେ ସୁଖୀ ହୁଅନ୍ତି । ଯେଉଁ ରାଜ୍ୟରେ ବର୍ଣ୍ଣାଶ୍ରମ ଧର୍ମ ପାଳିତ ହୁଏ, ଯାଗଯଜ୍ଞାଦି କାର୍ଯ୍ୟ କରି-ଯାଏ ସେ ଦେଶର ରାଜାଙ୍କ ଉପରେ ଭଗବାନ୍ ପ୍ରସନ୍ନ ହୁଅନ୍ତି ।

'ସେ ଭଗବାନ୍ କିଏ ?'—ବେନ ପ୍ରଶ୍ନ କଲେ ।

ମୁନି କହିଲେ—ସେ ସର୍ବାତ୍ମା, ସେ ସର୍ବତ୍ର ବିଦ୍ୟମାନ ଓ ସମସ୍ତଙ୍କର ସେ ପ୍ରଭୁ ପରମେଶ୍ୱର ।

ବେନ ଗର୍ଜନ କରି ପଚାରିଲେ— ମୁଁ କଣ ଏ ସମଗ୍ର ଜଗତର ଏକମାତ୍ର ଜଗଦୀଶ୍ୱର ନୁହେଁ ?

ବୃଦ୍ଧ ଋଷି ଉତ୍ତର ଦେଲେ—ମହାରାଜ ! ଆପଣ ନିଶ୍ଚିତଭାବେ ଜଗଦୀଶ୍ୱର । କିନ୍ତୁ ଭଗବାନ୍ ତ ଜଗଦୀଶ୍ୱରମାନଙ୍କର ପ୍ରଭୁ । ସେ ପ୍ରସନ୍ନ ହେଲେ ମଣିଷ ପକ୍ଷରେ କୌଣସି ବସ୍ତୁ ଦୁର୍ଲଭ ହୁଏ ନାହିଁ ।

ତୁମେ ସବୁ ଏ ପର୍ଯ୍ୟନ୍ତ ମୋର ପ୍ରସନ୍ନତା ଓ ଅପ୍ରସନ୍ନତାର ମହତ୍ତ୍ୱ ବୁଝି-ପାରି ନାହଁ ବୋଲି ଭାବୁଛି—ବେନ ପଚାରିଲେ ।

ମୁନି କହିଲେ—ହଁ ରାଜନ ! ଆମେ ଜାଣୁ । ଆପଣ ଯାହା ଇଚ୍ଛା ତାହା କରିପାରିବେ । କିନ୍ତୁ ଯାହାଙ୍କ ପାଦତଳେ ଇନ୍ଦ୍ରାଦି ଦେବତାମାନଙ୍କ ମସ୍ତକ ଲୁଣ୍ଠିତ ହେଉଛି, ହାତଯୋଡ଼ି ଲୋକପାଳମାନେ ଯାହାର ସ୍ତୁତିଗାନ କରୁଛନ୍ତି ସେହି ଶ୍ରୀହରିଙ୍କ ପାଖରେ ଆପଣ ଅତି ନଗଣ୍ୟ । ବେଦସ୍ୱରୂପ ଶ୍ରୀହରି ଦ୍ରବ୍ୟମୟ ତଥା ତପୋମୟ । ସମସ୍ତ ଲୋକ ଓ ଲୋକପାଳ ତାଙ୍କର ଅଂଶ । ସେ ଯଜ୍ଞସ୍ୱରୂପ । ନାନାପ୍ରକାର ଯଜ୍ଞରେ ତାଙ୍କୁ ହିଁ ଉପାସନା କରାଯାଏ । ତାଙ୍କ ସହିତ ଆପଣଙ୍କର ତୁଳନା ଅସମ୍ଭବ । ତାଙ୍କ ଆଦେଶର ବିରୋଧାଚରଣ ମଧ୍ୟ ଅସମ୍ଭବ । ଆପଣଙ୍କ ରାଜ୍ୟରେ ବଡ଼ ବଡ଼ ଯଜ୍ଞ ଅନୁଷ୍ଠିତ ହେଉ । ବ୍ରାହ୍ମଣମାନେ ସମ୍ମାନିତ ହୁଅନ୍ତୁ । ଶ୍ରୀହରିଙ୍କ ଉଦ୍ଦେଶ୍ୟରେ ଉତ୍ସବମାନ ପାଳିତ ହେଉ । ଦେବଗଣଙ୍କୁ ପୂଜା କରାଯାଉ ଏବଂ ଦାନ, ଧର୍ମ, ପୁଣ୍ୟକର୍ମମାନ ଅନୁଷ୍ଠିତ ହେଉ । ଏସବୁ କାର୍ଯ୍ୟ କଲେ ସେମାନେ ସନ୍ତୁଷ୍ଟ ହୋଇ ଆପଣଙ୍କୁ ବର ଦେବେ । କିନ୍ତୁ ସେମାନେ ଅପମାନିତ ଓ ତିରସ୍କୃତ ହେଲେ ସବୁ କିଛି ନଷ୍ଟ ଭ୍ରଷ୍ଟ ହୋଇଯିବ । ଆପଣଙ୍କର ଏହି ରାଜ୍ୟ ଚକ୍ଷୁ ସବୁଦିନ ପାଇଁ ଏହିପରି ରହିଯିବ ।

ମୈତ୍ରେୟ ମୁନି କହିଲେ—ହେ ବିଦୁର ! ମୁନିମାନଙ୍କର ଦୃଢ଼ ଓ ସାହସପୂର୍ଣ୍ଣ କଥା ଶୁଣି ବେନ କ୍ରୋଧରେ ଅସ୍ଥିର ହୋଇ ପଡ଼ିଲା, ତାର ରୋମ-ସବୁ ଟାଙ୍କୁର ଉଠିଲା । ସେ ଅତ୍ୟଧିକ କ୍ରୋଧରେ ମୁନିମାନଙ୍କ ଆଡ଼କୁ କିଛି କାଳ କେବଳ ଚାହିଁ ରହିଲା, ମାତ୍ର କିଛି କହିଲା ନାହିଁ ।

## ଛପ୍ପୟ

"ହେ ମନୁ କୋ ଅତି ବିମଲ ବଂଶ ଧ୍ରୁବ ଜନମେ ଜାମେଁ ।
ଭୟେ ଭୂପ ଉତ୍ତାନପାଦ ହରିପଦ ରତ ତାମେଁ ॥
ବର୍ଣ୍ଣାଶ୍ରମ ଶୁଭ ଧର୍ମ କରୋ ପାଲନ ତୁମ ତାକୁଁ ।
ଉଜ୍ଜ୍ୱଲ କୁଲ କୀ କୀର୍ତ୍ତି କରୋ କଳୁଷିତ ଟୌଂ କାକୁଁ
ବେନ କୋପ କୀ ଅଗ୍ନି ମହିଁ, ମୁନିଗଣ-ବଚ ଘୃତ ସମ ଭୟେ ।
ବୋଲ୍ୟୋ କରିକେଁ କୋପ ଅତି, ୟେ ଆୟେ ମମ ଗୁରୁ ନୟେ ।"



# ବେନଙ୍କ ଅକାଳ ମୃତ୍ୟୁ

"ବାଳିଶା ବତ ଯୂୟଂ ବା ଅଧର୍ମେ ଧର୍ମମାନିନଃ ।
ଯେ ବୃତ୍ତିଦଂ ପତିଂ ହିତ୍ୱା ଜାରଂ ପତିମୁପାସତେ ॥
ଅବଜାନନ୍ତ୍ୟମୀ ମୂଢ଼ା ନୃପରୂପିଣମୀଶ୍ୱରମ୍
ନାନୁବିନ୍ଦନ୍ତି ତେ ଭଦ୍ରମିହ ଲୋକେ ପରତ୍ର ଚ ॥"

(ଭାଗବତ—୪ର୍ଥ ସ୍କନ୍ଧ-୧୪ ଅଧ୍ୟାୟ-ଶ୍ଳୋକ ୨୩,୨୪)

## ଛପ୍‌ପୟ

"ଫିର ଯ୍ୟୋଂ ବୋଲ୍ୟୋ ବେନ ମୂରଖ ହୋ ତୁମ ସବ ।
ମୈଂ ଈ ସବ କୋ ଈଶ ମୋହି ପୂଜୋ ତୁମ ମିଲି ଅବ ॥
ମୋହି ଛୋଡ଼ କେଁ ଔର ଈଶ କୋଈ ମତ ଜାନୋ ।
ମୂରଖତା କୂଁ ତଜୋ, ମହେଶ୍ୱର ମୋକୂଁ ମାନୋ ॥
ଜୋ ଅବ ବକ ବକ କରୀ ତୋ, ଲୁଂଗୋ ଜୀଭ ନିକାଲକେଁ ।
ଜୀବିତ ଚମ ଉତାରିକେଁ, ଭୂସ ହୁଁଗୋ ଭରବାଇକେଂ ॥"

ମୂର୍ଖ ଅହଙ୍କାରୀକୁ ଉପଦେଶ ଦେବା ନିରର୍ଥକ । ଯେ କିଛି ଜାଣେ ନାହିଁ, ସେ ସରଳ ଓ ନିର୍ବୋଧ, ତାକୁ ବୁଝାଇଦେଇ ହେବ । ଯାହାର ବୁଦ୍ଧି ଓ ବିବେକ ଅଛି; କିନ୍ତୁ କେତେକ ବିଷୟରେ ସନ୍ଦେହ ଅଛି, ସେ ବୁଝି ପାରୁନାହିଁ, ତାକୁ ଶାସ୍ତ୍ରର ଉଦାହରଣ ତଥା ସନ୍ଥ, ମହାପୁରୁଷଙ୍କ ଜୀବନ ସମ୍ବନ୍ଧୀୟ କଥା କହି ବୁଝାଇ ହେବ; କିନ୍ତୁ ଯେ ପ୍ରକୃତରେ ମୂର୍ଖ ମାତ୍ର ନିଜକୁ ପଣ୍ଡିତ ବୋଲି ମନେକରେ, ସେପରି ଅଭିମାନୀ ତଥା ଅହଙ୍କାରୀକୁ କେହି ବୁଝାଇ ବାଟକୁ ଆଣି ପାରିବେ ନାହିଁ । ଅହଙ୍କାରୀ ଅନ୍ୟକୁ ଅତି ତୁଚ୍ଛ ମନେକରେ । ଯେଉଁମାନେ ତା'

କଥାରେ ଖାଲି ହଁ ମାରନ୍ତି, ସେମାନେ ଚାଲିଯାନ୍ତି; କିନ୍ତୁ ଯେ ବିରୋଧ କରେ ସେ ତା'ର ପ୍ରଧାନ ଶତ୍ରୁ ହୁଏ । ସେହି ଶତ୍ରୁକୁ ବିନାଶ କରିବା ପାଇଁ ଅହଙ୍କାରୀ ସବୁବେଳେ ତତ୍ପର ହୁଏ । ତେଣୁ ଏପରି ପଣ୍ଡିତମନ୍ୟ ମୂର୍ଖ ବ୍ୟକ୍ତିକୁ ତା'ଠାରୁ ବଳୁଆ ଲୋକ ଜବତ କରିପାରିବ ଯିନା ଅନ୍ୟମାନେ ପାରିବେ ନାହିଁ ।

ମୈତ୍ରେୟ ମୁନି କହିଲେ—ହେ ବିଦୁର ! ମୁନି ଋଷିଗଣ ଅତି ନମ୍ର ଭାବରେ ଯେତେବେଳେ ବେନଙ୍କୁ ତାର କର୍ତ୍ତବ୍ୟ ବିଷୟରେ ବୁଝାଇଲେ ସେତେବେଳେ ସେ କ୍ରୋଧରେ ଅସ୍ଥିର ହୋଇଉଠିଲା । ଲାଲ୍ ଆଖି ଦେଖାଇ ଗର୍ଜନ କରି ବେନ କହିଲା—ତୁମେ ସମସ୍ତେ ମୂର୍ଖ । ମୋ ଆଗରେ ଏପରି ଧୃଷ୍ଟତା ଦେଖାଇବା ଉଚିତ ନୁହେଁ । ତୁମମାନଙ୍କର ତ ସାହସ କମ୍ ନୁହେଁ ? ଆଉ ତୁମର ଧନ୍ଦା ଚାଲିବ ନାହିଁ । ମୋର ପୂର୍ବଜମାନେ ମୂର୍ଖ ଥିବାରୁ ତୁମ ପରି ବେକାରମାନଙ୍କୁ ମୁଣ୍ଡରେ ବସାଇଥିଲେ । ତୁମକୁ ସେମାନେ ସର୍ବେସର୍ବା ବୋଲି ଭାବୁଥିଲେ । ତୁମେମାନେ ମଧ୍ୟ ସେମାନଙ୍କୁ କଣ୍ଢେଇ ପରି ନଚାଉଥିଲ । ଯେତେବେଳେ କହିବ ସେତେବେଳେ ପାଣି ଟିକିଏ ପିଇବେ ଏବଂ ଶୁଭମୁହୂର୍ତ୍ତ କହିବା ପରେ ଅନୁକୂଳ କରିବେ । ମୋ ପାଖରେ ତୁମ ଚାଲିକି ଆଉ ଚାଲିବ ନାହିଁ । ଆଉ ସେ ଅନ୍ଧାର ଯୁଗ ନାହିଁ । ଏବେ ତୁମକୁ ପିଟି ପିଟି ଚମଡ଼ା ଉତାରି ଦେବି । ତୁମେ ସବୁ କ'ଣ ଭାବିଛ କି ? ମୁଁ ହେଉଛି ଈଶ୍ୱର, ମୁଁ ତୁମ ସମସ୍ତଙ୍କର ପ୍ରଭୁ । ତୁମେ ଗୁଡ଼ାକ ମୂର୍ଖ । ବ୍ୟଭିଚାରିଣୀ ସ୍ତ୍ରୀ ନିଜ ସ୍ୱାମୀକୁ ଛାଡ଼ି ଉପପତିର ସେବା କରେ । ତୁମମାନଙ୍କର ପ୍ରକୃତି ଠିକ୍ ତାହାରି ପରି । କୁଳଟା ସ୍ତ୍ରୀପରି ତୁମର ଗର୍ହିତ ପ୍ରକୃତି । ନିର୍ଲଜ୍ଜ, ତୁମେ ସବୁ ମୋତେ ପୁଣି ଶିକ୍ଷା ଦେବାକୁ ଆସିଛ । ତୁମ ଭଳି ଉତାରି ଜୀବନ୍ତ ସମାଧି ଦେଉଛି ବୁଝ । ମୁଁ ତୁମର ପ୍ରଭୁ । ମୋତେ ଅପମାନିତ କରି ଏ ଜୀବନରେ କି ପରଲୋକରେ ତୁମେ ସୁଖୀ ହେବ ନାହିଁ । ତୁମେ ସବୁ ମୋତେ ନରପତି, ଜଗଦୀଶ୍ୱର, ସବୁ ଲୋକର ପ୍ରଭୁ ବୋଲି ମାନିବ ନା ନାହିଁ ।

ବେନର କ୍ରୋଧପୂର୍ଣ୍ଣ ବାକ୍ୟ ଶୁଣି ଋଷିଗଣ ନୀରବ ହୋଇଗଲେ; କିନ୍ତୁ ପଛରେ ଥିବା ଯୁବକ ଋଷିମାନେ କ୍ରୋଧରେ ଅସ୍ଥିର ହୋଇଉଠିଲେ । ଏହା ଦେଖି ବୟସ୍କ ମୁନିଗଣ ସେମାନଙ୍କୁ ସଙ୍କେତ ଦେଇ ଶାନ୍ତ କରାଇଲେ । ବେନ ପୁଣି କହିଲା—କ'ଣ, ସବୁ ଚୁପ୍ ରହିଲ କାହିଁକି ? ମୋ କଥାର ଉତ୍ତର ଦିଅ । କ'ଣ ତୁମେ ସବୁ ମୋତେ ଈଶ୍ୱର ବୋଲି ମାନୁନାହଁ ?

ଜଣେ ବୃଦ୍ଧ ଋଷି ଶାନ୍ତ ସ୍ୱରରେ କହିଲେ—ଦେବ ! ଆପଣ ଈଶ୍ୱର ନୁହନ୍ତି । ଏହା ଆମେ କହୁନାହୁଁ । ଆପଣ ନରପତି, ଲୋକମାନଙ୍କର ପ୍ରଭୁ ଓ

ରାଜା । ତଥାପି ଯଜ୍ଞପତି ଭଗବାନ ଆପଣଙ୍କଠାରୁ ବଡ଼ । ଆପଣଙ୍କର ସେ ପୂଜନୀୟ, ଆପଣ······

କଥା ମଝିରେ ବେନ ଗର୍ଜନ କରି କହିଲେ—କିଏ ସେ ଯଜ୍ଞପୁରୁଷ ? ଆରେ ମୂର୍ଖ ! ମୁଁ ହେଉଛି ଯଜ୍ଞପୁରୁଷ । ବ୍ୟଭିଚାରିଣୀ ପରି ଅଧିକ ପାପ କରନାହିଁ । ମୋତେ ନିଜର ପତି ରୂପେ ସ୍ୱୀକାର କରି ଜାରରୂପ ଯଜ୍ଞପୁରୁଷକୁ ଭୁଲିଯାଅ । ମୋ ନାମ ଜପ କର, ମୋତେ ପୂଜା କର, ମୋତେ ଉପହାର ଦିଅ, ମୋରି ମୁଖରେ ଆହୂତି ଦିଅ । ମୋପରି ପ୍ରତ୍ୟକ୍ଷ ଦେବତାଙ୍କୁ ଛାଡ଼ି କଳ୍ପିତ ଦେବତା ପଛରେ ଦୌଡ଼ାଇ ଲାଭ ନାହିଁ ।

ଆପଣ କ'ଣ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର—ଏ ତିନି ଦେବତାଙ୍କୁ ସ୍ୱୀକାର କରୁ ନାହାନ୍ତି ? —ମୁନି ପଚାରିଲେ ।

ବେନ କହିଲା—ମାନିବୁ ନାହିଁ କାହିଁକି ? ଆମେ ମାନୁଛୁ । ତୁମ୍ଭେମାନେ ମାନୁନାହଁ । ମୁଁ ସୃଷ୍ଟି କରୁଛି, ତେଣୁ ମୁଁ ବ୍ରହ୍ମା । ପ୍ରଜାମାନଙ୍କୁ ପାଳନ କରୁଥିବାରୁ ମୁଁ ବିଷ୍ଣୁ, ତୁମମାନଙ୍କ ପରି ଦୁଷ୍ଟମାନଙ୍କୁ ସଂହାର କରୁଥିବାରୁ ମୁଁ ରୁଦ୍ର । ତିନି ଦେବତା ମୋ ଦେହରେ ବାସ କରୁଛନ୍ତି ।

ମୁଣ୍ଡ ହଲେଇ ଉପେକ୍ଷା କଲାପରି ଜନୈକ ଋଷି କହିଲେ—ଆପଣ ତେବେ ଅନ୍ୟାନ୍ୟ ଦେବତା ଓ ଲୋକମାନଙ୍କୁ ମାନୁ ନ ଥିବେ ।

ବେନ କହିଲା—ତୁମମାନଙ୍କ ମୁଣ୍ଡରେ ଗୋବର ଅଛି ନା କାଦୁଅ ଅଛି । ଆରେ ମୁଁ ପୂର୍ବଦିଗର ପାଳକଭାବେ ଇନ୍ଦ୍ର, ଦକ୍ଷିଣ ଦିଗର ପାଳନ କରି ଯମ, ଉତ୍ତର ଦିଗର ପାଳକଭାବେ କୁବେର ଏବଂ ପଶ୍ଚିମ ଦିଗର ପାଳନ କରି ବରୁଣ ଦେବତାର କାର୍ଯ୍ୟ କରୁଛି । ସେହିପରି ବାୟୁ, ଈଶ, ନିଋତି ଓ ଅଗ୍ନି ରୂପେ ବାୟବ୍ୟ, ଈଶାନ, ନୈର୍ଋତ୍ୟ ଓ ଆଗ୍ନେୟ ଦିଗରେ ପାଳନ କରୁଛି । ସୂର୍ଯ୍ୟ, ଚନ୍ଦ୍ର, ପୃଥିବୀଆଦିର ଶକ୍ତି ମୋ ଭିତରେ ରହିଛି; ତେଣୁ ରାଜାଙ୍କୁ ସର୍ବଦେବମୟ କୁହାଯାଏ ରାଜା ଯାହା ଇଚ୍ଛା କରନ୍ତି ତାହା କରିପାରନ୍ତି । ଇଚ୍ଛା ଅନୁସାରେ ଦଣ୍ଡ ଓ ପୁରସ୍କାର ଦିଅନ୍ତି । ରାଜା ସନ୍ତୁଷ୍ଟ ହେଲେ ଭିକାରୀକୁ କୁବେର ଓ କୁବେରକୁ ଭିକାରୀ କରିଦିଅନ୍ତି । ତୁମେସବୁ ନିଜର ମଙ୍ଗଳ ଯଦି ଚାହୁଁଛ, ତେବେ ମୋ କଥା ମାନିଯାଅ । ମୂର୍ଖତା ଓ ଈର୍ଷ୍ୟା ଛାଡ଼ିଦିଅ । ପ୍ରାଚୀନ ପ୍ରଥା ତ୍ୟାଗ କର । ମୋତେ ସବୁ କିଛି ବୋଲି ଭାବିଲେ ତୁମର ମଙ୍ଗଳ ହେବ । ନୋହିଲେ ତୁମ ହାଡ଼ ସବୁ ଗୁଣ୍ଡା କରିଦେବି । ବୁଝିଲ ତ ? ଏଥର କୁହ ତୁମମାନଙ୍କର ଇଚ୍ଛା କଣ ?

"ତୁମେ କ'ଣ ବେଦକୁ ମାନୁ ନାହଁ ?" ଜଣେ ଋଷି ପଚାରିଲେ ।

ବେନ ଉତ୍ତର ଦେଲ—ମୋର ବାଣୀ ହେଉଛି ବେଦ । ମୋର ଆଦେଶ ହିଁ ବେଦବାକ୍ୟ । ଯଦି ତୁମ୍ଭେମାନେ ମୋତେ ପୂଜା ନ କରିବ, ତେବେ ଏ ପୃଥିବୀରେ ତୁମର ସ୍ଥାନ ନାହିଁ । ଖୁବ୍ ବେଶୀ ହୋଇଗଲ । ଆଉ ଅଧିକ ବକର ବକର ହେବାର ଆବଶ୍ୟକତା ନାହିଁ । ଗୋଟିଏ କଥାର ଉତ୍ତର ଦିଅ । ତୁମେ ମୋତେ ଈଶ୍ୱର ବୋଲି ମାନୁଛ କି ନାହିଁ? ଯଦି ଆଉ କାହାକୁ ଈଶ୍ୱର ବୋଲି ଭାବୁଛ, ତେବେ ସଙ୍ଗେ ସଙ୍ଗେ ତୁମମାନଙ୍କ କଥା ବୁଝାଯିବ । ଦେଖିବା ତୁମର କଳ୍ପିତ ଈଶ୍ୱର ତୁମକୁ ରକ୍ଷା କରୁଛି କି ନାହିଁ ?

ମୈତ୍ରେୟ କହିଲେ—ହେ ବିଦୁର ! ବେନର ଅସହ୍ୟ କଥାରେ ମୁନି-ମାନଙ୍କ ଧୈର୍ଯ୍ୟବନ୍ଧ ଭାଙ୍ଗିଗଲା । ସମସ୍ତେ ଏକସ୍ୱରରେ କହିଲେ—ଏ ଦୁଷ୍ଟକୁ ମାରିଦିଅ । ଏପରି ଅଯୋଗ୍ୟ ସିଂହାସନରେ ଆଉ ଅଧିକ ସମୟ ରହିବା ଉଚିତ ନୁହେଁ । ଏଟା ମହାପାପୀ, ଧର୍ମଭ୍ରଷ୍ଟ, ଚଣ୍ଡାଳଠାରୁ ମଧ୍ୟ ହୀନ । ଏ ବଞ୍ଚି ରହିଲେ ସମଗ୍ର ସଂସାରକୁ ଜାଳିପୋଡ଼ି ଛାରଖାର କରିଦେବ । ସମସ୍ତଙ୍କୁ ମାରିପକାଇବ । ଏଟା ଈଶ୍ୱରଦ୍ରୋହୀ, ଆଜି ଏହାକୁ ଶେଷ କରିବାକୁ ହେବ । ମୁନିମାନଙ୍କ କ୍ରୋଧ ଦେଖି ବେନ ଡରିଗଲା । ଆଗରେ ଥିବା ବୃଦ୍ଧ ମୁନିଗଣ ବେନକୁ ଚାହିଁ ଥରେ ମାତ୍ର 'ହୁଁ' ବୋଲି ଶବ୍ଦ କରିବାରୁ ବେନ ସିଂହାସନରୁ ତଳକୁ ଗଡି ପଡି ମୃତ୍ୟୁବରଣ କଲା । କେତେକ ମୁନି କହିଲେ—ଯା' ପୁଅ, ନିଜ ଅଜା ଘରେ ଆନନ୍ଦରେ ରହି । ସେହି ଅବସ୍ଥାରେ ବେନର ଶବକୁ ଛାଡ଼ି ଦେଇ ମୁନିମାନେ ନିଜ ନିଜ ଆଶ୍ରମକୁ ଫେରିଗଲେ ।

## ଛପ୍‌ପୟ

"ସୁନତ କୁପିତ ମୁନି ଭୟେ ପୁକାରେଂ ମାରୋ ମାରୋ ।
ରାଜାସନ ତେଂ ଖେଂଚ ଦୁଷ୍ଟ କୁଁ ବେଗି ଉତାରୋ ॥
ପାଇ ପରମ ଐଶ୍ୱର୍ଯ୍ୟ ନୀଚ ଅତିଶୟ ଇତରାର୍ୱେ ।
କରେ ବେଦ ଅପମାନ ଅଜ ବାକୋ ଫଲ ପାର୍ୱେ ॥
ଯୌଂ କହି ଭରିକେଂ କ୍ରୋଧ ମେଁ, ସବ ମୁନି ମିଲି ହୁଂକୃତ କରୀ
ତୁରତ ବେନ କୀ ଦେହ ତହଁ, ପ୍ରାନହୀନ ହୈ୍ୟକେଂ ଗିରୀ ॥"



# ଅରାଜକତାର ପ୍ରତିକାର

"ବ୍ରାହ୍ମଣଃ ସମଦୃକ ଶାନ୍ତୋ ଦୀନାନାଂ ସମୁପେକ୍ଷକଃ ।
ସ୍ରବତେ ବ୍ରହ୍ମ, ତସ୍ୟାପି ଭିନ୍ନଭାଣ୍ଡାତ୍ପୟୋ ଯଥା ॥

(ଭାଗବତ-୪ର୍ଥ ସ୍କନ୍ଧ· ୧୪ଅଧ୍ୟାୟ-ଶ୍ଳୋକ ୪୧)

## ଛପ୍‌ପୟ

"ଛାଡ଼ି ତାହି ନିର୍ଜିବ ଗୟେ ନିଜ ନିଜ ଆଶ୍ରମ ମୁନି ।
ମାତୁ ସୁନୀଥା ଦୁଃଖିତ ଭଇ ନିଜ ପୁତ୍ର ମୃତ୍ୟୁ ସୁନି ॥
ରାଜ୍ୟ ମାହିଁ ବହୁ ଭଇ ଅରାଜକତା ଅତି ଭାରୀ ।
ଲୁଟପାଟ ବ୍ୟଭିଚାର କଲହ ଚୋରୀ ଅରୁ ଜାରୀ ॥
ମୁନନି ଦେଶ ଦେଖେଁ ଦୁଃଖୀ, ଦସ୍ୟୁ ହୁୟେ ଉମଡୀ ପ୍ରବଳ ।
ହୋହି ତହାଁ ତପ କସ ଜହାଁ, ନିରବଳକୁଁ ତାଡ଼େ ସବଳ ॥"

ଦେଶରେ ପରିସ୍ଥିତି ସମସ୍ତଙ୍କ ହୃଦୟକୁ ଆଲୋଡ଼ିତ କଲା । ସମସ୍ତେ ଦୁଃଖିତ ହେଲେ । ଦେହ ଥିବାଯାଏ ସୁଖ ଦୁଃଖ ଅନୁଭୂତ ହୁଏ । ସେଥିପାଇଁ ଲୋକେ ଦାନ, ଧ୍ୟାନ, ପରୋପକାର କରନ୍ତି, କାରଣ ସତ୍କାର୍ଯ୍ୟଦ୍ୱାରା ଈଶ୍ୱର ସନ୍ତୁଷ୍ଟ ହେବେ ଓ ଦୁଃଖ, ବିପଦ ଦୂର କରିବେ । ଏସବୁ ସତ୍ତ୍ୱେ ପ୍ରତ୍ୟେକ ପ୍ରାରବ୍ଧ ଫଳ ଭୋଗ କରନ୍ତି ବୋଲି କୁହାଯାଏ । ତାହା ସତ, କିନ୍ତୁ ପ୍ରାରବ୍ଧରୁ ମୁକ୍ତି ପାଇବା ଆଶାରେ ନୁହେଁ ସର୍ବାନ୍ତର୍ଯ୍ୟାମୀ ପ୍ରଭୁଙ୍କ ସନ୍ତୋଷ ପାଇଁ ସମସ୍ତେ ପରୋପକାର କରିବା ଉଚିତ । ଯେ ଦୀନଦୁଃଖୀଙ୍କୁ ସାହାଯ୍ୟ କରେ ନାହିଁ । ନିଜ ଆଖି ଆଗରେ ଘଟୁଥିବା ଅନ୍ୟାୟର ବିରୋଧ କରେ ନାହିଁ ତାର ଜପ, ତପ, ବ୍ରତ, ଯଜ୍ଞ ସବୁ ବ୍ୟର୍ଥ ହୋଇଯାଏ ।



ମୈତ୍ରେୟ ମୁନି କହିଲେ—ହେ ବିଦୁର ! ଋଷିମାନଙ୍କ ହୁଂକାର ଶବ୍ଦରେ ବେନ ମୃତ୍ୟୁବରଣ କଲା । ତାକୁ ସେହି ଅବସ୍ଥାରେ କ୍ରୁଦ୍ଧ ଋଷିମାନେ ଆଶ୍ରମକୁ ଫେରିଯିବା ପରେ ରାଜସଭା ନିସ୍ତବ୍ଧ ହୋଇଗଲା । ସମସ୍ତେ ମନେ ମନେ ଖୁସି ହୋଇଗଲେ ବି ଶିଷ୍ଟାଚାର ଦୃଷ୍ଟିରୁ ଶୋକ ପ୍ରକାଶ କରିବାକୁ ଲାଗିଲେ । ବେନଙ୍କ ମୃତ୍ୟୁ ସମ୍ବାଦ ଯଥାଶୀଘ୍ର ଅନ୍ତଃପୁରରେ ସୁନୀଥାଙ୍କୁ ଜଣାଇ ଦିଆଗଲା । ମା' ସୁନୀଥା ଖବର ପାଇ ଦୌଡ଼ି ଆସିଲେ । ନିଜ ପୁଅକୁ ଆଖି ଆଗରେ ମରି ପଡ଼ିଥିବାର ଦେଖି ତାଙ୍କ ଛାତି ଫାଟି ଯିବାକୁ ବସିଲା । ସମସ୍ତେ କହିଲେ—ଯାହା ହେବାର ହୋଇ ସାରିଛି । ବର୍ତ୍ତମାନ ଶବଦାହପାଇଁ ସମସ୍ତେ ପ୍ରସ୍ତୁତ ହେବା ଉଚିତ ।

ମହାରାଣୀ ସୁନୀଥା କହିଲେ—ନା ମୋ ପୁଅର ଦାହ ସଂସ୍କାର ହେବନାହିଁ । ଯେଉଁ ଋଷିମାନଙ୍କ କ୍ରୋଧାଗ୍ନିରେ ମୋ ପୁଅ ମରିଛି ସେମାନେ ଦୟାକରି ତାକୁ ବଞ୍ଚାଇ ଦେବେ । ଯେ ଦଣ୍ଡ ଦିଏ ସେ ବି କ୍ଷମା ଦିଏ । ଯେ ପିଟାବାଡ଼ଆ କରେ, ସେ ବି ସେହି କରେ । ତୁମେ ସମସ୍ତେ ମୋ ପୁଅକୁ ରକ୍ଷାକର । ସେ ମରିଯାଇଛି ବୋଲି ଭାବନାହିଁ । ଦେଖ ସେ ଶୋଇ ରହିଛି । ମହାରାଣୀଙ୍କ ଆଦେଶ ଅନୁସାରେ ଏକ ବିରାଟ କରେଇରେ ତୈଳ ପୂର୍ଣ୍ଣକରି ସୁଗନ୍ଧ ଦ୍ରବ୍ୟ ପକାଇ ବେନକୁ ସୁରକ୍ଷିତ କରାଗଲା । ସୁନୀଥା ଯତ୍ନର ସହିତ ପୁଅକୁ ଜୀବନ୍ତ ମନେକରି ତାର ସେବା ଶୁଶ୍ରୁଷା କଲେ ।

ବେନଙ୍କ ମୃତ୍ୟୁପରେ ଦେଶର ଚାରିଆଡ଼େ ଚୋର ଡକାୟତି ବଢ଼ିଗଲା । ରାଜସିଂହାସନ ଖାଲି ପଡ଼ିବାରୁ ଅରାଜକତା ବ୍ୟାପିଗଲା । ରାଜକର୍ମଚାରୀମାନେ ଯଥେଚ୍ଛାଚାର କଲେ । ହତ୍ୟା, ଲୁଣ୍ଠନ, ଧର୍ଷଣ ଓ ଅସାମାଜିକ ଲୋକଙ୍କ ଦୌରାତ୍ମ୍ୟରେ ଲୋକେ ବ୍ୟାକୁଳ ହୋଇ ପଡ଼ିଲେ । କାହାରି ଲଜ୍ଜା, ଭୟ ରହିଲା ନାହିଁ । ସମସ୍ତେ ମନଇଚ୍ଛା କାର୍ଯ୍ୟକଲେ । ପ୍ରଥମରୁ ସମସ୍ତେ ଧର୍ମକର୍ମହୀନ ହୋଇ-ପଡ଼ିଥିଲେ । ଅବସର ପାଇବାମାତ୍ରେ ସେମାନେ ହତ୍ୟା, ଲୁଟତରାଜ, ନାରୀଧର୍ଷଣ, ପଶୁପକ୍ଷୀଙ୍କୁ ସଂହାର କରିବାରେ ଲାଗିପଡ଼ିଲେ ।

ଏହି ସମୟରେ ଦିନେ ମୁନିମାନେ ସରସ୍ୱତୀ ନଦୀ ତୀରରେ ବସି କୃଷ୍ଣ କଥା ଆଲୋଚନା କରୁଥିଲେ । ଅରାଜକତା ସୂଚକ ନାନାପ୍ରକାର ଉତ୍ପାତ ଦେଖି ସେମାନେ ଭାବିଲେ ନିଶ୍ଚୟ କୌଣସି ଦେଶ ରାଜଶୂନ୍ୟ ହୋଇ ପଡ଼ିଛି । ହଠାତ୍ ଦଳେ ଡ଼କାୟତ ଘୋଡ଼ାରେ ଚଢି ସେଇବାଟ ଦେଇ ଚାଲିଗଲେ । ତାଙ୍କ ସାଙ୍ଗରେ ଗୁଡ଼ିଏ ସ୍ତ୍ରୀଲୋକ ଥିଲେ । ସେମାନେ ଚିତ୍କାର କରି କାନ୍ଦୁଥିଲେ । ଏହା ଦେଖି ମୁନିମାନେ ବ୍ୟସ୍ତ ହୋଇପଡ଼ିଲେ ଏବଂ କେତେଜଣ କାନ୍ଦିକାନ୍ଦି କହିଲେ—ବଡ଼ ଅନର୍ଥ ଉପସ୍ଥିତ ହେଲା । ଏହାର ପ୍ରତିକାର କରିବା ବାଞ୍ଛନୀୟ ।

ଅନ୍ୟଜଣେ ଋଷି ପଚାରିଲେ—ହଇହେ, ସବୁବେଳେ ଖାଲି ଉପାୟ ଚିନ୍ତା କରୁଥିବ ନା ଜପ, ତପ, ପୂଜାପାଠ କିଛି କରିବ । ଏ ସଂସାରରେ କେତେବେଳେ କିଏ ଜନ୍ମ ହେଉଛି, କିଏ ମରୁଛି, କିଏ ଦୁଃଖ କରୁଛି, କିଏ ପ୍ରେମ କରୁଛି, କିଏ କାହାକୁ ହତ୍ୟା କରୁଛି, ସେ ସବୁର ଖବର ରଖିବା ସମ୍ଭବ ନୁହେଁ । ଏସବୁ କର୍ମଫଳ, ସମସ୍ତେ କର୍ମର ଅଧୀନ । ଜୀବ ଜୀବର ଅଧୀନ ହୋଇ ରହୁଛି । ତେଣୁ ସେ ସବୁ ଜଞ୍ଜାଳ କଥା ଛାଡ଼ି ନିଜ କାମରେ ମନ ଦିଅ । କିଏ ରାଜା ହେବ, ସେଥିରେ ଆମର କଣ ଅଛି ? ଆମେ ତ ଆଉ ରାଜତ୍ୱ କରିବାକୁ ଯାଉ ନାହୁଁ । ଆମର ଭଜନ ହେଲା କାମ । ତେଣୁ ଚୁପ୍‌ଚାପ୍ ବସି ଭଜନ କର । ଯଦି ଏ ସବୁ ଜଞ୍ଜାଳରେ ମୁଣ୍ଡ ପୂରାଇବ ତେବେ ଭଜନ, ପୂଜନ ଆଉ ହୋଇ ପାରିବ ନାହିଁ ।

ଏହା ଶୁଣି ଅନ୍ୟତମ ଋଷି ଗମ୍ଭୀର ଭାବେ କହିଲେ –ଆଜ୍ଞା, ଭଜନର ଅର୍ଥ କଣ ବୁଝିଛନ୍ତି । ଆପଣ ଭଗବାନଙ୍କୁ ଆରାଧନା କରୁଛନ୍ତି । ଯଜ୍ଞକୁଣ୍ଡରେ ଆହୁତି ଦେଉଛନ୍ତି । ଆପଣ ଭାବୁଛନ୍ତି ଭଗବାନ୍ ଏହି ଯଜ୍ଞ ଅଗ୍ନିରେ ବିରାଜମାନ ଅଛନ୍ତି, ଅନ୍ୟତ୍ର ନୁହେଁ, ଏହା ଠିକ୍‌ନୁହେଁ । ଅଖିଳପତି ଶ୍ରୀହରି ସର୍ବତ୍ର ସମାନଭାବରେ ପରିବ୍ୟାପ୍ତ ଅଛନ୍ତି । ଦୟାଳୁ ହୃଦୟରେ ତାଙ୍କର ଆବିର୍ଭାବ ଘଟେ ଠିକ୍ ସୂର୍ଯ୍ୟାଲୋକ ପରି । କିନ୍ତୁ କାଚରେ ତାଙ୍କର ପ୍ରକାଶ ସ୍ପଷ୍ଟ ରୂପେ ଦେଖାଯାଏ । କାଷ୍ଠ ପାଷାଣରେ ତମୋଗୁଣରେ ଆଧିକ୍ୟ ହେତୁ ସେ ଅଳ୍ପମାତ୍ରାରେ ପ୍ରକାଶିତ ହୁଅନ୍ତି । ତେଣୁ ତପସ୍ୟାଦ୍ୱାରା ଯେ ଜୀବମାନଙ୍କ ପ୍ରତି ଦୟା ପ୍ରଦର୍ଶନ କରନ୍ତି ଶ୍ରୀହରି ତାଙ୍କର ହୃଦୟରେ ଶୀଘ୍ର ପ୍ରକଟିତ ହୁଅନ୍ତି । ଦୀନ ଦୁଃଖୀମାନଙ୍କ ପ୍ରତି ଦୟା ପ୍ରଦର୍ଶନ ହିଁ ବ୍ରହ୍ମାଣ୍ଡପତି ଅଚ୍ୟୁତଙ୍କର ସର୍ବୋତ୍କୃଷ୍ଟ ଆରାଧନା ।

ଆପଣଙ୍କ ଆଖି ଆଗରେ ଜଣେ କଷ୍ଟ ପାଉଛି । ତା'ର କଷ୍ଟ ଦୂର କରିବା ଭଳି ଶକ୍ତି ଯାହାର ଅଛି, ସେ ଯଦି ଉପେକ୍ଷା କରେ, ତେବେ ତା'ର ଜପ, ତପ, ସଂଯମ, ତୀର୍ଥ, ବ୍ରତ, ଯଜ୍ଞ, ଯୋଗ, ସମାଧି, ବେଦାଧ୍ୟୟନ ଓ ସମସ୍ତ ଶୁଭକର୍ମ ବ୍ୟର୍ଥ ହୋଇଯାଏ । ତେଣୁ ଆମେ ସମସ୍ତେ ମିଳିମିଶି ଅରାଜକତାର ପ୍ରତିକାର ପାଇଁ ଉଦ୍ୟମ କରିବା ଉଚିତ । ଦସ୍ୟୁମାନଙ୍କ ହାତରୁ ପ୍ରଜାମାନଙ୍କୁ ମୁକ୍ତ କରିବା ଆମର ପ୍ରଧାନ କର୍ତ୍ତବ୍ୟ । ଅଶାନ୍ତ ଅବସ୍ଥା ଦୂର କରିବା ନିମିତ୍ତ ସମସ୍ତେ ଯତ୍ନଶୀଳ ହୁଅନ୍ତୁ । ଯଥାଶୀଘ୍ର ଜଣେ ଯୋଗ୍ୟ ବ୍ୟକ୍ତିକୁ ରାଜା କରାଇବା ଉଚିତ ।

ଏହା ପରେ ଅନ୍ୟ ଜଣେ ଋଷି କହିଲେ—କାହାକୁ ରାଜା କରାଇବେ ? ନିଜକୃତ ପାପ ହେତୁ ବେନ ମୃତ୍ୟୁବରଣ କଲା । ସେ ରାଜବଂଶରେ ହିଁ ଏକମାତ୍ର ପୁତ୍ର । ରାଜବଂଶୀୟ ବ୍ୟକ୍ତି ବ୍ୟତୀତ ଧର୍ମଦୃଷ୍ଟିରୁ ଅନ୍ୟକୁ କିପରି ରାଜା କରାଯିବ ? କଳିଯୁଗରେ ଯେ କେହି ରାଜା ହୋଇପାରେ, କିନ୍ତୁ ବର୍ଣ୍ଣାଶ୍ରମ ଧର୍ମ ରକ୍ଷାପାଇଁ ବିଶୁଦ୍ଧ କ୍ଷତ୍ରିୟବଂଶଜ ନରପତି ହେବା ଆବଶ୍ୟକ ।

ଋଷିମାନଙ୍କର ଯୁକ୍ତିତର୍କ ଶୁଣିବା ପରେ କୁଳପତି କହିଲେ—ଦେଖନ୍ତୁ, ନିଜ ପାପରୁ ବେନ ମୃତ୍ୟୁବରଣ କଲା । ଏହା ସତ; କିନ୍ତୁ ମହାରାଜା ସ୍ୱାୟଂଭୁବ ମନୁ ଅପାର ରଣ ପୁଣ୍ୟଶାଳୀ ଥିଲେ । ବଂଶ ନଷ୍ଟ ହୁଏ ପାପରୁ । ଯେଉଁ ବଂଶରେ ପାପ କାର୍ଯ୍ୟ ବଢ଼ିଯାଏ, ସେ ବଂଶର ବିନାଶ ଘଟେ, କୁଳ ପରମ୍ପରାର ବିଶୁଦ୍ଧତା ନଷ୍ଟ ହୁଏ; ତଥାପି ମହାରାଜ ମନୁଙ୍କ ପୁଣ୍ୟ ପ୍ରଭାବରୁ ତାଙ୍କ ବଂଶର ବିଲୋପସାଧନ ସମ୍ଭବ ନୁହେଁ । ସେହି ବଂଶର ସୁରକ୍ଷା ହେବା ଉଚିତ ।

ସମସ୍ତେ ଏକ ସ୍ୱରରେ କହିଲେ—ହଁ, ତାହା ହେବା ଉଚିତ । ସେ ବିଷୟରେ ଉଦ୍ୟମ କରିବା ବାଞ୍ଛନୀୟ । ତ୍ରିକାଳଜ୍ଞ ମୁନିମାନଙ୍କ ତପୋବଳ ଓ ଅମୋଘ ମନ୍ତ୍ରଶକ୍ତି ଦ୍ୱାରା ସବୁ କିଛି ସମ୍ଭବ ହୋଇପାରେ । ମୁନିମାନେ ଇଚ୍ଛା କଲେ ମନ୍ତ୍ରବଳରେ ଜୀବିତକୁ ମୃତ ଓ ମୃତକୁ ଜୀବିତ କରିପାରିବେ । ବର୍ତ୍ତମାନ ଚାଲନ୍ତୁ ରାଜଧାନୀକୁ ଯିବା ଏବଂ ଯାହା ଉଚିତ ହେବ ତାହା କରିବା ।

ମୈତ୍ରେୟ ମୁନି କହିଲେ—ହେ ବିଦୁର ! ସରସ୍ୱତୀକୂଳବାସୀ ମୁନିମାନେ ଏହିପରି ସିଦ୍ଧାନ୍ତରେ ଉପନୀତ ହୋଇ ନିଜ ନିଜର ଦଣ୍ଡ କମଣ୍ଡଳୁ ଧରି ରାଜଧାନୀ ଅଭିମୁଖେ ଯାତ୍ରା ଆରମ୍ଭ କଲେ । ଋଷିମାନଙ୍କୁ ରାଜଧାନୀ ଯାଉଥିବାର ଦେଖି ସମସ୍ତେ ଆଶ୍ୱସ୍ତ ହେଲେ; କାରଣ ତ୍ୟାଗୀ, ତପସ୍ୱୀ ଋଷିଗଣ ଯେଉଁ ବିଷୟରେ ଉଦ୍ୟମ କରନ୍ତି, ତାହା ସଫଳ ହୁଏ ବୋଲି ଲୋକେ ବିଶ୍ୱାସ କରୁଥିଲେ ।

## ଛପ୍ପୟ

ମୁନି ସମଦରସୀ ଶାନ୍ତ ଶାନ୍ତି, ହିତ ସବ ପୁର ଆୟେ ।
ଦେଖି ବେନ କୋ ମୃତକ ଦେହ ଅତି ହିୟ ହରଷାୟେ ॥
ବେନ ଜାଂଘ କୁଁ ଯୁକ୍ତି ସହିତ ମୁନି ମଥିବେଂ ଲାଗେ ।
ନିକସ୍ୟୋ କାରୋ ପୁରୁଷ ନିରଖି ମୁନି ନହିଁ ଅନୁରାଗେ ॥
ବେନ ଦେହ କଲ୍ମଷ କଢ୍ୟୋ, ପୃଥକ ଦେହ ତେଂ ହ୍ୱୈ ଗୟୋ ।
ମୁନିନି ନିଷୀଦ କହ୍ୟୋ ବଚନ, ସୋ ନିଷାଦ ସଂଜ୍ଞକ ଭୟୋ ॥



## ପୃଥୁଙ୍କ ଜନ୍ମ

"ଅୟଂ ତୁ ପ୍ରଥମୋ ରାଜ୍ଞାଂ ପୁମାନ୍ ପ୍ରଥୟିତା ଯଶଃ ।
ପୃଥୁର୍ନାମ ମହାରାଜୋ ଭବିଷ୍ୟତି ପୃଥୁଶ୍ରବାଃ ।"

(ଭାଗବତ-୪ର୍ଥ ସ୍କନ୍ଧ-୧୫ ଅଧ୍ୟାୟ-ଶ୍ଳୋକ-୪)

### ଛପ୍‌ପୟ

"ମଥୀ ଭୁଜା ଫିର ଯୁଗଲ ଭୟେ ଲକ୍ଷ୍ମୀନାରାୟନ ।
ପୃଥୁଳ କୀର୍ତ୍ତି ପୃଥୁ ପୁରୁଷ, ଅର୍ଚ୍ଚି କମଳା ଜଗପାବନ ।।
ତେଜ, ବୀର୍ଯ୍ୟ, ବଳ, ପ୍ରଭା, ସୁଲକ୍ଷଣ ଲଖି ମୁନ ହରଷେ ।
ଗାଓଁ ଗୁନ ଗନ୍ଧର୍ବ ସୁମନ ସୁର ନଭତେଂ ବରଷେଂ ।।
ଦକ୍ଷିଣ କରତେଂ ପୃଥୁ ଭୟେ, ବାମେଂ ତେଂ ଲକ୍ଷ୍ମୀ ଭଈ ।
ପ୍ରଭୁ ପ୍ରକଟେ ସୁନ ପ୍ରଜାକୀ, ଚନ୍ତା ସବରୀ ନସି ଗଈ ।।"

ମନ୍ତ୍ରର ପ୍ରଭୂତ ଶକ୍ତି ଅଛି । ତପସ୍ୟାର ପ୍ରଭାବ ମଧ୍ୟ ଅତୁଳନୀୟ । ଏ ଯୁଗର ଲୋକେ ତାହା ବିଶ୍ୱାସ କରିପାରିବେ ନାହିଁ । ପୂର୍ବେ ମନ୍ତ୍ର ସବୁ ଜୀବନ୍ତ ଓ ଅମୋଘ ଥିଲେ । ମହର୍ଷି ବୈଶମ୍ପାୟନ କହିବାରୁ ତାଙ୍କ ଶିଷ୍ୟ ଯାଜ୍ଞବଲ୍‌କ୍ୟ ଗୁରୁଙ୍କଠାରୁ ଶିକ୍ଷା କରିଥିବା ବେଦମନ୍ତ୍ରଗୁଡ଼ିକୁ ବାନ୍ତି କରି ପକାଇଥିଲେ । ସେହି ଉଦ୍‌ଗୀର୍ଣ୍ଣ ମନ୍ତ୍ର-ଗୁଡ଼ିକ ଗୃହଅଡ଼େ ଜୀବନ୍ତଭାବେ ଘୁରିବାକୁ ଲାଗିଲା । ତାହା ଦେଖି ଗୁରୁ ବୈଶମ୍ପାୟନ ପୁଣି ଆଦେଶ ଦେବାରୁ ତାଙ୍କ ଶିଷ୍ୟମାନେ ତିତିର ଚଢ଼େଇ ରୂପରେ ସେ ମନ୍ତ୍ରଗୁଡ଼ିକୁ ସଂଗ୍ରହ କଲେ । ସେହିଠାରୁ ବେଦର ତୈତ୍ତିରୀୟ ଶାଖା ସୃଷ୍ଟି ହେଲା । ଆଜି ସେ କଥା କିଏ ବିଶ୍ୱାସ କରିବ ?

ଋଷିମାନେ ଜନୈକ ମହାରାଜାଙ୍କ ପୁତ୍ର ପ୍ରାପ୍ତି ପାଇଁ ପୁତ୍ରେଷ୍ଟି ଯଜ୍ଞ କରାଉଥିଲେ । ଏକ କଳସୀରେ ମନ୍ତ୍ରପୂତ ଜଳ ରଖିଥିଲେ । ସକାଳେ ସେହି ଜଳ ରାଣୀଙ୍କୁ ପିଆଇଥାନ୍ତେ । ସେହି ଜଳପାନ କରି ରାଣୀ ଗର୍ଭବତୀ ହୋଇଥାନ୍ତେ । କିନ୍ତୁ ଘଟଣାଟି ଘଟିଲା ଅନ୍ୟପ୍ରକାର । ରାଜାଙ୍କୁ ସେଦିନ ରାତିରେ ଖୁବ୍ ଶୋଷ ଲାଗିଲା । ତୃଷାକୁଳ ହୋଇ ରାଜା ନିଜ ଅଜ୍ଞାତରେ ସେହି କଳସୀରୁ ମନ୍ତ୍ରପୂତ ଜଳ ପାନ କରିଥିଲେ । ଫଳ କ'ଣ ହେଲା, ମନ୍ତ୍ରଶକ୍ତି ତ ନିଷ୍ଫଳ ହେବନାହିଁ, ଫଳ ହେଲା ରାଜାଙ୍କୁ ଗର୍ଭଧାରଣ କରିବାକୁ ପଡ଼ିଲା ଆଉ ସେହି ଗର୍ଭରୁ ଜନ୍ମ ହେଲେ ପ୍ରସିଦ୍ଧ ମହାରାଜା ମାନ୍ଧାତା । ବିଶ୍ୱାମିତ୍ର ନିଜ ତପସ୍ୟାବଳରେ ଏକ ନୂତନ ସ୍ୱର୍ଗ ସୃଷ୍ଟି କରି ପାରିଥିଲେ । ଏହିପରି ବହୁତ ବହୁତ ଉଦାହରଣ ରହିଛି । ଏହାର ସାରକଥା ହେଉଛି, ତପସ୍ୱୀ, ସଦାଗ୍ରସ୍ତ, ବେଦଜ୍ଞ ଓ ମୁନି ଋଷି ଯାହା ଇଚ୍ଛା କରୁଥିଲେ ସେ ସବୁ କରି ପାରୁଥିଲେ । ଈଶ୍ୱରଙ୍କ କୃପାରୁ ସେମାନଙ୍କ ପକ୍ଷରେ ଅସାଧ୍ୟ, ଅସମ୍ଭବ ବୋଲି କିଛି ନ ଥିଲା ।

ମୈତ୍ରେୟ ମୁନି କହିଲେ—ହେ ବିଦୁର ! ଅରାଜକତା ଦୂରୀକରଣ ନିମିତ୍ତ ଓ ମନୁବଂଶର ନିରବଚ୍ଛିନ୍ନତା ବଜାୟ ରଖିବା ପାଇଁ ମୁନିମାନେ ମହାରାଜ ଅଙ୍ଗଙ୍କ ପତ୍ନୀ ଓ ବେନଙ୍କ ଜନନୀ ସୁନୀଥାଙ୍କ ପାଖରେ ପହଞ୍ଚିଲେ, ଆଉ କହିଲେ—ଦେବି ! ବର୍ତ୍ତମାନ କ'ଣ କରିବା ? ଆପଣଙ୍କ ବଂଶ ବୁଡ଼ିଯିବା ଉଚିତ ନୁହେଁ ।

ହାତଯୋଡ଼ି ସୁନୀଥା ଦେବୀ ବିନୀତ ଭାବେ ନିବେଦନ କଲେ—ହେ ମୁନିଗଣ ! ଆପଣମାନେ ସର୍ବଶକ୍ତିସମ୍ପନ୍ନ । ଆପଣମାନେ ଯାହା ଇଚ୍ଛା କରିବେ ତାହା କରିପାରିବେ । ସେଥିପାଇଁ ମୁଁ ପୁତ୍ରର ଶରୀରକୁ ସୁରକ୍ଷିତ କରି ରଖିଛି ।

ମୁନିମାନେ କହିଲେ—'ବେନଙ୍କ ଶରୀର ଅଛି, ତେଣୁ ଆଉ ଚିନ୍ତାର କାରଣ ନାହିଁ । ଆମେ ସେହି ଶରୀରକୁ ମନ୍ଥନ କରି ପୁତ୍ର ଉତ୍ପନ୍ନ କରାଇବା । ବର୍ତ୍ତମାନ ସେହି ଶବ ଆମ ପାଖକୁ ଆଣ ।' ମୁନିମାନଙ୍କ ଆଦେଶରେ ବେନଙ୍କ ମୃତ ଦେହ ଅଣାଗଲା । ଜଣେ ବୃଦ୍ଧ ଅନୁଭବୀ ଋଷି କହିଲେ—ସମସ୍ତେ ବିଚାର କର, ବେନର ଶରୀର ପାପଗ୍ରସ୍ତ । ମନୁବଂଶର ବିଶୁଦ୍ଧ ରକ୍ତ ଆବଶ୍ୟକ ବଂଶରକ୍ଷା ପାଇଁ । ତେଣୁ ଯେପରି ଏ ଦେହରୁ ପାପ ଅଲଗା ହେବ କିପରି ଯତ୍ନକର । ପରେ ଅଙ୍ଗ ବିଶୁଦ୍ଧ ହେଲେ ସେଥିରୁ ପୁତ୍ର ଉତ୍ପନ କରାଯିବ ।

'କିନ୍ତୁ ବେନଙ୍କ ଦେହରୁ ପାପପୁଞ୍ଜକୁ ଅଲଗା କରିବା ସମ୍ଭବ କି ?'— ଜନୈକ ଋଷି ପଚାରିବାରୁ ବୃଦ୍ଧ କହିଲେ—ଦେଖ, ସୁନାରେ କାନ୍ତ ଅଛି,

ମଇଳା ବି ଅଛି । ତେଣୁ ନିଆଁରେ ତରଳାଇ ସୁନା ଓ ମଳକୁ ପୃଥକ୍ କରାଯାଏ । ସେହି ବିଶୁଦ୍ଧ ସୁବର୍ଣ୍ଣରେ ସମସ୍ତ ଅଳଙ୍କାର ନିର୍ମିତ ହୁଏ । ବିଶୁଦ୍ଧ ସୁନା ସୁନ୍ଦର ଓ କାନ୍ତିମୟ ଦେଖାଯାଏ । ଶରୀରରେ ଜଂଘର ମଧ୍ୟଭାଗ ଅତି ବିଶୁଦ୍ଧ । ଦେହସ୍ଥିତ ଆବର୍ଜନା ବାହାର କରିବାର ମାର୍ଗ ସବୁ ସେ ସ୍ଥାନରେ ଅଛି । ତେଣୁ ପ୍ରଥମେ ସେହି ଅଙ୍ଗକୁ ମନ୍ଥନ କର । ସମୁଦ୍ର ମନ୍ଥନରେ ଯେପରି ପ୍ରଥମେ ବିଷ ଓ ପରେ ଅମୃତ ବାହାରିଥିଲା ସେହିପରି ବେନର ଅଙ୍ଗକୁ ପ୍ରଥମେ ପାପମୁକ୍ତ କରିବାକୁ ପଡ଼ିବ ।

ବୃଦ୍ଧ ଋଷିଙ୍କ ଉପଦେଶ ଅନୁସାରେ ପ୍ରଥମେ ବେନର ଜଂଘଦ୍ୱୟ ମନ୍ଥନ କରାଗଲା । ସେଥିରୁ ଜଣେ କୃଷ୍ଣବର୍ଣ୍ଣର ପୁରୁଷ ଆବିର୍ଭୂତ ହେଲେ । ତାଙ୍କ ମୁଣ୍ଡବାଳ ଠିଆଠିଆ ଓ ତମ୍ବାଳିଆ ଦେଖାଯାଉଥିଲା । ଚେପ୍‌ଟା ନାକ, ଖ୍ରେଟ ଖ୍ରେଟ ହାତ ଓ ପାଦ, ଲମ୍ବାଦାଢ଼ି, ଏବଂ ଆଖି ଦୁଇଟି ଗୋଲାକାର ଓ ରକ୍ତବର୍ଣ୍ଣ ଥିଲା । ସେ ବିନୀତ-ଭାବେ ଋଷିମାନଙ୍କୁ ପଚାରିଲା —ଆଜ୍ଞା, ମୁଁ କଣ କରିବି ?

ଋଷିମାନେ ଭାବିଲେ ଏହି ପୁରୁଷ ରାଜା ହେବା ପାଇଁ ଅଯୋଗ୍ୟ । ତାକୁ କହିଲେ—ତୁମେ ବସିଯାଅ । ଏହା ଶୁଣି ପୁରୁଷଟି ଉତ୍ତର ଦେଲା—ଆଜ୍ଞା, ମୁଁ ତ ବସିଛି । କିନ୍ତୁ ମୋର ନାମ, କାମ ଓ ରହିବା ସ୍ଥାନ କୁହନ୍ତୁ ।

ଜଣେ ଋଷି କହିଲେ—ଦେଖ, ତୁମକୁ ଆମେ ନିଷୀଦ ବା ବସିଯାଅ ବୋଲି କହିଲୁ, ତେଣୁ ତୁମର ନାମ ହେଲା ନିଷାଦ । ମହାରାଜ ବେନଙ୍କ ଅଙ୍ଗରୁ ଜନ୍ମ ହୋଇଥିବାରୁ ତୁମେ ବଣ ପାହାଡ଼ର ରାଜା ହେବ ଏବଂ ବେନଙ୍କ ପାପଭାଗରୁ ଉତ୍ପନ୍ନ ହେବାରୁ ତୁମେ କୃଷ୍ଣବର୍ଣ୍ଣବିଶିଷ୍ଟ ହେବ । ନଦୀ, ବନ, ପର୍ବତରେ ତୁମେ ବାସ କରିବ । ଧନୁ ତୀର ଧରି ହିଂସ୍ର ବ୍ୟାଘ୍ର, ପଶୁ, ପକ୍ଷୀଙ୍କ ସହିତ ଯୁଦ୍ଧ କରି ଜୀବନ କଟାଇବ । ସାଗର ଓ ନଦୀରେ ଲୋକଙ୍କୁ ପାରିହେବାରେ ସାହାଯ୍ୟ କରିବ । ତୁମ ଗୋଷ୍ଠୀର ଭକ୍ଷ୍ୟ ଅଭକ୍ଷ୍ୟ ନିୟମ କିଛି ରହିବ ନାହିଁ । ରାମରାମ ସ୍ମରଣ କରି ସମୟ କଟାଇବ । ସ୍ୱୟଂ ପରମାତ୍ମା ତୁମ ବଂଶୋତ୍ପନ୍ନ ରାଜାଙ୍କ ସହିତ ମିତ୍ରତା କରିବେ ଏବଂ ସେହି ରାଜା ତାଙ୍କୁ ଗଙ୍ଗା ପାରି କରାଇବେ । ଏହା ଶୁଣି ନିଷାଦ ବଣକୁ ଚାଲିଗଲା ।

ମୈତ୍ରେୟ ମୁନି କହିବାକୁ ଲାଗିଲେ ପୃଥିବୀରେ ସେହି ନିଷାଦ ବଂଶଜମାନେ କୋହ୍ଲି, ଭିଲ, ଗଣ୍ଡ, ଧୀବର, କେଉଟ ଆଦି ଅନେକ ଗୋଷ୍ଠୀରେ ବିଭକ୍ତ ହେଲେ । ସେମାନଙ୍କ ମଧ୍ୟରୁ ଅନେକ ବନ ଅରଣ୍ୟରେ ଘରଦ୍ୱାର କରି ରହିଲେ । ଅନେକ ଗ୍ରାମ, ନଗରରେ ରହି କୃଷି ଡଙ୍ଗାବାହିବା ଆଦି କାର୍ଯ୍ୟଦ୍ୱାରା ଜୀବିକା ନିର୍ବାହ କଲେ । ଏହାପରେ ବେନଙ୍କ ଦେହ ଯେତେବେଳେ ଶୁଦ୍ଧ ହୋଇଗଲା

ସେତେବେଳେ ଇନ୍ଦ୍ରଙ୍କ ଆଶ୍ରୟଭୂତ ବାହୁ ଦୁଇଟିକୁ ମୁନିମାନେ ମନ୍ଥନ କଲେ । ଏହି ମନ୍ଥନରୁ ଦକ୍ଷିଣ ବାହୁରୁ ଜଣେ ତେଜସ୍ୱୀ ପୁରୁଷ ଓ ବାମ ବାହୁରୁ ଜଣେ ପ୍ରଭାମୟୀ ସୁନ୍ଦରୀ ନାରୀ ଆବିର୍ଭୂତ ହେଲେ । ଲକ୍ଷଣ ଦେଖି ମୁନିଗଣ କହିଲେ —ଏ ପୁରୁଷ ହେଉଛନ୍ତି ସ୍ୱୟଂ ନାରାୟଣ । ତାଙ୍କ ଦେହରେ ଅବତାରର ସମସ୍ତ ଚିହ୍ନ ପ୍ରକାଶିତ । ତାଙ୍କ ସହିତ ଶକ୍ତିଭୂତା ଆଦ୍ୟାଶକ୍ତି ମଧ୍ୟ ମର୍ତ୍ତ୍ୟରେ ଆସିଛନ୍ତି । ସୂର୍ଯ୍ୟଙ୍କ ସହିତ ପ୍ରଭା ରହିଲା ପରି ଆଦ୍ୟଶକ୍ତି ଲକ୍ଷ୍ମୀ ପୁରାଣ ପୁରୁଷଙ୍କୁ ଛାଡ଼ି କେବେ ରହିପାରନ୍ତି ନାହିଁ ।

ଭଗବାନ୍ ଯେଉଁଠି ଅବତୀର୍ଣ୍ଣ ହୁଅନ୍ତି ପଛେ ଲକ୍ଷ୍ମୀ ତାଙ୍କର ଅନୁଗମନ କରନ୍ତି । ବର୍ତ୍ତମାନ ଲୋକମାନଙ୍କର ସମସ୍ତ ଦୁଃଖ ଦୂରହେଲା । ଜଗତରୁ ଅଧର୍ମ ଲୋପ ପାଇ ଧର୍ମବୃଦ୍ଧି ହେବ । ପୁଣି ସ୍ୱାହା ସ୍ୱଧାର ଶାନ୍ତ ମଧୁର ଧ୍ୱନିରେ ଭୂମଣ୍ଡଳ ଗୁଞ୍ଜରି ଉଠିବ । ଏହି ମହାପୁରୁଷ ଯଶସ୍ୱୀ ରାଜା ପୃଥୁ ନାମରେ ବିଖ୍ୟାତ ହେବେ ଆଉ ଲକ୍ଷ୍ମୀ ଅଂଶ ସମ୍ଭୂତା ଦେବୀ ଅର୍ଚ୍ଚି ନାମରେ ପରିଚିତା ହେବେ । ଏହି ସମୟରେ ଆକାଶରୁ ପୁଷ୍ପବୃଷ୍ଟି ହେବାକୁ ଲାଗିଲା । ବ୍ରାହ୍ମଣମାନେ ଅତି ଆନନ୍ଦରେ ସମ୍ବର ବେଦ ମନ୍ତ୍ର ପଢ଼ିବାକୁ ଲାଗିଲେ । ଅପ୍ସରାଗଣଙ୍କ ନୃତ୍ୟ ସହିତ ଗନ୍ଧର୍ବଙ୍କ ଶଙ୍ଖ, ତୂରୀ, ମୃଦଙ୍ଗ, ଦୁନ୍ଦୁଭି ଓ ଅନ୍ୟାନ୍ୟ ମଙ୍ଗଳ ସୂଚକ ବାଦ୍ୟମାନ ବାଜି ଉଠିଲା । ସ୍ୱର୍ଗର ଦେବଗଣଙ୍କ ସହିତ ସପ୍ତର୍ଷି, ପିତାମହ ବ୍ରହ୍ମା, ଇନ୍ଦ୍ରାଦି ଲୋକପାଳ ବେନକୁମାର ପୃଥୁଙ୍କୁ ଦର୍ଶନ କରିବା ପାଇଁ ଆସି ପହଞ୍ଚିଲେ । ପୃଥୁଙ୍କ ହାତରେ ଥିବା ଦିବ୍ୟ କମଳ ଚିହ୍ନ ଦେଖି ସମସ୍ତେ ଆନନ୍ଦିତ ହେଲେ ଏବଂ ପୃଥୁ ଶ୍ରୀହରିଙ୍କ ଅଂଶାବତାର ବୋଲି ଜାଣି ପାରିଲେ । ଲୋକପିତାମହ ବ୍ରହ୍ମାଙ୍କଠାରୁ ସମର୍ଥନ ପାଇ ଏବଂ ପୃଥୁଙ୍କ ଅଭିଷେକ ପ୍ରସ୍ତାବ ଶୁଣି ମୁନିଋଷିଗଣ ଆନନ୍ଦ ଲାଭ କଲେ ।

## ଛପ୍‌ପୟ

"ବିପ୍ରବୃନ୍ଦ କରି ବେଦଗାନ ହିୟମହଁ ଅତି ହୁଲସେଂ ।
ଧେନୁ ଦୁଗ୍‌ଧ କୀ ଧାର ବହାଓଁ ସରସିଜ ବିକସେଂ ।।
ସ୍ୱର୍ଗ ଲୋକତେଂ ସିଦ୍ଧ, ପତରି, ସୁର, ମୁନି, ମିଲି ଆୟେ ।
ଭୟେ ଚରାଚର ସୁଖୀ ଚହୁଁ ଦିଶି ବଜତ ବଧାୟେ ।।
କମଲାସନ ବିଧି ଚରଣ କର, ଲଖି ଲକ୍ଷଣ ପ୍ରମୁଦିତ ଭୟେ ।
ପ୍ରକଟେ ପ୍ରଭୁ ପୃଥୁ ରୂପ ମହଁ, ସତ୍‌ଲୋକ ଯୋଁ କହି ଗୟୋ ।।"

# ମହାରାଜ ପୃଥୁଙ୍କ ରାଜ୍ୟାଭିଷେକ

"ତସ୍ୟାଭିଷେକ ଆରବ୍‌ଧୋ ବ୍ରାହ୍ମଣୈର୍ବ୍ରହ୍ମବାଦିଭିଃ ।
ଅଭିଷେଚନିକାନ୍ୟସ୍ମୈ ଆଜହ୍ରୁଃ ସର୍ବତୋ ଜନାଃ ॥
ସରିତ୍ ସମୁଦ୍ରା ଗିରୟୋ ନାଗା ଗାବଃ ଖଗା ମୃଗାଃ ।
ଦ୍ୟୌଃକ୍ଷିତିଃ ସର୍ବଭୂତାନି ସମାଜହ୍ରୁରୁପାୟନମ୍ ॥"

(ଭାଗବତ-୪ର୍ଥ ସ୍କନ୍ଧ-୧୫ ଅଧ୍ୟାୟ-୧୨ଶ୍ଲୋକ)

## ଛପ୍‌ପୟ

"ମିଳିକେଂ ମୁନି ବେଦଜ୍ଞ କରନ୍ତି ଅଭିଷେକ ଲଗେ ତବ ।
ବାଜେଂ ତୂରହୀ ଶଙ୍ଖ ରଜସୀ ସାଜ ସଜେ ସବ ॥
ଆୟେ ନଦୀ, ପହାଡ଼, ପେଡ଼, ପକ୍ଷୀ, ପଶୁ ପୟନିଧି ।
ଅସନ ବସନ ମଣି ରତ୍ନ ଭେଂଟ ଲୟେ ବର ବହୁବଧି ॥
କନକ ସିଂହାସନ ଧନଦ ଶୁଭ, ଦୟୋ ଛତ୍ର ବର ବରୁନ ନେ ।
ବାୟୁ ଦୟେ ଅତି ବର ବ୍ୟଜନ, ମାଳା ଦହ୍ନିଂ ଧରମ ନେ ।"

ଧାର୍ମିକମାନେ ସ୍ୱଭାବତଃ ସୁଗୁଣସମ୍ପନ୍ନ ହୋଇଥାନ୍ତି । ଭାଗ୍ୟବାନ୍ ଲୋକେ କେଉଁଠି କେବେ ହାତ ପାତନ୍ତି ନାହିଁ । ସମସ୍ତ ସମ୍ପତ୍ତି ସ୍ୱତଃ ସେମାନଙ୍କ ପାଖକୁ ଆସିଥାଏ; କିନ୍ତୁ ଯେଉଁମାନେ ସତ୍ୟପଥ ଛାଡ଼ନ୍ତି, ସେମାନଙ୍କର ସମସ୍ତ ଉତ୍ତମ ଗୁଣ ଉଭେଇଯାଏ । ଧର୍ମରେ ଥିବା ଲୋକର ସୁଗୁଣ ନଷ୍ଟ ହୁଏ ନାହିଁ । ଏ ବିଷୟରେ ଏକ କାହାଣୀ ଅଛି ।

ଜଣେ ଧାର୍ମିକ ରାଜା ଥିଲେ । ତାଙ୍କ ରାଜ୍ୟରେ ବେପାର ବଣିଜ ପ୍ରସାର ଲାଭ କରି ନ ଥିଲା; ତେଣୁ ପ୍ରଜାମାନଙ୍କ ସୁବିଧା ପାଇଁ ସେ ନିଜ ନଗର ନିକଟରେ

ଏକ ହାଟ ବସାଇବାର ବ୍ୟବସ୍ଥା କଲେ । ସେ ଏକ ଆଦେଶନାମା ଜାରି କଲେ । ଯାହାର ଯେଉଁ ଜିନିଷ ବିକ୍ରି ନ ହେବ ସେ ସବୁ ଜିନିଷ ରାଜ୍ୟପକ୍ଷରୁ କିଣି ନିଆଯିବ । ଏହି ଲୋଭରେ ବହୁ ବ୍ୟବସାୟୀ ବ୍ୟବସାୟ ପାଇଁ ହାଟକୁ ଆସିଲେ । ପରେ ଜଣେ ବ୍ୟବସାୟୀ ଏକ ଲୁହା ମୂର୍ତ୍ତି ନେଇ ବିକିବାକୁ ଆସିଲା । ସମସ୍ତେ ସେ ମୂର୍ତ୍ତିର ନାମ, ଦାମ ପଚାରନ୍ତି । ସେ କହେ—ଏ ମୂର୍ତ୍ତିର ନାମ ଦରିଦ୍ରଦେବ । ଏହାର ଦାମ୍ ଏକଲକ୍ଷ ଟଙ୍କା । ଯେ ଏହି ମୂର୍ତ୍ତିକୁ ନେବ, ତା'ର ସମସ୍ତ ଧନ ସମ୍ପତ୍ତି ଉଭେଇ ଯିବ । ଏପରି ଅଶୁଭ ମୂର୍ତ୍ତିକୁ ନେବ କିଏ ? ସମସ୍ତେ ଦେଖନ୍ତି ଓ ଫେରିଯାନ୍ତି । ରାତି ହେଲା, ହାଟ ବନ୍ଦ ହେବାର ସମୟ ହୋଇଗଲା । ରାଜକର୍ମଚାରୀ ଜଣେ ପଚାରିବାକୁ ଆସିଲେ, କାହାର କ'ଣ ବିକ୍ରି ନ ହୋଇ ରହିଲା । ଏମିତି ପଚାରି ପଚାରି ସେ ଆସି ସେହି ମୂର୍ତ୍ତି ବିକୁଥିବା ଲୋକ ପାଖରେ ପହଞ୍ଚିଲେ । ଲୋକଟି ରାଜକର୍ମଚାରୀଙ୍କୁ ପୂର୍ବପରି ଉତ୍ତର ଦେଲା । ରାଜକର୍ମଚାରୀ ହଡ଼ବଡ଼େଇଗଲେ । ସେ ଫେରିଯାଇ ରାଜାଙ୍କୁ ସମସ୍ତ କଥା ଜଣାଇଲେ ।

ମହାରାଜ ପଚାରିଲେ—କଣ, ସେ ମୂର୍ତ୍ତି ବିକିବାକୁ ଆଣିଥିଲା ? ତା' ହେଲେ ବିକ୍ରି ହେଲା ନାହିଁ କାହିଁକି ? ରାଜାସେବକ ଉତ୍ତର ଦେଲେ—ମହାରାଜ ! ଯେଉଁ ମୂର୍ତ୍ତିର ଦାମ୍ ଲକ୍ଷେ ଟଙ୍କା ଏବଂ ଯାହାକୁ ନେଲେ ଲୋକର ସମସ୍ତ ଐଶ୍ୱର୍ଯ୍ୟ ନଷ୍ଟ ହେବ ସେପରି ଜିନିଷକୁ ନେବ କିଏ ?

ମହାରାଜ କହିଲେ—ସେ ଲୋକ ମୂର୍ତ୍ତିଟି ବିକିବାକୁ ଆଣିଥିଲା । ମୂର୍ତ୍ତିଟି ବିକ୍ରି ହେଲା ନାହିଁ । ତୁମେ ତ ନିୟମ ଅନୁସାରେ କିଣି ଆଣିଥାନ୍ତ । ଏଥିରେ ପଚାରିବାର ଆବଶ୍ୟକତା କଣ ଥିଲା ?

ସେବକ ଉତ୍ତର ଦେଲା—ମହାରାଜ ! ସେହି ମୂର୍ତ୍ତିଟି କିଣିଲେ ଲାଭ କଣ ହେବ ?

ମହାରାଜ ଦୃଢ଼ ସ୍ୱରରେ କହିଲେ—କି ଲାଭ ? ଧର୍ମଲାଭ । ଏହାଦ୍ୱାରା ନିଜର ପ୍ରତିଜ୍ଞା ପାଳିତ ହେବ, ଏତିକି ତ ଲାଭ ହେବ । କେବଳ ପଇସା କଉଡ଼ି ଲାଭକୁ କଣ ଲାଭ କୁହାଯାଏ ? ନିଜର ପ୍ରତିଶ୍ରୁତି ରକ୍ଷା ସବୁଠୁ ବଡ଼ କାର୍ଯ୍ୟ । ତୁମେ ଯଥାଶୀଘ୍ର ଯାଇ ସେ ଲୋକକୁ ଲକ୍ଷେ ଟଙ୍କା ଦେଇ ମୂର୍ତ୍ତିଟି ନେଇଆସ । ସେବକମାନେ ରାଜାଙ୍କ ଆଦେଶ ଅନୁସାରେ ମୂର୍ତ୍ତିଟି ଆଣି ଅନ୍ତଃପୁରରେ ରଖିଦେଲେ ।

ମହାରାଜ ରାତିରେ ନିଜ ଶୟନ କକ୍ଷରେ ଶୋଇଥିଲେ । ଅଧରାତିରେ ସେ ଦେଖିଲେ ଏକ ସୁନ୍ଦରୀ ସ୍ତ୍ରୀ ତାଙ୍କ ମୁଣ୍ଡ ପାଖରେ ଠିଆ ହୋଇଛି । ରାଜା ସମ୍ଭ୍ରମର

ସହିତ ଶେଯରୁ ଉଠିପଡ଼ି ଠିଆ ହେଲେ ଏବଂ ସଲଜ୍ଜଭାବେ ମଧୁର ସ୍ୱରରେ ପଚାରିଲେ —ଦେବୀ ! ଆପଣ କିଏ ? ଏଠାରେ କାହିଁକି ଠିଆ ହୋଇଛନ୍ତି ? ମୋ ସହିତ କଣ କିଛି କାମ ଅଛି ?

ସ୍ତ୍ରୀ ଲୋକଟି ଉତ୍ତର ଦେଲା—ରାଜନ ! ମୁଁ ଆପଣଙ୍କର ରାଜଲକ୍ଷ୍ମୀ । ଆପଣଙ୍କ ଘରକୁ ଦରିଦ୍ର ଦେବତା ଆସିଗଲେ । ଦରିଦ୍ର ଯେଉଁଠି ରହନ୍ତି ମୁଁ ସେଠାରେ ରହିପାରେ ନାହିଁ । ତେଣୁ ମୁଁ ବିଦାୟ ନେବାପାଇଁ ଆସିଛି ।

ଏହା ଶୁଣି ରାଜା କହିଲେ—ଆପଣଙ୍କ ଇଚ୍ଛା ଯାହା ହେଉଛି ତାହା କରନ୍ତୁ । ଏହା କହିବାମାତ୍ରେ ଲକ୍ଷ୍ମୀ ଅନ୍ତର୍ଦ୍ଧାନ ହୋଇଗଲେ । ପୁଣି କିଛି ସମୟ ପରେ ଜଣେ ପୁରୁଷ ଆସିଲା । ରାଜା ପଚାରିଲେ – ଆପଣ କିଏ ?

ସେହି ପୁରୁଷ ଉତ୍ତର ଦେଲା—ମୁଁ ହେଉଛି ଯଶ । ଯେଉଁଠି ଲକ୍ଷ୍ମୀ ନାହାନ୍ତି ମୁଁ ବି ସେଠାରେ ରହେନାହିଁ । ମୁଁ ଯାଉଛି ।

ରାଜା କହିଲେ—'ଆପଣଙ୍କ ଇଚ୍ଛା ।' ଏହିପରି ଯଥାକ୍ରମେ ଐଶ୍ୱର୍ଯ୍ୟ, କୀର୍ତ୍ତି, ତୁଷ୍ଟି, ସନ୍ତୋଷ, ଶୌର୍ଯ୍ୟ, ବୀର୍ଯ୍ୟ ସମସ୍ତେ ରାଜାଙ୍କଠାରୁ ବିଦାୟ ନେଇ ଚାଲିଗଲେ । ସମସ୍ତେ କହିଲେ —'ମହାରାଜ ! ଲକ୍ଷ୍ମୀ ଯେଉଁଠି ଥାଆନ୍ତି ସେଠାରେ ସମସ୍ତ ସଦ୍‌ଗୁଣ ରହେ । ଲକ୍ଷ୍ମୀବାନ ପୁରୁଷ ଗୁଣବାନ ହୋଇଯାଏ ! ତେଣୁ ଆମେମାନେ ଆପଣଙ୍କୁ ବାଧ୍ୟ ହୋଇ ଛାଡ଼ି ଚାଲିଯାଉଛୁ ।' ସମସ୍ତଙ୍କ ପରେ ଆସିଲେ ଧର୍ମ । ସେ କହିଲେ—ମହାରାଜ ! ମୁଁ ହେଉଛି ଧର୍ମ । ସମସ୍ତ ସଦ୍‌ଗୁଣ ଆପଣଙ୍କଠାରୁ ଚାଲିଗଲା । ଲକ୍ଷ୍ମୀ ମଧ୍ୟ ଚାଲିଗଲେ । ତେଣୁ ମୋତେ ଆପଣ ବିଦାୟ ଦିଅନ୍ତୁ ।

ରାଜା ଦୃଢ଼ ସ୍ୱରରେ କହିଲେ—ନାଁ, ତା' କେବେ ହୋଇପାରିବ ନାହିଁ । ସମସ୍ତେ ଗଲେ ମଧ୍ୟ ମୋର ଚିନ୍ତା ନାହିଁ, କିନ୍ତୁ ମୁଁ ଆପଣଙ୍କୁ ଛାଡ଼ିପାରିବି ନାହିଁ । ଏ ଜୀବନ ବିନିମୟରେ ମୁଁ ଆପଣଙ୍କୁ ରକ୍ଷା କରିବି । ଆପଣଙ୍କ ପାଇଁ ମୁଁ ଜାଣିଶୁଣି ଦରିଦ୍ରଦେବଙ୍କୁ ଆଣିଲି । କେବଳ ଆପଣଙ୍କ ପାଇଁ ଏସବୁ ଘଟିଲା । ଆପଣ କେବେ-ହେଲେ ଯାଇପାରିବେ ନାହିଁ । ଏହା କହି ରାଜା ଧର୍ମଙ୍କୁ ଜାବୁଡ଼ି ଧରିଲେ ।

ଧର୍ମଦେବତା ହସି ହସି କହିଲେ—ମହାରାଜ ! ଆପଣ ମୋତେ ଏତେ ସ୍ନେହ କରୁଛନ୍ତି, ମୁଁ ଆପଣଙ୍କୁ ଛାଡ଼ିଯିବି କିପରି ? ଯେ ମୋତେ ରକ୍ଷାକରେ ମୁଁ ତାକୁ ରକ୍ଷାକରେ । ଲୋକେ ଧନବାନ, ଗୁଣବାନ ହେବା ପରେ ଲୋଭବଶତଃ ଧର୍ମତ୍ୟାଗ କରନ୍ତି । ଲକ୍ଷ୍ମୀ ଓ ସଦ୍‌ଗୁଣ ସମୂହ ଚାଲିଗଲେ ମଧ୍ୟ ଆପଣ ମୋତେ

ଛାଡ଼ିଲେ ନାହିଁ । ତେଣୁ ମୁଁ ବି ଆପଣଙ୍କୁ ଛାଡ଼ିପାରିବି ନାହିଁ । ମୁଁ ରହିଲେ ସଦ୍‌ଗୁଣ ଗୁଡ଼ିକ ଫେରି ଆସିବେ । ଧର୍ମ ରହିବାରୁ ସଦ୍‌ଗୁଣ ଓ ରାଜଲକ୍ଷ୍ମୀ ଫେରି ଆସିଲେ । ତେଣୁ କେବଳ ଧର୍ମରକ୍ଷା ଦ୍ୱାରା ପୁରୁଷ ସମସ୍ତ ସମ୍ପତ୍ତି ଓ ସଦ୍‌ଗୁଣର ଅଧିକାରୀ ହୁଏ ।

ମୈତ୍ରେୟ ମୁନି କହିଲେ—ହେ ବିଦୁର ! ଅଧମ ଚରିତ୍ର ହୋଇଥିବାରୁ ବେନ ଉପରେ ଦେବତା, ଋଷି, ମନୁଷ୍ୟ, ପଶୁ, ପକ୍ଷୀ ସମସ୍ତେ ଅସନ୍ତୁଷ୍ଟ ଥିଲେ । ସମସ୍ତେ ଧୀରେ ଧୀରେ ତାକୁ ଛାଡ଼ି ଚାଲିଗଲେ । ଅଧାର୍ମିକ ପାଖରେ କିଏ ରହିପାରିବ ? ଭଗବାନଙ୍କ ନିନ୍ଦା କରିବାରୁ ବେନ ହତପ୍ରାୟ ହୋଇସାରିଥିଲା । ତେଣୁ ତେଜ, ଐଶ୍ୱର୍ଯ୍ୟ, ପ୍ରଭାବ କେହି ତା' ପାଖରେ ରହିଲେ ନାହିଁ । ବର୍ତ୍ତମାନ ପୃଥୁ ଜନ୍ମହେବା ପରେ ପରେ ଧର୍ମର ଆଶ୍ରୟ ନେଲେ । ଧର୍ମ ହେଉଛି ପ୍ରଭୁଙ୍କ ହୃଦୟସ୍ଥ ସଦ୍‌ଗୁଣ । ଧର୍ମସଂସ୍ଥାପନା ପାଇଁ ଭଗବାନ୍ ଅଂଶାବତାର, ବ୍ୟୂହାବତାର, ବିଭବାବତାର, କଳାବତାର, ଆବେଶାବତାର ଆଦି ଅବତାର ଗ୍ରହଣ କରନ୍ତି । ଧର୍ମସ୍ଥାପନା ଓ ପ୍ରଜାମାନଙ୍କୁ ଧର୍ମାନୁଗାମୀ କରିବା ଏହି ଅବତାର ମାନଙ୍କର ମୂଳ-ଲକ୍ଷ୍ୟ । ଧର୍ମରକ୍ଷା ଫଳରେ ସମସ୍ତ ଐଶ୍ୱର୍ଯ୍ୟ ଆପେ ଆପେ ଉପସ୍ଥିତ ହେଲା । ରାଜଯୋଗ୍ୟ ଉପହାରମାନ ଆସି ପହଞ୍ଚିଲା । ସମସ୍ତେ ନିଜ ଶକ୍ତି ଅନୁସାରେ ଉପହାର ସମର୍ପଣ କରି ମହାରାଜ ପୃଥୁଙ୍କ ରାଜକୀୟ ଶକ୍ତିର ଅଭିବୃଦ୍ଧି ସାଧନା କରିଥିଲେ ।

ପ୍ରଥମେ କୁବେର ଦେଲେ ରାଜସିଂହାସନ । ବେଦବିଦ୍ ବ୍ରାହ୍ମଣମାନେ ଖୁବ୍ ଆଡ଼ମ୍ବର ସହକାରେ ସେହି ସିଂହାସନରେ ପୃଥୁଙ୍କୁ ଅଭିଷେକ କରିଥିଲେ । ସାତ ସମୁଦ୍ରର ଜଳରେ ତାଙ୍କୁ ସ୍ନାନ କରାଯାଇଥିଲା । ଯଥାବିଧି ମାଙ୍ଗଳିକ ଉତ୍ସବ ଅନୁଷ୍ଠାନ ହୋଇଥିଲା । ସମସ୍ତେ ମିଶି ପୃଥୁଙ୍କୁ ରାଜା କରାଇଥିଲେ । ମହାରାଜ ପୃଥୁ ନାନା ପ୍ରକାର ଅଳଙ୍କାରରେ ମଣ୍ଡିତ ହୋଇ ପତ୍ନୀ ଅର୍ଚ୍ଚିଙ୍କ ସହିତ ସିଂହାସନରେ ବସିଲେ । ବରୁଣ ଏକ ଦିବ୍ୟ ଛତ୍ର ଅର୍ପଣ କରିଥିଲେ । ବାୟୁଦେବତା ଦେଲେ ଚାମର ସେହିପରି ଅନ୍ୟ ଦେବତା, ଗନ୍ଧର୍ବ, ମନୁଷ୍ୟ ସମସ୍ତେ କିଛି ନା କିଛି ଉପହାର ମହାରାଜ ପୃଥୁଙ୍କୁ ଦେଇଥିଲେ । ଧର୍ମଦେବତା ପ୍ରସନ୍ନ ହୋଇ ଏକ ମାଳା, ଇନ୍ଦ୍ର ଏକ ମନୋହର ମୁକୁଟ, ଦଣ୍ଡଧର ଯମ ଏକ ଦଣ୍ଡ, ବ୍ରହ୍ମା ଏକ କବଚ ପୃଥୁଙ୍କୁ ସମର୍ପଣ କଲେ । ବିଷ୍ଣୁ ଦେଲେ ସୁଦର୍ଶନ ଚକ୍ର । ଶିବ ଦଶ ଚନ୍ଦ୍ର ଚିହ୍ନରେ ଚିହ୍ନିତ ଏକ ଖଡ୍‌ଗ ଦେଲେ । ପାର୍ବତୀ ଶତଚନ୍ଦ୍ର ଚିହ୍ନ ଅଙ୍କିତ ଏକ ଢାଲ, ଚନ୍ଦ୍ର ଦେଲେ ଅଶ୍ୱ, ତ୍ୱଷ୍ଟା ରମଣୀୟ ରଥ, ଅଗ୍ନି ଧନୁ, ସୂର୍ଯ୍ୟଦେବ ବାଣ, ପୃଥିବୀ କଠଉ, ସ୍ୱର୍ଗ ଦିବ୍ୟ ପୁଷ୍ପ, ଗନ୍ଧର୍ବ, ଗୁହ୍ୟକ ଓ ସିଦ୍ଧଗଣ ଗୀତ, ନୃତ୍ୟ, ବାଦ୍ୟ,

ଋଷିଗଣ ଆଶୀର୍ବାଦ ଓ ସମୁଦ୍ର ଶଙ୍ଖ ପ୍ରଭୃତି ଦ୍ରବ୍ୟ ଉପହାର ସ୍ୱରୂପ ମହାରାଜ ପୃଥୁଙ୍କୁ ପ୍ରଦାନ କରିଥିଲେ ।

ମହାରାଜ ପୃଥୁ ସମସ୍ତଙ୍କର ଉପହାର ସ୍ୱୀକାର କରି ଯଥାର୍ଥ ଭାବେ ରାଜା ହୋଇଥିଲେ । ପୂର୍ବରୁ ରାଜାମାନେ ନିଜର ଶୌର୍ଯ୍ୟ ବୀର୍ଯ୍ୟଦ୍ୱାରା ରାଜସିଂହାସନ ଅଧିକାର କରୁଥିଲେ । ରାଜା ନିର୍ବାଚନରେ ପ୍ରଜାମାନେ ହସ୍ତକ୍ଷେପ କରୁ ନ ଥିଲେ । ରାଜା ଓ ମନ୍ତ୍ରୀ ମିଳିତ ଭାବେ ଯାହାଇଚ୍ଛା ତାହା କରୁଥିଲେ । କିନ୍ତୁ ମହାରାଜ ପୃଥୁଙ୍କୁ ସମସ୍ତେ ମିଶି ରାଜା କରାଇଥିଲେ । ପ୍ରଜାମାନଙ୍କର ଦୁଃଖ ଦୁର୍ଦ୍ଦଶା ଦୂର କରି ସେମାନଙ୍କ ଧନ ଜୀବନ ରକ୍ଷା କରିବା ଏବଂ ଅଭାବ ଅସୁବିଧା ଦୂର କରିବା ପାଇଁ ମହାରାଜ ପୃଥୁ ଦାୟିତ୍ୱ ନେଲେ । ତାଙ୍କୁ ରାଜା କରାଇବାର ତାହା ହିଁ ମୁଖ୍ୟ ଉଦ୍ଦେଶ୍ୟ ଥିଲା । ମହାରାଜ ପୃଥୁ ପ୍ରଜାମାନଙ୍କ କଲ୍ୟାଣ ସାଧନା ପାଇଁ ନାନା ପ୍ରକାର ଉନ୍ନତିକର କାର୍ଯ୍ୟ କରୁଥିଲେ । ସେ ବହୁ ନଗର ପ୍ରତିଷ୍ଠା ଓ ନଗର ଜୀବନର ସୁପରିଚାଳନା ପାଇଁ ବହୁ ଉପଦେଷ୍ଟା ସମିତି ଗଠନ କରିଥିଲେ । ସେ ଆଜି ରାଜା ନାମରେ ଅଭିହିତ ହୋଇଥିଲେ ।

ମୈତ୍ରେୟ କହିଲେ—ମହାରାଜ ପୃଥୁଙ୍କ ରାଜ୍ୟାଭିଷେକ ପରେ ସୂତ ଓ ମାଗଧଗଣ ତାଙ୍କର ସ୍ତୁତିଗାନ କରିଥିଲେ ।

## ଛପ୍‌ପୟ

"ଲୋକପାଲ ସୁରପାଲ ସବନି ମିଲି ସେବା କୀହ୍ନୀଁ ।
ଜା ପୈ ଜୋ ବର ବସ୍ତୁ ହତୀ ତାନେଂ ସୋ ଦୀହ୍ନୀଂ ।।
ସ୍ୱୀକାରେ ଉପହାର କୋର୍ ଉୟୌ ସମ୍ମାନ ସବନି କୋ ।
ପ୍ରଜାପାଲ ପ୍ରଭୁ ଭୟେ ବଢ଼୍ୟୌ ଉତ୍ସାହ ମୁରନି କୋ ।।
ସିଂହାସନ ଆସୀନ ପୃଥୁ, ସୁର ନର ଋଷି ମୁନି ମନ ହରତ ।
ଉମଡ଼୍ୟୌ ଆନନ୍ଦ ଦରଶୌ ଦଶି, ହ୍ୱୟ ହରଷିତ ଜୟ ଜୟ କରତ"



# ମହାରାଜ ପୃଥୁଙ୍କ ସ୍ତୁତିଗାନ

"ନାଲଂ ବୟଂ ତେ ମହିମାନୁବର୍ଣ୍ଣନେ
ଯୋ ଦେବବର୍ଯ୍ୟୋଽବତତାର ମାୟୟା ।
ବେନାଙ୍ଗଜାତସ୍ୟ ଚ ପୌରୁଷାଣି ତେ
ବାଚସ୍ପତୀନାମପି ବଭ୍ରମୁର୍ଧିୟଃ ॥"
(ଭାଗବତ—୪ର୍ଥ ସ୍କନ୍ଧ-୧୬ ଅଧ୍ୟାୟ-ଶ୍ଳୋକ ୨ )

## ଛପ୍‌ପୟ

"ମିଳି ମାଗଧ ଅରୁ ସୂତ ଲଗେ ବରୁଦ୍ରାବଳି ଗାବନ ।
ତବ ଲଜ୍ଜିତ ହ୍ୱୈ ଲଗେ ତହ୍ନେ ହଁସି ପୃଥୁ ସମଝାବନ ॥
ଅରେ, ମୃଷା ଗୁନ ଗାୟ ସମୟ କ୍ୟୋଂ ବ୍ୟଥା ବିତାଓ ।
କୀର୍ତ୍ତନୀୟ ହରି ଏକ ତହ୍ନୀ କୀ କୀରତି ଗାଓ ॥
ପୌନୀ, ସୂତ, କପାସ ନହିଁ ବସ୍ତ୍ର ପ୍ରଶଂସା ହୋୟ ଜସ ।
କୀଉ ଯୋଗ୍ୟ କଛୁ କର୍‌ୟୋ ନହିଁ, କରହୁଁ ପ୍ରଶଂସା ଫେର କସ ॥"

ଏ ସଂସାରରେ ନିଜ ପ୍ରଶଂସା କାହାକୁ ଭଲ ଲାଗେନାହିଁ ? ଜ୍ଞାନୀ ତଥା ଭକ୍ତଙ୍କ କଥା ଛାଡ଼ନ୍ତୁ; କାରଣ ସେମାନଙ୍କଠାରେ ନିନ୍ଦା ପ୍ରଶଂସା ମୂଲ୍ୟହୀନ । ପ୍ରଶଂସା ସମସ୍ତଙ୍କୁ ଭଲ ଲାଗେ, ଏ କଥା ସତ; କିନ୍ତୁ ମୂର୍ଖଲୋକେ ନିଜ ପ୍ରଶଂସା ଶୁଣି ଫୁଲିଯାନ୍ତି ଆଉ ଜ୍ଞାନୀ ଲୋକେ ଲଜ୍ଜିତ ହୁଅନ୍ତି ଓ ମୁଣ୍ଡ ତଳକୁ କରନ୍ତି । ମନସ୍ୱୀ, ସାଧୁଲୋକେ ନିଜ ପ୍ରଶଂସା ଶୁଣିବା ମାତ୍ରେ ବଡ଼ ଅଡ଼ୁଆବୋଧ କରନ୍ତି ଏବଂ ଅନ୍ୟ କଥା ପକାଇ ପ୍ରଶଂସାକୁ ଏଡ଼େଇ ଯାଆନ୍ତି ।

ମୈତ୍ରେୟ ମୁନି କହିଲେ—ହେ ବିଦୁର ! ଯେତେବେଳେ ସୂତ, ମାଗଧ ମହାରାଜ ପୃଥୁଙ୍କ ସ୍ତୁତି ପାଇଁ ଉଦ୍ୟତ ହେଲେ, ସେତେବେଳେ ପୃଥୁ ସେମାନଙ୍କୁ କହିବାକୁ ଲାଗିଲେ—ମୁଁ ଜାଣେ ଆପଣମାନେ ଭଲ ଭାବରେ ସ୍ତୁତିଗାନ କରନ୍ତି ।

କିନ୍ତୁ ଯେ ପର୍ଯ୍ୟନ୍ତ ଖାଦ୍ୟସାମଗ୍ରୀ ଯୋଗାଡ ହୋଇନାହିଁ କି ଖାଦ୍ୟ ପ୍ରସ୍ତୁତ ହୋଇନାହିଁ ତା ପୂର୍ବରୁ ଖାଦ୍ୟର ପ୍ରଶଂସା କରିବା ମୂର୍ଖତା ହେବ । ତୁମେ କହିବ ଯେ ସୁନ୍ଦର ଖାଦ୍ୟ ପ୍ରସ୍ତୁତ କରେ, ତାହାର ଗୁଣଗାନ ଆମେ କରୁଁ ; କିନ୍ତୁ ଯଦି ସେ ଉତ୍ତମ ଭାବେ ତା' କାର୍ଯ୍ୟ କରି ନ ପାରିଲା, ତେବେ ଆପଣମାନଙ୍କ ପ୍ରଶଂସା ବ୍ୟର୍ଥ ହେବ ।

ମୁଁ ଜାଣେ ପ୍ରଶଂସା ଗାନ କରିବା ତୁମର ବୃତ୍ତି । ଯଦି ତୁମର ସ୍ତୁତି କରିବା ଏକ ପେଶା. ତେବେ ତୁମେ ଶ୍ରୀହରିଙ୍କ ସ୍ତୁତିଗାନ କର । ସେ ହିଁ ସ୍ତୁତିଯୋଗ୍ୟ ତଥା ପ୍ରଶଂସନୀୟ । ପବିତ୍ର କୀର୍ତ୍ତିଶାଳୀ ଜଗତ୍‌ପ୍ରଭୁ ଥାଉଁ ଥାଉଁ ସାଧାରଣ ଲୋକର ପ୍ରଶଂସା ଗାନ କିଏ କରେ ? ଯାହାର ଯେଉଁ ଗୁଣ ନାହିଁ, ତା'ର ସେହି ଗୁଣାବଳୀକୁ ପ୍ରଚାରିତ କରି ତାହାର ସମ୍ମୁଖରେ କହିବାଦ୍ୱାରା ସେ ଅପମାନ ବୋଧ କରେ, ଲଜ୍ଜିତ ହୁଏ । ଏହାଦ୍ୱାରା ତାକୁ ମୂର୍ଖ ବୋଲି ପ୍ରମାଣ କରାଯାଏ । ତୁମେ କହିବ ଏବେ ସେ ଗୁଣ ନାହିଁ; କିନ୍ତୁ ପରେ ହେବ, ତାହା ଠିକ ନୁହେଁ । ଯାହା ଏବେ ନାହିଁ ତାହା ଭବିଷ୍ୟତରେ ହେବ ବୋଲି କଳ୍ପନା କରି ପ୍ରଶଂସା ଗାନ କରିବା ଓ ସେ ପ୍ରଶଂସା ବାଣୀ ଶୁଣିବା ନିହାତି ହାସ୍ୟାସ୍ପଦ କଥା । ତେଣୁ ଆପଣମାନେ ମୋର ପ୍ରଶଂସା ଗାନ କରନ୍ତୁ ନାହିଁ । ଲୋକେ ମୋତେ ଏ ପର୍ଯ୍ୟନ୍ତ ଜାଣନ୍ତି ନାହିଁ । ସିଲାଙ୍କ ପରି ମୋ' ଗୁଣ ଗାଇବା ପାଇଁ ଆପଣମାନେ ଏତେ ତରତର କାହିଁକି ହେଉଛନ୍ତି ?

ମହାରାଜ ପୃଥୁଙ୍କ କଥା ଶୁଣି ସୂତ ମାଗଧ ମୁନିମାନଙ୍କ ଆଡକୁ ଚାହିଁଲେ । କାରଣ, ମୁନିମାନେ ତାଙ୍କୁ ସ୍ତୁତି କରିବା ପାଇଁ କହିଥିଲେ । ରାଜା ନିଷେଧ କରୁଛନ୍ତି । ତେଣୁ କାହାର ଆଦେଶ ପାଳିତ ହେବ ? ମୁନିମାନେ କହିଲେ—ଆରେ ତୁମେମାନେ ରାଜାଙ୍କ କଥାରେ ଭାଳିଗଲ ନା କଣ ? ଆମ କଥାରେ କ'ଣ ତୁମର ବିଶ୍ୱାସ ନାହିଁ ? ଆମେ ଯାହା କହୁଛୁ ତାହା ହିଁ ହେବ । ତ୍ରିକାଳର ଘଟଣା ଆମେ ଜାଣୁ । ଆମେ ଯେଉଁ ଗୁଣାବଳୀ ତୁମକୁ କହୁଛୁ, ସେ ସବୁ ବର୍ଣ୍ଣନା କର । ପୃଥୁ କ'ଣ ସାଧାରଣ ମଣିଷ, ସେ ପରା ଭଗବାନଙ୍କ ଅଂଶାବତାର ।

ମୁନିମାନଙ୍କଦ୍ୱାରା ଉତ୍ସାହିତ ହୋଇ ସେମାନେ ମହାରାଜ ପୃଥୁଙ୍କ ଗୁଣ ଗାନ କଲେ । ମହାରାଜ ! ଆପଣଙ୍କ ଗୁଣ ଗାନ ପାଇଁ ଆମର କଣ ସାମର୍ଥ୍ୟ ଅଛି ? ଆମର ଗୋଟିଏ ମୁହଁ । ଚତୁର୍ମୁଖ ବ୍ରହ୍ମା, ଷଣ୍ମୁଖ କାର୍ତ୍ତିକେୟ, ସହସ୍ର ମୁଖ ଅନନ୍ତ ଯେତେବେଳେ ଆପଣଙ୍କ ଗୁଣଗାନ ପାଇଁ ଅସମର୍ଥ, ସେତେବେଳେ ଆମ କଥା ପଚାରେ କିଏ ? ଆମ ଜିହ୍ୱାର ପବିତ୍ରତା ପାଇଁ ଆପଣଙ୍କର କେତୋଟି ସ୍ତୋତ୍ର ଆମେ ପଢୁଛୁ । ଆପଣଙ୍କ ଆଗାମୀ କାର୍ଯ୍ୟାବଳୀ ସମ୍ବନ୍ଧରେ ଜ୍ଞାନ ଅର୍ଜନ ପାଇଁ

ଆମର ବୁଦ୍ଧି ନାହିଁ; କିନ୍ତୁ ତ୍ରିକାଳଜ୍ଞ ମହର୍ଷିମାନେ ଯାହା କହିଛନ୍ତି ଆପଣଙ୍କ ବିଷୟରେ ଆମେ ତାହା ହିଁ ଗାନ କରୁଛୁ ।

ସଭାରେ ଉପସ୍ଥିତ ଥିବା ସଭାସଦ୍‌ବର୍ଗଙ୍କ ଦ୍ୱାରା ଉତ୍ସାହିତ ହୋଇ ସୂତ ମାଗଧ ଗାଇଲେ—ମହାରାଜ ପୃଥୁ ଅଷ୍ଟ ଲୋକପାଳଙ୍କ ତେଜ ଧାରଣ କରିବେ । ସେ ସୂର୍ଯ୍ୟଙ୍କ ପରି ଆଦାନ ପ୍ରଦାନ କରିବେ, ପୃଥିବୀ ପରି ସହିଷ୍ଣୁ ଓ ଅଗ୍ନିଙ୍କ ପରି ତେଜସ୍ୱୀ ହେବେ । ସେ ନିଜେ ହସି ଜଗତକୁ ହସାଇବେ । ସେ ମହାନ୍, ପରାକ୍ରମୀ, ତେଜସ୍ୱୀ, ଯଶସ୍ୱୀ, ବାଗ୍ମୀ ତଥା ଜ୍ଞାନୀ, ଗୁଣୀ, ସଜ୍ଜନଙ୍କ ପୃଷ୍ଠପୋଷକ ହେବେ । ବାୟୁ ପରି ସେ ସର୍ବାନ୍ତର୍ଯ୍ୟାମୀ ହେବେ । ସେ ସମଗ୍ର ଭୂମଣ୍ଡଳର ଚକ୍ରବର୍ତ୍ତୀ ରାଜା ରୂପେ ପ୍ରଜାନୁରଞ୍ଜକ, ଶରଣାଗତବତ୍ସଳ, ସତ୍ୟପରାୟଣ, ସାହସୀ, ସହନଶୀଳ, ବ୍ରାହ୍ମଣ, ଭକ୍ତ ଓ ବେଦମାର୍ଗପରିପୋଷକ, ବିଦ୍ୱଜ୍ଜନ ପୂଜିତ, ସଜ୍ଜନ ସନ୍ଲତ, ଗୁରୁଜନଙ୍କ ସେବକ, ଗୌରବବାନ୍, ସଙ୍ଗୀତବିଦ୍ୟା ନିପୁଣ ହେବେ । ପୃଥିବୀର ଅଦ୍ୱିତୀୟ ଶାସକ, ଶତଅଶ୍ୱମେଧ ଯଜ୍ଞକର୍ତ୍ତା ଭାବେ ବିଖ୍ୟାତ ହେବେ । ଦୀନଦରିଦ୍ରଙ୍କ ରକ୍ଷକ, ପ୍ରଜାମାନଙ୍କ ପିତା, ସର୍ବଗୁଣସମ୍ପନ୍ନ, ସର୍ବପ୍ରିୟ, ସର୍ବସୁଖଦାତା, ଭୟତ୍ରାତା ଓ ଆଶ୍ରୟଦାତାଭାବେ ମହାରାଜ ପୃଥୁ ସମ୍ମାନିତ ଓ ପୂଜିତ ହେବେ ।

ମୈତ୍ରେୟ ମୁନି କହିଲେ—ଏହିପରି ନାନାଭାବରେ ସ୍ତୁତି କରି ସୂତ ମାଗଧମାନେ ନୀରବ ହେଲେ । ନିୟମାନୁସାରେ ସେମାନଙ୍କୁ ପୁରସ୍କୃତ କରାଗଲା । ବ୍ରାହ୍ମଣମାନେ ସ୍ୱସ୍ତିବାଚକ କଲେ । ମନ୍ତ୍ରୀମାନେ ନୂତନ ରାଜାଙ୍କୁ ସମ୍ମାନିତ କଲେ ଏବଂ ରାଜକାର୍ଯ୍ୟ ପରିଚାଳନା ପାଇଁ ଶପଥ ନେଲେ । ପ୍ରଧାନ ପ୍ରଧାନ ରାଜକର୍ମଚାରୀମାନେ ନାନା ଉପହାର ରାଜାଙ୍କୁ ସମର୍ପଣ କଲେ । ପୁରୋହିତ ଯଥାବିଧି ଶିକ୍ଷା ଦୀକ୍ଷା ଦେଲେ । ପୁରବାସୀ ଓ ଦେଶବାସୀ ମହାରାଜ ପୃଥୁଙ୍କୁ ଯଥାରୀତି ଶ୍ରଦ୍ଧାଞ୍ଜଳି ଅର୍ପଣ କଲେ । ରାଜାଙ୍କ ପକ୍ଷରୁ ସମସ୍ତଙ୍କୁ ଯଥୋଚିତ ସତ୍କାର କରାଗଲା । ସମସ୍ତେ ବିଦାୟ ନେବା ପରେ ମହାରାଜ ପୃଥୁ ଅନ୍ତଃପୁରକୁ ଗଲେ ।

## ଛପ୍‌ପୟ

"ସୁନି ସହଚମ ସ୍ତୁତାଦି କର୍‌ୟୋ ସଙ୍କେତ ମୁନିନ ଜବ ।
ଭଜକେ ସବ ସଙ୍କୋଚ କରହିଁ ଗୁନଗାନ ହର୍ଷିତ ତବ ॥
ଯେ ହୁଂରେଅତି ସହନଶୀଲ ଶରଣାଗତବତ୍ସଲ ।
ପରମ ତେଜ ସମ୍ପନ୍ନ ଏକ ସମ ସମଟେଂ ଜଲ ଥଲ ॥
ଏକ ଛତ୍ର ଶାସକ ସକଲ, ସେବା ସବ କୀ କରଂଗେ ।
ଦୁହିତା କରି ଧରନୀ ଦୁହେଁ, କଷ୍ଟ ସବନି କୋ ହରଂଗେ ॥"



# ପୃଥିବୀ ପ୍ରତି ପୃଥୁଙ୍କ କୋପ

"ଯଦାଭିଷିକ୍ତଃ ପୃଥୁରଙ୍ଗ ବିପ୍ରୈ
ରାମନ୍ତ୍ରିତୋ ଜନତାୟାଶ୍ଚ ପାଳଃ
ପ୍ରଜା ନିରନ୍ନେ କ୍ଷିତିପୃଷ୍ଠ ଏତ୍ୟ
କ୍ଷୁତ୍‌କ୍ଷାମଦେହାଃ ପତିମଭ୍ୟବୋଚନ୍ ।"
(ଭାଗବତ-୪ର୍ଥ ସ୍କନ୍ଧ ୧୭ଆଧ୍ୟାୟ-୯ ଶ୍ଲୋକ)

## ଛପ୍‌ପୟ

"ପ୍ରଜାପାଳ ପୃଥୁ ହୋଇ ଆଇ ବୋଲେ ଜନ ସବ ଅସ ।
ପୃଥିବୀ ଦେଉ ନାହିଁ ଅନ୍ନ, କରେ ନିର୍ବାହ ନୃପତି କସ ।।
ନୃପ ସୋଚେ ସବ ବୀଜ ଭୂମି ନିଜ ଉଦର ଛପାୟୋ ।
ତାହି ତେଂ ବିନୁ ଅନ୍ନ ପ୍ରଜାଜନ ଅତି ଘବରାୟୋ ।।
ଭୂଖ ପ୍ୟାସ ପୀଡ଼ିତ ପ୍ରଜା, ପୃଥୁ ଲଖି ରୋଟ ହୁୟୋ ଲଗୀ ।
ତାନ ଧନୁଷ ମାରନ ଚଲେ, ଧେନୁ ରୂପ ଧରି ଭୂ ଭଗୀ ।।"

ଯେ ସେବା କରିବା ପାଇଁ ଅସମର୍ଥ, ସେ ପ୍ରଭୁ ହେବା ପାଇଁ ଅଯୋଗ୍ୟ ; ପ୍ରଜାମାନଙ୍କ ଦୁଃଖ ଦୁର୍ଦ୍ଦଶା ପାଇଁ ଯେ ସବୁବେଳେ ଯତ୍ନ କରେନାହିଁ, ତା'ର ରାଜା ହେବାର ଅଧିକାର ନାହିଁ । ସେପରି ରାଜାକୁ ପ୍ରଜାପାଳକ କୁହାଯାଏ ନାହିଁ । ଆଶ୍ରୟପ୍ରାର୍ଥୀ ପ୍ରଜାବର୍ଗଙ୍କ ଶକ୍ତି ଥାଇ ମଧ୍ୟ ଯେଉଁ ରାଜା ଆଶ୍ରୟ ନ ଦିଏ, ସେମାନଙ୍କୁ ବିପଦରୁ ଉଦ୍ଧାର ନ କରେ, ସେ କିପରି ଭୟତ୍ରାତା ହେବେ ? ପ୍ରଜାମାନେ ନ୍ୟାୟତଃ ରାଜାକୁ ନିଜ ଆୟର ଷଷ୍ଠାଂଶ ଦେବା ଉଚିତ । ସେହିପରି ରାଜା ମଧ୍ୟ ଦସ୍ୟୁ, ତସ୍କର, ଶତ୍ରୁ, ଦୈହିକ ଓ ଦୈବିକ ବିପତ୍ତିରୁ ପ୍ରଜାମାନଙ୍କୁ

ରକ୍ଷାକରିବା ଉଚିତ । ପ୍ରଜାମାନଙ୍କ ମତକୁ ଅବହେଳା କରି ଯେଉଁ ରାଜା ମନଇଚ୍ଛା କାର୍ଯ୍ୟ କରନ୍ତି ସେ ଯଥାଶୀଘ୍ର ରାଜତ୍ୱ ହରାଇ ବସନ୍ତି ।

ମୈତ୍ରେୟ ମୁନି କହିଲେ—ହେ ବିଦୁର ! ବେନଙ୍କ ଅଧର୍ମ ଆଚରଣ ହେତୁ ପୃଥିବୀ ଶ୍ରୀ ଓ ସୁଖ ସମୃଦ୍ଧିହୀନ ହୋଇପଡ଼ିଥିଲା । ପୃଥିବୀ ବସୁନ୍ଧରା ନାମରେ ଅଭିହିତ । ତେଣୁ ତା' ଗର୍ଭରେ ଅଗଣିତ ରତ୍ନ ଭରି ରହିଛି । ଧାର୍ମିକ ରାଜା ହେଲେ ପୃଥିବୀ ସମସ୍ତ ରତ୍ନକୁ ପ୍ରକାଶ କରେ । କିନ୍ତୁ ରାଜା ଅଧାର୍ମିକ ହେଲେ ସବୁ କିଛି ସମ୍ପଦ କୁଆଡ଼େ ଉଭେଇ ଯାଇଥାଏ । ଭାବନା ଅନୁସାରେ ଫଳ ମିଳେ । ଜଣେ ଲୋକର ଖଣ୍ଡିଏ କ୍ଷେତ ଥିଲା । ସେଥିରେ ପ୍ରଚୁର ଶସ୍ୟ ହେଉଥିଲା । ସେହି ଜମିଖଣ୍ଡକରୁ ମିଳୁଥିବା ଶସ୍ୟରେ ପରିବାରର ସମସ୍ତ ପ୍ରକାର ବାର୍ଷିକ ଖର୍ଚ୍ଚ ଚଳିଯାଉଥିଲା । ବିବାହ, ଉତ୍ସବ, ଅତିଥି ସତ୍କାର କାର୍ଯ୍ୟ ମଧ୍ୟ ତାହାରି ଭିତରେ ଚଳିଯାଉଥିଲା । ସେ ଲୋକ ମରିଯିବା ପରେ ତା' ପୁଅ ଅତି ଦୁଷ୍ଟ ହୋଇଗଲା । ଫଳରେ ସେହି ଜମିରେ ମାସେ ଚଳିଲା ପରି ଶସ୍ୟ ଉତ୍ପାଦିତ ହେଲା ନାହିଁ । ସେହି ପୃଥିବୀ, ସେହି ବିହନ ଅଛି କିନ୍ତୁ ଧାର୍ମିକ ଭାବନା ନାହିଁ । ସେଥିପାଇଁ ପୃଥିବୀର ଉର୍ବରତା ନଷ୍ଟ ହୋଇଗଲା । ଆମ ଘରକୁ ଚୋର ଆସିବାର ଜାଣିଲେ ମୂଲ୍ୟବାନ୍ ଧନରତ୍ନ ଆମେ ଗୁପ୍ତ ସ୍ଥାନରେ ଲୁଚାଇ ରଖୁ । ସେହିପରି ଦୁଷ୍ଟ ରାଜା ରାଜ୍ୟଶାସନ ଦାୟିତ୍ୱ ନେଲେ । ସମସ୍ତ ବିହନକୁ ପୃଥିବୀ ନିଜ ଭିତରେ ଲୁଚାଇ ଦିଏ । ଦୁଷ୍ଟ ବେନ ପାଇଁ ପୃଥିବୀର ଉର୍ବରତା ନଷ୍ଟ ହୋଇଯାଇଥିଲା । ତେଣୁ ଯେତେ ଯତ୍ନ କଲେ ବୀଜରୁ ଅଙ୍କୁର ଜାତ ହେଲା ନାହିଁ । ଫଳରେ ପ୍ରଜାବର୍ଗ ଅସନ୍ତୁଷ୍ଟ ହେଲେ । ଚାରିଆଡ଼େ ହାହାକାର ବ୍ୟାପିଗଲା ।

ଦେଶର ଏହି ଅବସ୍ଥାରେ ପରୋପକାରୀ ମୁନିଗଣ ବେନକୁ ମାରି ମହାରାଜ ପୃଥୁଙ୍କୁ ରାଜପଦରେ ଅଭିଷିକ୍ତ କଲେ । ପ୍ରଜାମାନଙ୍କୁ ଜଣାଇଦିଆଗଲା ଯେ, ପୃଥୁ ସେମାନଙ୍କର ପାଳକ ଓ ରକ୍ଷକ । ଏଥିରେ ପ୍ରଜାମାନେ ସନ୍ତୁଷ୍ଟ ହେଲେ । ସେମାନେ ଦଳ ଦଳ ହୋଇ ରାଜାଙ୍କ ପାଖକୁ ଆସିଲେ ଏବଂ ପୃଥିବୀର ଦୁରବସ୍ଥା କଥା ମହାରାଜ ପୃଥୁଙ୍କ ଆଗରେ ନିବେଦନ କଲେ । ସେମାନେ କହିଲେ—ପ୍ରଭୋ ! ଆମେ ଜଠରାଗ୍ନିର ଜ୍ୱାଳା ଆଉ ସହିପାରୁ ନାହୁଁ । ଆମକୁ ଏହି ପ୍ରବଳ କ୍ଷୁଧାରୁ ରକ୍ଷା କରନ୍ତୁ । ବୃକ୍ଷ କୋଟରରେ ଥିବା ପକ୍ଷୀ ଯେପରି ବୃକ୍ଷରେ ଅଗ୍ନି ଲାଗିବା ପରେ ଦଗ୍ଧିଭୂତ ହୋଇଯାଏ ଆମେ ସେହିପରି ଭୋକଦାଉରେ ସିଝି ଯାଉଛୁ । ପୃଥିବୀରେ ଶସ୍ୟ ଉତ୍ପନ୍ନ ହେଉ ନାହିଁ । କ୍ଷୁଧା ତୃଷାରେ ଆମେ ସବୁ ବ୍ୟାକୁଳ ହୋଇପଡ଼ୁଛୁ । ଆପଣ ଆମର ସ୍ୱାମୀ । ଆମକୁ ଆପଣ ଯେ କୌଣସି କାମ ଦେଇ ଆମର ଜୀବନ ରକ୍ଷା କରନ୍ତୁ ।

ମହାରାଜ କହିଲେ—ଠିକ୍ ଅଛି । ଆପଣମାନେ ନିଜ ନିଜର ଘରକୁ ଫେରିଯାଆନ୍ତୁ । ମୁଁ ଉପାୟ ଚିନ୍ତା କରୁଛି ।

ପ୍ରଜାମାନେ କହିଲେ—ନାଁ ମହାରାଜ ! ଚିନ୍ତା କଲେ କାମ ହେବ ନାହିଁ । ଆପଣ ଉପାୟ ଚିନ୍ତା କରୁ କରୁ ଆମର ଜୀବନ ଚାଲିଯିବ । ଆପଣ ଯଥାଶୀଘ୍ର କୌଣସି ଏକ କାର୍ଯ୍ୟପନ୍ଥା ଗ୍ରହଣ କରନ୍ତୁ । ସର୍ବଗ୍ରାସୀ ବୁଭୁକ୍ଷାକୁ ଦୂର କରିବା ପାଇଁ ଅବିଳମ୍ବେ କୌଣସି ଉପାୟ ବାହାର କରନ୍ତୁ । ଯେଉଁ ଉପାୟରେ ହେଉ ପଛେ ଆମକୁ ଖାଇବାକୁ ଦିଅନ୍ତୁ । ଆପଣ ଆମର ଅନ୍ନଦାତା, ଆମର ଜଠରାଗ୍ନିକୁ ଶାନ୍ତ କରନ୍ତୁ ।

ପ୍ରଜାମାନଙ୍କର କରୁଣ ନିବେଦନ ଶୁଣି ପୃଥୁ ଅତ୍ୟନ୍ତ ଦୁଃଖିତ ହେଲେ । ସେ ଭାବିଲେ—ମୋ' ରାଜ୍ୟରେ ପ୍ରଜାମାନେ ଯଦି ଏଭଳି ଉପାସରେ ରହିଲେ ତେବେ ରାଜାପଣକୁ ଧିକ୍ । ତାଙ୍କ ମନରେ ପୃଥିବୀ ଉପରେ ଭୀଷଣ କ୍ରୋଧ ଜାତ ହେଲା । ବୁଣିଥିବା ବିହନରୁ ଗଛ ବାହାରୁ ନାହିଁ, ସେଥିପାଇଁ ଦାୟୀ ହେଉଛି ପୃଥିବୀ । ଗାଈଗୁଡ଼ିକ ପେଟପୂରି ଘାସ ଖାଇବାକୁ ପାଉ ନାହାନ୍ତି । ଦୁଧ ଦେବେ କିପରି ? ଆଜି ମୁଁ ପୃଥିବୀକୁ ଉପଯୁକ୍ତ ଶିକ୍ଷା ଦେବି । ଏହା ଭାବି ସେ ଧନୁଶର ଧରି ପୃଥିବୀକୁ ମାରିବା ପାଇଁ ବାହାରିଲେ । ପୃଥିବୀ ଏହା ଦେଖି ଏକ ଗାଈ ରୂପ ଧରି ପ୍ରାଣ ଭୟରେ ଦୌଡ଼ିବାକୁ ଲାଗିଲେ ।

ଶୌନକ ପଚାରିଲେ—ହେ ସୂତ ! ପୃଥିବୀ ତ ଜଡ଼ ବସ୍ତୁ, ସେ ଦୌଡ଼ି ପଳାଇଲା କିମିତି ? ରାଜା ବି ତାକୁ ମାରିବାକୁ ବାହାରିଲେ କିମିତି ? ପୃଥିବୀ ଗାଈ ରୂପରେ ପଳାଇବାବେଳେ ଲୋକମାନେ ରହିଲେ କେଉଁଠି ? ରାଜା ବି ଦୌଡ଼ିଲେ କାହା ଉପରେ ? ଏସବୁ ବଡ଼ ଆଶ୍ଚର୍ଯ୍ୟ ଲାଗୁଛି ।

ଶୌନକଙ୍କ ପ୍ରଶ୍ନ ଶୁଣି ହସିହସି ମହର୍ଷି ସୂତ ଉତ୍ତର ଦେଲେ ମୁଁ ଦେଖୁଛି, ଆପଣ ମଧ୍ୟ କଳିଯୁଗର ଲୋକଙ୍କ ପରି ଯୁକ୍ତିତର୍କ କରିବାକୁ ଆଗେଇ ଆସିଲେଣି । ଏବେ ତ କଳିଯୁଗ ଆସିବାକୁ ବସିଲାଣି । କଳିଯୁଗ ଲୋକେ ପୃଥିବୀ କିପରି ଗାଈ ରୂପ ଧରି ଦୌଡ଼ିଲା ଏକଥା ଆଦୌ ବିଶ୍ୱାସ କରିବେ ନାହିଁ । କିନ୍ତୁ ଜଡ଼ କହିଲେ କଣ ବୁଝାଯାଏ ? ଯାହାର ଜୀବନ ନାହିଁ କି କଳନା ଶକ୍ତି ନାହିଁ ତାହାକୁ ଜଡ଼ କହନ୍ତି । ଏହା ଯଦି ସତ, ତେବେ ସବୁ ସ୍ତ୍ରୀ ପୁରୁଷ ଜଡ଼ ବୋଲି ଗୃହୀତ ହେବେ ।

ଶୌନକ କହିଲେ—ସେମାନେ ଜଡ଼ ହେବେ କାହିଁକି ? ରଜ ଓ ବୀର୍ଯ୍ୟର ସଂଯୋଗରେ ସନ୍ତାନ ସୃଷ୍ଟି ହେଉଛି, ଜନ୍ମ ଗ୍ରହଣ କରୁଛି, କାନ୍ଦୁଛି, କଥା କହୁଛି,

ଚଳାଚଳ କରୁଛି, ଦେଖୁଛି, ଶୁଣୁଛି । ଏସବୁ କି ସ୍ୱାଭାବିକ ଜଡ଼ଠାରେ ଦେଖାଯାଏ ନାହିଁ ।

ମହର୍ଷି ପୁଣି ପ୍ରଶ୍ନ କଲେ—ଆପଣ ପୃଥିବୀକୁ ଜଡ଼ କହୁଛନ୍ତି କାହିଁକି ? ଯେପରି ମାତୃଗର୍ଭରେ ସନ୍ତାନ ବଢ଼େ ସେହିପରି ପୃଥିବୀ ଗର୍ଭରେ ପଡ଼ିଥିବା ବୀଜ ଅଙ୍କୁରିତ ହୁଏ, ବଢେ, ଫୁଲଫଳ ଧରେ, ବୃକ୍ଷଲତା ପ୍ରଭୃତିର ଦେଖିବା ଶକ୍ତି ଅଛି । ତା' ହୋଇ ନଥିଲେ ଲତାଟିଏ ଗଛ ଡାଳଧରି ବଢ଼ୁଛି କିପରି ? ବୃକ୍ଷଗୁଡ଼ିକର ସ୍ୱାଭାବିକ ଶକ୍ତି ଅଛି, ନୋହିଲେ ଜଳ ପାଇବା ମାତ୍ରେ ସେଗୁଡ଼ିକ ବଢ଼ୁଛି କାହିଁକି ? ଗରମ ସ୍ପର୍ଶରେ ଶୁଖି ଯାଉଛି କାହିଁକି ? ଚାରି ପ୍ରକାର ଜୀବ ମଧ୍ୟରେ ଉଦ୍‌ଭିଦର ଗଣନା କେଉଁ ଅନାଦି କାଳରୁ ଚାଲିଆସୁଛି । ଏହି ଜୀବସମୂହକୁ ଜନ୍ମଦେଇ ଯେ ବଡ଼ କରି ଗଢ଼ୁଛି, ଆଶ୍ରୟ ଦେଉଛି ସେହି ପୃଥିବୀକୁ ଆପଣ ଜଡ଼ ବୋଲି କହୁଛନ୍ତି କାହିଁକି ?

ଜଡ଼ ନ ହୋଇ ଚେତନ ହେଲେବି ସେ ଗାଈ ରୂପ ଧରି ଦୌଡ଼ିଲା କିପରି ଏବଂ ଏତେବଡ଼ ପୃଥିବୀ ଗାଈହେଲା କିପରିବୋଲି ଶୌନକ ପଚାରିବାରୁ ସୂତ କହିଲେ —ଭଗବାନ୍ ! ଲମ୍ବା, ଗେଡ଼ା, ମୋଟା, ପତଳା ଆଦି ଶରୀର ଧର୍ମ । ଆପଣ ଜାଣନ୍ତି ଶରୀରୀ ଶରୀରଠାରୁ ପୃଥକ୍ । ଆମେ ନିଜ ନିଜକୁ ମୁଁ, ଆମେ ଆଦି କହୁଁ । ତାହା କଣ ଶରୀରକୁ ଲକ୍ଷ୍ୟ କରି କୁହାଯାଏ ? ଯୋଗୀମାନେ ନାନାପ୍ରକାର ରୂପ ଧାରଣ କରନ୍ତି । ଆମେ ଘରେ ଆଶ୍ରୟ ନେଉ । ଘରେ ରହୁଥିବାରୁ ଆମେ କଣ ଘର ପାଲଟି ଯାଉଁ ? ଯୋଗୀମାନେ ଯୋଗବଳରେ ପରକାୟ ପ୍ରବେଶ କରନ୍ତି । ଏ ବିଷୟରେ ଏକ ପ୍ରତ୍ୟକ୍ଷ ଘଟଣା କହୁଛି, ମନଦେଇ ଶୁଣନ୍ତୁ ।

ମୁଁ ଅନେକ ସମୟରେ ବଦ୍ରିନାଥ ଯାଏ । ମୋ ଗୁରୁ ଏହି ପୃଥିବୀରେ ଥାଇ ମଧ୍ୟ ସାଧାରଣ ଲୋକଙ୍କୁ ଦେଖା ଦିଅନ୍ତି ନାହିଁ । କଳିଯୁଗରେ ଲୋକେ ମଧ୍ୟ ତାଙ୍କୁ ଦେଖି ପାରନ୍ତି ନାହିଁ । କେବଳ ଭାଗ୍ୟବାନ ତାଙ୍କ ଦର୍ଶନଲାଭ କରନ୍ତି । ମୁଁ ବଦରିବନରେ ଭଗବାନ ବଦ୍ରିନାଥଙ୍କୁ ଦର୍ଶନ କରିବା ସଙ୍ଗେ ସଙ୍ଗେ ସେହି ପୁଣ୍ୟଭୂମିର ଦର୍ଶନ କରିଆସେ; କାରଣ ସେହିଠାରେ ହିଁ ଭାଗବତ କଥାର ବୀଜ ରୋପଣ କରାଯାଇଥିଲା ।

ଥରେ ମୁଁ ବଦ୍ରିନାଥ ଯାଉଥିଲି । ଅନେକ ଭକ୍ତ 'ଜୟ ବଦ୍ରିନାଥ' କହି ଚାଲୁଥିଲେ । ଧନୀଲୋକେ ନିଜର ପରିବାରବର୍ଗଙ୍କୁ ସାଙ୍ଗରେ ନେଇ ଯାଉଥିଲେ । ଜନୈକ ଶ୍ରେଷ୍ଠୀଙ୍କ ପରିବାର ମଧ୍ୟରେ ଅତି ସୁନ୍ଦର କିଶୋର ବୟସର ପୁଅଟିଏ

ଥିଲା । ପିଲାଟି ଦେଖିବାକୁ ଯେପରି ହୃଷ୍ଟପୁଷ୍ଟ ଓ ସୁନ୍ଦର ଥିଲା, ସେହିପରି ଧୀର, ସ୍ଥିର, ନମ୍ର ଓ ଧର୍ମପରାୟଣ ଥିଲା । ବାପା ତାକୁ ଖୁବ୍ ଆଦର କରୁଥିଲେ । ପୁଅର ଯେପରି ଆଦୌ କଷ୍ଟ ନ ହେବ, ସେଥିପାଇଁ ସେ ନରବାହନର ବ୍ୟବସ୍ଥା କରିଥିଲେ । ପିଲାଟି ବାପାଙ୍କ ଆଗ୍ରହ ହେତୁ ନରବାହନ ଉପରେ ବସିଥିଲା ସତ; କିନ୍ତୁ ପର୍ବତର ପ୍ରାକୃତିକ ଦୃଶ୍ୟ ଦେଖି ହୃଦୟ ତା'ର ନାଚି ଉଠୁଥିଲା । ସୁବିଧା ପାଇଲେ ବାଡ଼ିଟିଏ ଧରି ନିଜେ ପାଦରେ ଚାଲୁଥିଲା । ବୟସ ତା'ର ୧୬, ୧୭ ବର୍ଷ ହୋଇଥିବାରୁ ସେ ଖୁବ୍ ଚଞ୍ଚଳ ଥିଲା । ମନ ତା'ର ନୂଆ ନୂଆ ଜିନିଷ ଦେଖିବା ଓ ଜାଣିବା ପାଇଁ ଉଚ୍ଛନ୍ନ ହେଉଥିଲା ।

ବଦ୍ରୀନାଥ ପର୍ବତର ଚାରିଆଡ଼େ ସୁନ୍ଦର ଓ ସୁଗନ୍ଧଯୁକ୍ତ ଫୁଲ ଫୁଟିଥାଏ । ପାହାଡ଼ରେ ଉଠିଥିବା ଘାସଗୁଡ଼ିକରେ ମଧ୍ୟ ଏକ ସ୍ୱାଭାବିକ ସୁଗନ୍ଧ ଥିଲା । ପିଲାଟି ବେଳେ ବେଳେ ରାସ୍ତାରୁ ଅଲଗା ହୋଇ ଯାଇ ପ୍ରାକୃତିକ ଦୃଶ୍ୟ ମନ ପୂରାଇ ଦେଖୁଥିଲା । ସେ ଏଠୁ ସେଠୁ ଫୁଲ ଛିଡ଼େଇ, ଘାସ ଉପାଡ଼ି, ପଥର ଗଡେଇ ଆନନ୍ଦ ପାଉଥିଲା । ଗୋଟିଏ ସ୍ଥାନରେ ନାଲଟିଏ ଥିଲା । ସେହି ନାଲ ସାହାଯ୍ୟରେ ସେ ଉପରକୁ ଉଠିଗଲା । ସଙ୍ଗରେ ସେବକ ମଧ୍ୟ ଥିଲା । ପିଲାଟି ଉପରକୁ ଯାଇ ଗୁଡ଼ାଏ ଫୁଲ ତୋଳିଲା । ହଠାତ୍ ଏକ ପଥର ତଳୁ କଳା ନାଗଟିଏ ବାହାରି ପିଲାଟିକୁ ଦଂଶନ କରି ଆଖି ପିଛୁଳାକେ କୁଆଡ଼େ ଉଭେଇ ଗଲା । ମୁହୂର୍ତ୍ତକ ମଧ୍ୟରେ ପିଲାଟି ମରିଗଲା । ଶ୍ରେଷ୍ଠୀ ଦମ୍ପତିଙ୍କ ଅବସ୍ଥା ଶୋଚନୀୟ ହୋଇପଡ଼ିଲା । ସେମାନଙ୍କ କରୁଣ କ୍ରନ୍ଦନରେ ସମଗ୍ର ଅଞ୍ଚଳ ଦ୍ରବୀଭୂତ ହୋଇଗଲା ।

ହେ ମୁନିଗଣ ! ଏ ସଂସାରରେ ପୁତ୍ର ଶୋକଠାରୁ ବଳି ଆଉ ବଡ଼ ଦୁଃଖ କିଛି ନାହିଁ । ଆପଣମାନଙ୍କର ସ୍ତ୍ରୀ ପିଲା ତ ନାହିଁ; ତେଣୁ ପୁତ୍ର ବିୟୋଗ ଦୁଃଖ ଆପଣମାନେ ଅନୁଭବ କରିପାରିବେ ନାହିଁ । ତେବେ ଆପଣମାନେ ମନେରଖନ୍ତୁ ପୁତ୍ରଶୋକଠାରୁ ଦାରୁଣ ଦୁଃଖ ଆଉ ନାହିଁ । ଏକମାତ୍ର ପୁଅ, ଯେପରି ସୁନ୍ଦର ସେହିପରି ଗୁଣୀ । ଏ ଘଟଣା ପୁଣି ଘରେ ନୁହେଁ, ତୀର୍ଥଯାତ୍ରା ପଥରେ । ସେ ଅବସ୍ଥାରେ ବାପା ମା'ଙ୍କ ଦୁଃଖ କେତେ ତାହା କହିବା ସମ୍ଭବ ନୁହେଁ ।

ଆଖି ଆଗରେ ପିଲାଟିର ମୃତ୍ୟୁ ଦେଖି ହୃଦୟ ମୋର କରୁଣାର୍ଦ୍ର ହୋଇ ପଡ଼ିଲା । ପିଲାଟି ରୂପ ଗୁଣରେ ସ୍ୱାଭାବିକ ଭାବେ ମୋତେ ମୁଗ୍ଧ କରିଥିଲା । ସେଥିପାଇଁ ତା' ପ୍ରତି ମୋର ଆକର୍ଷଣ ଆସି ଯାଇଥିଲା । ପିଲାର ଶବଟି ସେହି ପାଣି ନାଲରେ ଯାଇ ଅଳକାନନ୍ଦାରେ ପଡ଼ି ଏପାଖ ସେ ପାଖ ହେଉଥିବାର ମୁଁ ଦେଖୁଥାଏ । ହଠାତ୍ ମୁଁ ଦେଖିଲି ଅଳକାନନ୍ଦାର ଆର ପାଖରୁ କଙ୍କାଳସାର ଜଣେ କିଏ ଆସୁଛି । ଅତି ଜୀର୍ଣ୍ଣ ଶୀର୍ଣ୍ଣ ସେହି ବୁଢ଼ାକୁ ଦେଖି ମୁଁ ଭୟ କଲି ଆଶ୍ଚର୍ଯ୍ୟ

ବି ହେଲି । ମୁଁ ଚାହିଁଥାଏ । ଲୋକଟି ଦ୍ରୁତବେଗରେ ଆସି ଅଳକାନନ୍ଦାର ତୀବ୍ର ଜଳ ପ୍ରବାହ ମଧ୍ୟରେ ପଶିଗଲା ଏବଂ ପିଲାର ଶବଟିକୁ ଧରି କୂଳକୁ ଉଠି ଆସିଲା । ମୋର ସନ୍ଦେହ ହେଲା । ଏ ନିଶ୍ଚୟ ଏକ ଅଘୋରୀ ଅଥବା ଶବମାଂସଭୋଜୀ ବା ଶବକୁ ନେଇ ତାନ୍ତ୍ରିକ ପ୍ରୟୋଗ କରିବ । ଠିଆ ହୋଇ ଚାହିଁଥାଏ । ସେ ଲୋକଟି ଦୁଇ ହାତରେ ପିଲାର ଶବଟିକୁ ଟେକି ଆଣି ଏକ ବଡ଼ ପଥର ଉପରେ ଶୁଆଇ ଦେଲା । ପ୍ରଥମେ ଶବର ପେଟରୁ ପାଣି ବାହାର କଲା । ତା'ପରେ ଶବଟିକୁ ଏପାଖରୁ ସେପାଖ ହାତ ବୁଲାଇବାକୁ ଲାଗିଲା । ହାତ ବୁଲାଇବା ଅବସ୍ଥାରେ ପିଲାଟି ଜୀବିତ ହୋଇଉଠିଲା ଆଉ ବୃଦ୍ଧର ଶରୀରଟି ଭୂମି ଉପରେ ଟଳି ପଡ଼ିଲା । ଜୀବିତ ପୁରୁଷ ଦୁଇ ହାତରେ ବୃଦ୍ଧର କଙ୍କାଳଟିକୁ ନଦୀକୁ ଫିଙ୍ଗି ଦେଇ ବଣ ଭିତରକୁ ପଳାଇଗଲା । ସେତେବେଳେ ମୁଁ ଜାଣିଲି, ଜଣେ ଯୋଗୀ ଜୀର୍ଣ୍ଣ ଶରୀର ତ୍ୟାଗ କରି ଏକ ସୁନ୍ଦର ଶରୀରରେ ପ୍ରବେଶ କଲା ।

ହେ ମୁନିଗଣ ! ଏଇଥିରୁ ଜାଣନ୍ତୁ ଦେଖା ଯାଉଥିବା ପୃଥିବୀ ବାସ୍ତବ ପୃଥିବୀ ନୁହେଁ । ଦୃଶ୍ୟମାନ ପୃଥିବୀ, ପୃଥିବୀର ଶରୀର । ପୃଥିବୀର ଅଧିଷ୍ଠାତ୍ରୀ ଦେବୀ ଯେ କୌଣସି ଦେହରେ ପ୍ରବେଶ କରି ଯେ କୌଣସି ରୂପ ଗ୍ରହଣ କରିପାରେ । ପୃଥିବୀ ଗୋରୂପରେ ବ୍ରହ୍ମଲୋକ, ଦେବଲୋକ ତଥା ଅନ୍ୟାନ୍ୟ ସ୍ଥାନକୁ ଯିବା ଆସିବା କରୁଥିବା କଥା ମିଛ ନୁହେଁ । ଏ ବିଷୟରେ ଆପଣମାନଙ୍କର ସନ୍ଦେହ ରହିବା ଉଚିତ ନୁହେଁ । ସାଧାରଣ ଲୋକେ ଯାହା ଦେଖିପାରୁ ନାହାନ୍ତି, ତାହା ନାହିଁ ବୋଲି କହିବା ମୂର୍ଖତାର ପରିଚାୟକ । ରୋଗଜୀବାଣୁ ସାଧାରଣ ଆଖିରେ ଦେଖାଯାଆନ୍ତି ନାହିଁ ବୋଲି କ'ଣ ସେଗୁଡ଼ିକର ଅସ୍ତିତ୍ୱ ନାହିଁ ? ସେସବୁ ଥାଉନ୍ତୁ, ଆମେ ନିଜ ଆଖିକୁ ଓ ନିଜ ପିଠିକୁ ଦେଖିପାରୁ ନାହୁଁ ବୋଲି କଣ ସେଗୁଡ଼ିକ ନାହିଁ ? ତେଣୁ କେତେକ କଥା ଅନୁମାନ ଦ୍ୱାରା ଏବଂ ଆଉ କେତେକ କଥା ମହାପୁରୁଷମାନଙ୍କ ବାକ୍ୟ ଦ୍ୱାରା ସତ୍ୟ ବୋଲି ପ୍ରମାଣିତ ହୁଏ । ପୃଥିବୀ ଦେବୀ ଗୋରୂପ ଧରି, ଦେବତା ଋଷିମାନଙ୍କ ସହିତ କଥା ହୁଅନ୍ତି । ଏ ବିଷୟରେ ଶାସ୍ତ୍ର ପ୍ରମାଣ ରହିଛି । ମହାରାଜା ପୃଥୁ ଜଣେ ସାଧାରଣ ମଣିଷ ନ ଥିଲେ । ସେ ଭଗବାନଙ୍କର ସାକ୍ଷାତ ଅବତାର ଥିଲେ । ତେଣୁ ଗୋ-ରୂପା ପୃଥିବୀ ଓ ମହାରାଜ ପୃଥୁଙ୍କ ସମ୍ବାଦ କପୋଳକଳ୍ପିତ କଥା ନୁହେଁ ।

ଏହା ଶୁଣି ଶୌନକ ପଚାରିଲେ—ହେ ସୂତ ! ଆପଣ ଠିକ୍ କଥା କହୁଛନ୍ତି । ଆର୍ଷ ପ୍ରମାଣ ଆପ୍ତ ବାକ୍ୟ ବିନା ପ୍ରମାଣିତ ହୋଇପାରିବ ନାହିଁ । ମୁଁ ମହର୍ଷି ଶୁନକଙ୍କ ପୁଅ । ଆମେ ଭୃଗୁବଂଶୀୟ । ଏ ସବୁ ତ ଆମେ ଦେଖିନାହୁଁ,

ପରମ୍ପରାକ୍ରମେ ଶୁଣି ଆସୁଛୁ ଏବଂ ତାହା ହିଁ ସତ୍ୟ ବୋଲି ଗ୍ରହଣ କରୁଛୁ । ତେଣୁ ଶାସ୍ତ୍ର ବାକ୍ୟକୁ ମୁଖ୍ୟ ପ୍ରମାଣ ରୂପେ ଗ୍ରହଣ କରାଯାଇଛି । ବର୍ତ୍ତମାନ ଆମକୁ ଆପଣ ପୃଥିବୀ ଓ ପୃଥୁଙ୍କ ସମ୍ବାଦ କହନ୍ତୁ । ମହର୍ଷି ସୂତ ପ୍ରସନ୍ନ ହୋଇ କହିଲେ— ଭଗବନ୍ ! ଆପଣ ତ ସବୁ କଥା ଜାଣନ୍ତି । ସାଧାରଣ ଲୋକମାନଙ୍କ ଜାଣିବା ପାଇଁ ଏପରି ପ୍ରଶ୍ନ କରୁଛନ୍ତି । ହଉ, ମୈତ୍ରେୟ ମୁନି ଭକ୍ତ ବିଦୁରଙ୍କୁ ପୃଥୁ ଓ ପୃଥିବୀ ସମ୍ବାଦ ଯେପରି କହିଥିଲେ, ମୁଁ ସେହି କଥା ଆପଣମାନଙ୍କୁ କହୁଛି, ଶୁଣନ୍ତୁ ।

## ଛପ୍‌ପୟ

"ଧରେଁ ଧନୁଷ ପେଁ ବାନ ଲଖେ ପୃଥୁ ଭାଗୀ ଧରନୀ ।
ଜ୍ୟୋଁ କର ଲୟେ ପାସ ବ୍ୟାଧ ଲଖି ଭାଗେ ହରନୀ ॥
ତ୍ରିପୁର ବିନାଶନ ହେତୁ ମନହୁଁ ସର ଶମ୍ଭୁ ସଜାୟୋ ।
ଧର୍ମ ଧେନୁ ବଧ ହେତୁ ମନହୁଁ ପଞ୍ଚାନନ ଧାୟୋ ।
ମୁରି ମୁରି ନିରଖତ ଭୟସହିତ, ଜାତେ ବସୁଧା ଜହାଁ ଜହାଁ ।
ସନ୍ଧାନେଁ ସର କରେ ନୃପ, ପୀଛେ ତାକେ ତହାଁ ତହାଁ ॥



# ମହାରାଜ ପୃଥୁ ଓ ପୃଥିବୀ ସମ୍ବାଦ

"ବସୁଧେ ତ୍ୱାଂ ବଧିଷ୍ୟାମି ମଚ୍ଛାସନପରାଙ୍ମୁଖୀମ୍ ।
ଭାଗଂ ବର୍ହିଷି ଯା ବୃଙ୍କ୍ତେ ନ ତନୋତି ଚ ନୋ ବସୁ ।।"

(ଭାଗବତ-୪ର୍ଥ ସ୍କନ୍ଦ-୧୭ ଅଧ୍ୟାୟ-ଶ୍ଳୋକ-୨୨)

## ଛପ୍ପୟ

"ବୋଲୀ ବସୁଧା ବଷେ ! ବ୍ୟର୍ଥ ଚୌର୍ଯ୍ୟାଁ ମୋକୁଁ ମାରେ ।
ଅବଳା ସଦା ଅବଧ୍ୟ ତାହୁ ଫିର ଚେଷ୍ଟାଁ ସଂହାରେ ।।
ବିନା ବାତ ଚେଷ୍ଟାଁ ବାନ ତଜଓ ବାତ ବତାଓ ।
କରପରାଧିନୀ ମୋଇ ମାରକେ କା ତୁମ ପାଓ ।
ପୃଥୁ ବୋଲେ ଦୁଷ୍ଟେ ଧରଣ, ତୋପେ ବାଣ ଚଲଉଙ୍ଗୋ ।
ସବକୁଁ ସୁଖୀ ବନାଉଙ୍ଗୋ, ଯମପୁର ତୋଇ ପଠାଉଙ୍ଗୋ ।।"

ବ୍ରହ୍ମଲୋକ ପର୍ଯ୍ୟନ୍ତ ସମସ୍ତ ଲୋକଙ୍କୁ ପୃଥିବୀରୁ ହିଁ ଆହାର ମିଳେ । ଯେ ଯାହା ଖାଦ୍ୟ ରୂପେ ଗ୍ରହଣ କରେ, ତାହା ହିଁ ତାହାର ଅନ୍ନ । ଯାହା ଖାଆନ୍ତି ତା'ର ନାମ ଅନ୍ନ । ବଳଦ, ଗାଈ, ମହିଷାଦିଙ୍କର ଅନ୍ନ ହେଉଛି ଘାସ । ଫଳମୂଳ ମାଙ୍କଡ଼ ପ୍ରଭୃତିଙ୍କର, ମାଛ ବଗର, ଦ୍ୱିପଦ ପ୍ରାଣୀଙ୍କର ଶସ୍ୟ, ମାଂସାହାରୀଙ୍କର ମାଂସ ହେଉଛି ଅନ୍ନ । ଅଗ୍ନିରେ ଦିଆଯାଉଥିବା ଆହୁତି ଦେବଗଣଙ୍କ ଅନ୍ନ । ଶ୍ରାଦ୍ଧରେ ଦିଆଯାଉଥିବା ପିଣ୍ଡ ପିତୃଗଣଙ୍କ ଅନ୍ନ । ସେହିପରି ମହ, ଜନ, ତପ ଓ ସତ୍ୟଲୋକ ଅଧିବାସୀଙ୍କ ଅନ୍ନ ହେଉଛି ଯଥାକ୍ରମେ ଜ୍ଞାନ, ବ୍ରହ୍ମଚର୍ଯ୍ୟ, ତପସ୍ୟା ଓ ଧ୍ୟାନ । ଏହି ପୃଥିବୀରେ କାମ କରି ଲୋକ ସ୍ୱର୍ଗ ବା ନରକ ଭୋଗକରେ । ପୃଥିବୀରେ ଭାରତବର୍ଷକୁ ଛାଡ଼ି ଆଉ ଯେତେ, ବର୍ଷ, ଦ୍ୱୀପ ଅଛି, ଜମ୍ବୁଖଣ୍ଡ

ସପ୍ତଲୋକ ଓ ଊର୍ଦ୍ଧ୍ୱସ୍ଥିତ ଷଷ୍ଠଲୋକ ପ୍ରଭୃତିର ଭୋଗସ୍ଥାନ ହେଉଛି ପୃଥିବୀ । କେବଳ ମର୍ତ୍ତ୍ୟଲୋକରେ ଭାରତବର୍ଷ କର୍ମଭୂମି ରୂପେ ଅଭିହିତ । ସେଥିପାଇଁ ଭାରତବର୍ଷକୁ ଛାଡ଼ି ଅନ୍ୟତ୍ର ଯୁଗ କଳ୍ପନା ନାହିଁ । କାରଣ ପୁଣ୍ୟବଳ ଥିବା ପର୍ଯ୍ୟନ୍ତ ସେସବୁ ଲୋକରେ ପୁଣ୍ୟ ଭୋଗ କରାଯାଇପାରେ ଏବଂ ପାପଥିବାଯାଏ ନର୍କଭୋଗ କରାଯାଇଥାଏ । ପୁଣ୍ୟ ଓ ପାପ ସୁଖ ଦୁଃଖର ପ୍ରତୀକ । ପାପ ପୁଣ୍ୟ ଭୋଗ ସମାନ ଅବସ୍ଥାକୁ ଆସିବା ପରେ ଜୀବ ଭାରତବର୍ଷରେ ଜନ୍ମ ଗ୍ରହଣ କରେ ଓ କର୍ମରେ ପ୍ରବୃତ୍ତ ହୁଏ । ସେଥିପାଇଁ ଭଗବାନଙ୍କର ସମସ୍ତ ଅବତାର ଏହି ଭାରତଭୂମିରେ ଘଟିଛି । ଭିନ୍ନ ଭିନ୍ନ କାର୍ଯ୍ୟ ପାଇଁ ଭଗବାନ୍ ଭିନ୍ନ ଭିନ୍ନ ଅବତାରରେ ଅବତୀର୍ଣ୍ଣ ହୋଇଛନ୍ତି । ପୃଥୁଙ୍କ ଅବତାର, ପୃଥିବୀର ବ୍ୟବସ୍ଥା ଓ ପୃଥିବୀକୁ ଦୋହନ କରି ସର୍ବସାଧାରଣଙ୍କ ଦୁଃଖଦୁର୍ଦ୍ଦଶା ଦୂରକରିବା ନିମିତ୍ତ ସୃଷ୍ଟି ହୋଇଥିଲା ।

ମୈତ୍ରେୟ ମୁନି କହିଲେ—ହେ ବିଦୁର ! ଗୋ' ରୂପ ଧାରଣ କରି ପୃଥିବୀ ମହାରାଜା ପୃଥୁଙ୍କୁ ଭୟକରି ଯେତେବେଳେ ପଳେଇଲା ସେତେବେଳେ ମହାରାଜ ଧନୁ ତୀର ଧରି ତା' ପଛେ ପଛେ ଅନୁସରଣ କଲେ । ପୃଥିବୀ ଦଶଦିଗ, ସ୍ୱର୍ଗ, ପୃଥିବୀ, ଅନ୍ତରୀକ୍ଷ ଘୂରିଆଡ଼େ ଘୂରି ବୁଲିଲା । କିନ୍ତୁ କେହି ତାକୁ ଆଶ୍ରୟ ଦେଲେ ନାହିଁ । ସେ ଯୁଆଡ଼େ ଯାଉଥିଲା ତାଙ୍କ ପଛରେ ପୃଥୁ ଗୋଡ଼ାଉଥିବାର ସେ ଦେଖିଲା । ସବୁ ସ୍ଥାନରୁ ନିରାଶ ହୋଇ ଯେତେବେଳେ ସେ ଥକି ପଡ଼ିଲା ସେତେ-ବେଳେ ନିରୁପାୟ ହୋଇ ମହାରାଜ ପୃଥୁଙ୍କୁ ଶରଣାପନ୍ନ ହେଲା । ବିନୀତଭାବେ ପୃଥିବୀ କହିଲା—ପ୍ରଭୋ ! ଆପଣ ସମସ୍ତଙ୍କର ପାଳନକର୍ତ୍ତା । ଆପଣ ଧାର୍ମିକ ଓ ଧର୍ମରକ୍ଷକ । ଆପଣ ମୋପ୍ରତି ଏପରି କଠୋର ଆଚରଣ କରୁଛନ୍ତି କାହିଁକି ? ସମସ୍ତଙ୍କୁ ଲାଳନ ପାଳନ କରୁଥିବାରୁ ମୋତେ ବି ଆପଣ ପାଳନ କରନ୍ତୁ । ଆପଣ ମୋତେ ଅଭୟ ଦିଅନ୍ତୁ । ଆପଣ ଧର୍ମର ସୂକ୍ଷ୍ମକଥା ଭଲ ଭାବରେ ଜାଣି ବୁଝି ମୋ ପରି ଅବଳାକୁ ମାରିବା ପାଇଁ ଗୋଡ଼ାଇଛନ୍ତି କାହିଁକି ? ମୁଁ ଆପଣଙ୍କ ପାଖରେ କୌଣସି ଅପରାଧ ତ କରିନାହିଁ ।

ମହାରାଜ ପୃଥୁ ପଚାରିଲେ— ମୋର ପ୍ରଜାମାନଙ୍କୁ ଭୋକ ଉପାସରେ ରଖି ତୁ କଣ ଅପରାଧ କରି ନାହୁଁ ? ମୋ ସହିତ ବି ତୁ ଯଥାର୍ଥ ବ୍ୟବହାର କରି ନାହୁଁ ।

ପୃଥିବୀ କହିଲା—ହଁ, ହେଲା ଏବେ ମୁଁ ଅପରାଧ କରିଛି । କିନ୍ତୁ ଅପରାଧୀଙ୍କ ନାରୀକୁ ଧାର୍ମିକମାନେ କଣ ହତ୍ୟାକରନ୍ତି ? ସ୍ତ୍ରୀମାନଙ୍କୁ ଶସ୍ତ୍ରାଘାତ କରିବା ନିଷିଦ୍ଧ, ଏହା କଣ ଆପଣ ଜାଣନ୍ତି ନାହିଁ ?

ପୃଥୁ କ୍ରୋଧପୂର୍ଣ୍ଣ ସ୍ୱରରେ କହିଲେ—ତୁ ମୋତେ ଧର୍ମକଥା ଶିଖାଉଛୁ । ଧର୍ମର ଗତି ଅତି ସୂକ୍ଷ୍ମ । କଣ କଲେ ଧର୍ମ ହୁଏ ଏବଂ କଣ କଲେ ଅଧର୍ମ ହୁଏ, ଏହା ସମସ୍ତେ ଜାଣନ୍ତି ନାହିଁ । ଯେଉଁ ଅଧମ ପୁରୁଷ ନିଜ ନିଜର ପ୍ରଶଂସା କରେ, ଯେ ସମସ୍ତଙ୍କୁ ଦୁଃଖ ଦିଏ, ଯାହା ପାଇଁ ସମସ୍ତଙ୍କର ମାନସିକ ଉଦ୍‌ବେଗ ବଢ଼ିଯାଏ ସେପରି ବ୍ୟକ୍ତି ସ୍ତ୍ରୀ ପୁରୁଷ ଯେ କେହି ହେଲେ ମଧ୍ୟ ତାକୁ ହତ୍ୟା କରିବାରେ ରାଜାଙ୍କର ଅପରାଧ ହୁଏ ନାହିଁ ବରଂ ପୁଣ୍ୟବୃଦ୍ଧି ଘଟେ । ବ୍ରହ୍ମାଙ୍କ ସୃଷ୍ଟି ଜାତ ଶସ୍ୟ ବୀଜକୁ ତୁ ନିଜ ଗର୍ଭରେ ଲୁଚାଇ ରଖିଛୁ । ତେଣୁ ତୋତେ ହତ୍ୟା କରି ମୁଁ ସେଗୁଡ଼ିକ ବାହାର କରିବି ।

ପୃଥିବୀ ବିନୀତଭାବେ କହିଲା – ମହାରାଜ ! ଆପଣ କ୍ରୋଧାନ୍ୱିତ ହୋଇ-ଥିବାରୁ ବିଚାରଶୂନ୍ୟ ହୋଇପଡ଼ିଛନ୍ତି । ଶାନ୍ତ ମନରେ ଚିନ୍ତା କରନ୍ତୁ । ମୋତେ ମାରିଦେଲେ ଏହି ପ୍ରଜାମାନଙ୍କୁ ଆପଣ ରକ୍ଷା କରିବେ କିପରି ? ଜୀବମାନଙ୍କର ମୁଁ ହେଉଛି ଆଧାର । ମୋତେ ମାରିଦେଇ ଆପଣ ସମସ୍ତଙ୍କୁ ନିରାଶ୍ରୟ କରିଦେବା ପାଇଁ ଚାହୁଁଛନ୍ତି କି ?

ମହାରାଜ ପୃଥୁ ଗୁରୁ ଗମ୍ଭୀର ସ୍ୱରରେ କହିଲେ—ତୁ ମୋର ବଳ, ବୀର୍ଯ୍ୟ, ପରାକ୍ରମ, ଐଶ୍ୱର୍ଯ୍ୟ ସମ୍ବନ୍ଧରେ କିଛି ଜାଣିନାହୁଁ । ଯୋଗବଳରେ ସମସ୍ତ ପ୍ରଜାଙ୍କୁ ମୁଁ ନିଜେ ଧାରଣ କରିପାରିବି ।

'ମୁଁ ଜାଣେ, କିନ୍ତୁ ଆପଣ ହିଁ ମୋତେ ଏପରି ମର୍ଯ୍ୟାଦା ଦେଇଥିଲେ । ତାହା ରକ୍ଷା କରିବା କଣ ଆପଣଙ୍କର କର୍ତ୍ତବ୍ୟ ନୁହେଁ ' ପୃଥିବୀ ଏହା ପଚାରିବାରୁ ପୃଥୁ କହିଲେ—ମୁଁ କଣ କହିଥିଲି ତୁ ଯଜ୍ଞଭାଗ ଗ୍ରହଣ କରି ମରୁଭୂମି ପାଲଟିଯିବୁ । ମୁଁ ଆଜି ତୋତେ ଖଣ୍ଡ ଖଣ୍ଡ କରି ପୁଣି ମେଦିନୀ ରୂପକୁ ନେଇଆସିବି ।

ମୈତ୍ରେୟ ମୁନି କହିଲେ—ଭଗବାନ୍ ପୃଥୁଙ୍କୁ ଅତ୍ୟଧିକ କ୍ରୋଧାନ୍ୱିତ ହୋଇଥିବାର ଦେଖି ପୃଥିବୀ ତାଙ୍କର ସ୍ତୁତିଗାନ କଲା; କିନ୍ତୁ ମହାରାଜ ପୃଥୁ ଶାନ୍ତହେଲେ ନାହିଁ । ତାଙ୍କ ସିଦ୍ଧାନ୍ତରେ କୌଣସି ପରିବର୍ତ୍ତନ ହେଲା ନାହିଁ । ପୃଥିବୀ ଭୟଭୀତ ହୋଇ ନିଜ ମନକୁ ସ୍ଥିରକଲା । ବିନୀତଭାବେ ପୃଥିବୀ କହିଲା—ମହାରାଜ ! ଆପଣଙ୍କ ପରି ବିବେକୀ ପୁରୁଷ ସ୍ତ୍ରୀ ମାନଙ୍କ ଉପରେ ଏପରି କ୍ରୋଧ ପ୍ରକାଶ କରିବା ଉଚିତ ନୁହେଁ । ଆପଣ ନିଜର ଭୟଙ୍କର ରୂପ ଛାଡ଼ି ଶାନ୍ତ ମୂର୍ତ୍ତି ଧାରଣ କରନ୍ତୁ । ମୋତେ ଆଦେଶ ଦିଅନ୍ତୁ ମୁଁ କଣ କରିବି ?

'ତୁ ମୋ' ପ୍ରଜାମାନଙ୍କୁ ଅଭୀଷ୍ଟ ପଦାର୍ଥ ନ ଦେବା ପର୍ଯ୍ୟନ୍ତ ମୁଁ କ୍ରୋଧ ପରିହାର କରିପାରିବି ନାହିଁ ।' ଏହାଶୁଣି ପୃଥିବୀ କହିଲା—ମହାରାଜ ! ବୁଦ୍ଧିମାନ୍

ପ୍ରବୁଦ୍ଧ ଭ୍ରମର ଭଳି ସାରଗ୍ରାହୀ ହୁଅନ୍ତି । ପୁଷ୍ପମଧୁ ଆହରଣ କଲେ ମଧ୍ଯ ଭ୍ରମର ପୁଷ୍ପର ସୌନ୍ଦର୍ଯ୍ୟ ନଷ୍ଟ କରେ ନାହିଁ । ପୂର୍ବାଗ୍ରଣୀ ମୁନି ଋଷିମାନେ କାର୍ଯ୍ୟସିଦ୍ଧି ପାଇଁ ନାନା ଉପାୟ ନିର୍ଦ୍ଦେଶ କରି ଯାଇଛନ୍ତି । ଶାସ୍ତ୍ରରେ, ଶାସ୍ତ୍ରୀୟ ବିଧିବିଧାନରେ ଯେଉଁ କାର୍ଯ୍ୟ କରାଯାଏ ତାହାର ଫଳ ଶୁଭଙ୍କର ହୁଏ । କିନ୍ତୁ ତର୍କବିତର୍କ କରି ମନ ଇଚ୍ଛା କାମକଲେ ତାର ପରିଣତି ଦୁଃଖଦାୟକ ହୁଏ । ସେଥିପାଇଁ ପରେ ଅନୁତାପ କରିବାକୁ ପଡ଼େ । ଆପଣ କ୍ରୋଧ ତ୍ୟାଗକରି ଶାନ୍ତ ହୁଅନ୍ତୁ, ମୁଁ କାହିଁକି ଅନ୍ନ ଉତ୍ପନ୍ନ କରୁନାହିଁ ତାହାର କାରଣ ଶୁଣନ୍ତୁ ।

ପୂର୍ବେ ପିତାମହ ବ୍ରହ୍ମା ସମସ୍ତ ପ୍ରକାର ଅନ୍ନ ଓ ଔଷଧି ସୃଷ୍ଟି କରିଥିଲେ । ଯେଉଁମାନେ ଧର୍ମ କର୍ମ କରୁଥିଲେ ସେମାନେ ନ ମାଗିଲେ ମଧ୍ଯ ମୁଁ ପର୍ଯ୍ୟାପ୍ତ ଅନ୍ନ ସେମାନଙ୍କୁ ଦେଉଥିଲି । ଲୋକେ ଯେତେ ଖାଉଥିଲେ, ଯେତେ ଯଜ୍ଞ କରୁଥିଲେ ମୁଁ ସେତେ ଅନ୍ନ, ଧନରତ୍ନ ସେମାନଙ୍କୁ ଯୋଗାଉଥିଲି । ଧାର୍ମିକ ରାଜାମାନେ ଚାଲିଯିବା ପରେ ମୁଁ ଯେତେବେଳେ କ୍ରୂରକର୍ମା, ଦାମ୍ଭିକ ନାସ୍ତିକ, ଈର୍ଷ୍ୟାକାରୀ, ପରପୀଡ଼କ, ସ୍ୱାର୍ଥପର, ଦସ୍ୟୁମାନଙ୍କଦ୍ୱାରା ଶାସିତ ହେଲି ସେତେବେଳେ ସମସ୍ତ ଶସ୍ୟ ଓ ଔଷଧିକୁ ମୋ' ଗର୍ଭରେ ଲୁଚାଇ ରଖିଲି । ଆପଣମାନେ ଧର୍ମାତ୍ମା ହୋଇ ମୋତେ ରକ୍ଷା କରିବା ବିଷୟରେ ଯେତେବେଳେ ଉଦାସୀନ ହୋଇଗଲେ ସେତେବେଳେ ସେହି ଧର୍ମବିଦ୍ୱେଷୀମାନଙ୍କୁ ଅନ୍ନ ଦେଇଥିଲେ ଯଜ୍ଞଭାଗ ସବୁ ବନ୍ଦ ହୋଇଯାଇ-ଥାନ୍ତା । ତେଣୁ ଯଜ୍ଞରକ୍ଷା ପାଇଁ ମୁଁ ଅନ୍ନକୁ ଲୁଚାଇ ରଖିଛି । ବହୁକାଳ ଧରି ରହିବାରୁ ସେଗୁଡ଼ିକ ମୋ ପେଟରେ ପଚିଯାଇଛି । ଆପଣ ନିଜ ଇଚ୍ଛା ଅନୁସାରେ ଦୋହନକରି ତାହା ବାହାର କରି ନିଅନ୍ତୁ ।

ମହାରାଜ ପଚାରିଲେ—କିପରି ଦୋହନ କରିବାକୁ ହେବ ତାହା ତୁ ମୋତେ ବତାଇ ଦେ ।

ପୃଥିବୀ କହିଲା—ମହାରାଜ ! ମୁଁ ଏବେ ଗୋରୂପ ଧାରଣ କରିଛି । ଗାଈ ଦୁହିଁବା ପାଇଁ ଦୋହନକାରୀ, ପାତ୍ର ଓ ଏକ ବାଛୁରୀ ଆବଶ୍ୟକ । ବାଛୁରୀକୁ ଦେଖିଲେ ଗାଈର ଚରରେ ଦୁଧ ଉତୁରି ଆସେ । ବାଛୁରୀ ବିନା ଯେଉଁଠି ଜବରଦସ୍ତ ଗୋ'ଦୋହନ କରାଯାଏ ସେ ପ୍ରକାର କ୍ଷୀରରେ ସଦ୍‌ଗୁଣର ବିକାଶ ଘଟେ ନାହିଁ । ତେଣୁ ଏକ ଉତ୍କୃଷ୍ଟ ବାଛୁରୀ ଯୋଗାଡ଼ କରନ୍ତୁ । ମୁଁ ହେଉଛି କାମଧେନୁ । ବାଛୁରୀ ଯେପରି ହେବ ସେହିପରି ଅନ୍ନ ମୁଁ ଉତ୍ପନ୍ନ କରି ପାରିବି । ହଁ, ଆଉ ଏକ କାମ କରିବାକୁ ପଡ଼ିବ । ନାନା ପାହାଡ଼, ପର୍ବତ, ନଦୀ, ନାଳରେ ମୋ' ଶରୀର ଅସମାନ ହୋଇପଡ଼ିଛି । ଆପଣ ପାହାଡ଼ଗୁଡ଼ିକୁ ଗୋଟିଏ ସ୍ଥାନରେ

ଚଷି ମୋ' ଦେହକୁ ସମାନ କରିଦିଅନ୍ତୁ । କିଆରିଗୁଡ଼ିଏ ତିଆରି କରନ୍ତୁ । ପଥର, ଗୋଡ଼ ସବୁ ବାଛି ଦେଇ ମୋ' ମାଟିକୁ କୋମଳ କରନ୍ତୁ । ଗଙ୍ଗା ଯମୁନାର ମଧ୍ୟଭାଗରେ ଆପଣ ଏହି ପଦକ୍ଷେପ ନିଅନ୍ତୁ । ଏସବୁ କାର୍ଯ୍ୟ ଆପଣ କରିପାରିବେ ।

ମୈତ୍ରେୟ କହିଲେ—ହେ ବିଦୁର । ମହାରାଜ ପୃଥୁ ପୃଥିବୀର ସମସ୍ତ ଅନୁରୋଧ ରକ୍ଷା କରି ପୃଥ୍ୱୀଦୋହନ ପାଇଁ ଉଦ୍ୟମ ଆରମ୍ଭ କଲେ ।

### ଛପ୍ପୟ

"ଧରଣୀ ଧରି କେ ଧୀର, ବୀର ତେଁ ବୋଲୀ ବାନୀ ।
ମୋହି ନ ମାରେ ନାଥ ! ଆପ ଜ୍ଞାନୀ ବିଜ୍ଞାନୀ ।।
ଗଉ ତିହାରୀ ବନୀ ସବନୀ ତେଁ ଦୂଧ ଦୁହାଓ ।
ଦୁହନୀ ଦୋଗ୍‌ଧା ଲାଇ ବୀରବର ବସ୍ତ୍ର ବନାଓ ।।
ଯୁକ୍ତି ସହିତ ଯଦି ଦୁହିଂଗେ, ତୋ ଇଚ୍ଛିତ ଫଲ ଦେଉଁଗୀ ।
ପ୍ରକଟ ସକହି ଔଷଧି କରୁଁ, ଦୁହିତା ବନୀ ଯଶ ଲେଉଁଗୀ ।।"



# ପୃଥିବୀ ଦୋହନ

"ଇତି ପ୍ରିୟଂ ହିତଂ ବାକ୍ୟଂ ଭୁବ ଆଦାୟ ଭୂପତିଃ ।
ବତ୍ସଂ କୃତ୍ୱା ମନୁଂ ପାଣାବଦୁହତ୍ସକଲୌଷଧୀଃ ॥
ତଥା ପରେ ଚ ସର୍ବତ୍ର ସାରମାଦଦତେ ବୁଧାଃ ।
ତତୋଽନ୍ୟେ ଚ ଯଥାକାମଂ ଦୁଦୁହୁଃ ପୃଥୁ ଭାବିତାମ୍ ॥"

(ଭାଗବତ-୪ର୍ଥ ସ୍କନ୍ଦ-୧୮ ଅଧ୍ୟାୟ-୧୨,୧୩ ଶ୍ଳୋକ)

## ଛପ୍ପୟ

"ସୁନ ବସୁଧା କେ ବୈଂନ ବେନସୁତ ଦୁହି ବେ ଲଗେ ।
ମନୁକୁଁ କୀୟୋ ବସ୍ର ପାତ୍ରକର କୀୟୋ ଆଗେ ॥
ସ୍ୱରଗ୍ତୁ ଦୋହୀ ଇନ୍ଦ୍ର ବସ୍ର କର କନକ ପାତ୍ର ମହଁ ।
ଅମୃତ ରୁପ ଯୋ ଦୁଗ୍‌ଧ, ଓଜ ବଲ ବୀର୍ଯ୍ୟ ଗାତ୍ର ମହଁ ॥
ଅସୁର ଦୈତ୍ୟ ପ୍ରହ୍ଲାଦ କୁଁ, ବଛର ଗୌ କେ କର ଲୟୋ ।
ଲୌହ ପାତ୍ର ମହଁ ସୁରା ଅରୁ, ଆସବ ଦୁହି କେ ଭରି ଗୟୋ ॥"

ବସ୍ତୁର ଅବସ୍ଥା ସବୁବେଳେ ଏକ ପ୍ରକାର ଥାଏ । ସେଥିରେ ଭେଦଭାବ, ବିଷମତା, ସୁଖ ଦୁଃଖ କିଛି ନ ଥାଏ । ଯୋଗଭେଦରେ, କର୍ତ୍ତାଭେଦରେ, ପାତ୍ର-ଭେଦରେ ବସ୍ତୁଗୁଡ଼ିକଠାରେ ଭେଦଭାବ ସ୍ଥାପିତ ହୁଏ । ଯୋଗର ଭେଦ ହେଉଛି, ଅଙ୍ଗୁର, ଜଅ, ଗୁଡ଼ ଆଦି ସାତ୍ତ୍ୱିକ ପଦାର୍ଥକୁ ଏକଜ ପଚେଇ ଦେଲେ ତାହା ସୁରାରେ ପରିଣତ ହୋଇ ତାମସ ଭାବ ପ୍ରକାଶ କରୁଛି । ସୁରା ଅଶୁଦ୍ଧ ବସ୍ତୁ ପାଲଟି ଯାଉଛି । କର୍ତ୍ତାଭେଦ ହେଉଛି, ଶୁଦ୍ଧ ଧାତୁରେ ମୂର୍ତ୍ତି ଗଢି ସାତ୍ତ୍ୱିକ ଭାବରେ ଉପାସନାଦ୍ୱାରା ଲୋକ ଭଗବତ୍ ପଦ ଲାଭ କରୁଛି । କିନ୍ତୁ ଅନ୍ୟ ଲୋକ ସେହି

ଧାତୁରେ ଅସ୍ତ୍ର ଶସ୍ତ୍ର ତିଆରି କରି ନିରପରାଧ ଜୀବଙ୍କୁ ହତ୍ୟା କରୁଛି ଓ ନରକଗାମୀ ହେଉଛି । ତେଣୁ କର୍ତ୍ତା ଯେପରି ଯୋଗ କରିବ ବସ୍ତୁ ସେହିପରି ହେବ ସର୍ପ ବିଷ, ଏହାର ଶୁଦ୍ଧ ରୂପ ଔଷଧରେ ବ୍ୟବହୃତ ହେଉଥିବାବେଳେ ଏବଂ ମୃତପ୍ରାୟ ଲୋକ ଜୀବନ ଲାଭ କଲାବେଳେ ତାହା ଅବିଶୁଦ୍ଧ ରୂପରେ ପ୍ରାଣଘାତକ ହୁଏ । ତେଣୁ ସର୍ପ ବିଷ କି ପ୍ରକାର ଯୋଗରେ ବ୍ୟବହୃତ ହେବ ତାହା କର୍ତ୍ତାର ମନୋଭାବ ଉପରେ ନିର୍ଭର କରେ । ପାତ୍ରଦ୍ୱାରା ବସ୍ତୁଭେଦ ସୃଷ୍ଟି ହୁଏ । ଦୁଧ, ଦହି ଆଦି ଅମୃତମୟ ଦ୍ରବ୍ୟ ତାମପାତ୍ରରେ ରହିଲେ ବିଷ ପାଲଟି ଯାଏ । ବର୍ଷାଜଳ ନଦୀରେ ପଡ଼ିଲେ ମିଠା ଲାଗେ, ସମୁଦ୍ରରେ ପଡ଼ିଲେ ଲୁଣିଆ ଲାଗେ । ତେଣୁ ବସ୍ତୁର ଭଲ ମନ୍ଦ ଗୁଣ କର୍ତ୍ତାର ଭାବନା ଉପରେ ଆଧାରିତ । ଭାବ ହିଁ ଭାବର କାରଣ ।

ମୈତ୍ରେୟ ମୁନି କହିଲେ – ହେ ବିଦୁର ! ଗୌରୂପା ପୃଥିବୀ ଶାନ୍ତ ହୋଇ-ଯିବା ପରେ ମହାରାଜ ପୃଥୁଙ୍କୁ ଦୋହନ କରିବା ପାଇଁ ଅନୁମତି ଦେଲା । ଜଗତର କଲ୍ୟାଣ ପାଇଁ ମହାରାଜ ପୃଥିବୀଠାରୁ ବିଭିନ୍ନ ଆହାର ସଂଗ୍ରହ କଲେ । ରୁଚି ଅନୁସାରେ ଯାହାର ଯାହା ଆବଶ୍ୟକ ଥିଲା ସମସ୍ତେ ପାଇଲେ । 'ଗୋଟିଏ ଗାଈର ଦୁଧରେ ଭେଦଭାବ ଆସିଲା କିପରି' ବୋଲି ବିଦୁର ପଚାରିବାରୁ ମୈତ୍ରେୟ ଉତ୍ତର ଦେଲେ—ଆପଣ ଦେଖନ୍ତୁ, ଜଣେ ସ୍ତ୍ରୀଲୋକକୁ ତାର ପିତା, ପତି, ପୁତ୍ର, ଭ୍ରାତା ସମସ୍ତେ ଭିନ୍ନ ଭିନ୍ନ ଭାବରେ ଦେଖନ୍ତି । ପିଲାଟି ମାତୃସ୍ତନରେ ଯେଉଁ ସ୍ନେହମୟ ଦୁଗ୍ଧ ପାଏ ସେହି ସ୍ତନରେ ପତି ଭିନ୍ନ ରସ ଆସ୍ୱାଦନ କରେ । ଯେହିପରି ପୃଥିବୀରେ ଆମ୍ବଗଛ ଲଗାଇଲେ ତାହା ମିଠା ଫଳ ଦିଏ, ଲିମ୍ବ, ଅରଖ, ଦୁଦୁରା ଆଦି କଟୁ ଫଳ ଦିଅନ୍ତି । ସେ ଯେପରି ସ୍ୱଭାବର ସେ ସ୍ୱଭାବ ଅନୁରୂପ ବାୟୁମଣ୍ଡଳ ସୃଷ୍ଟି କରିନିଏ ଏବଂ ସ୍ୱଭାବ ସୁଲଭ କାର୍ଯ୍ୟ କରେ । କର୍ତ୍ତା ଯୋଗ ଓ ପାତ୍ରଭେଦ ଅନୁସାରେ ବସ୍ତୁରେ ଭେଦ ସୃଷ୍ଟି ହୁଏ । ଗୌରୂପା ପୃଥିବୀ ଏକ ଥିଲା, କିନ୍ତୁ ଦୁହିଁବା ଲୋକର ରୁଚି, ପାତ୍ର ଓ ବାଛୁରୀ ଅନୁସାରେ ତାକୁ ଦୁଧ ମିଳିଲା ।

ବିଦୁର ଆନନ୍ଦିତ ହୋଇ କହିଲେ—ଅଜ୍ଞା, ବୁଝିଗଲି । ଗୁରୁ ଉପଦେଶ ବିନା ଏ ସବୁ ଗହନ କଥା ବୁଝିବା କଷ୍ଟକର । ଏଥର କୁହନ୍ତୁ, କିଏ କାହାକୁ ବାଛୁରୀ କରି କେଉଁ ପାତ୍ରରେ କି ପ୍ରକାର କ୍ଷୀର ଦୋହନ କଲେ ? ଏହା ଶୁଣି ମୈତ୍ରେୟ କହିବାକୁ ଲାଗିଲେ—ମଣିଷ ନିଜର ବାହୁ ବଳରେ ଏ ପୃଥିବୀକୁ ଆୟତ୍ତ କରିପାରେ । ତେଣୁ ମହାରାଜା ପୃଥୁ ଗୌରୂପା ପୃଥିବୀକୁ ନିଜର ବଶୀଭୂତ କରିଥିଲେ । ମଣିଷର ମୁଖ୍ୟ ପାତ୍ର ହେଉଛି ଦୁଇହାତ । ମହାରାଜ ନିଜର ପୂର୍ବଜ ମନୁଙ୍କୁ ବାଛୁରୀ କରି ଔଷଧି ରୂପକ ଦୁଧ ଦୁହିଁଥିଲେ । ସେ ନିଜର ପିତୃପିତାମହଙ୍କ

ମାର୍ଗରେ ଥାଇ ବାହୁବଳରେ ପୁରୁଷାର୍ଥ ଅର୍ଜନ କରନ୍ତି, ଗୌରୂପା ପୃଥିବୀ ତାଙ୍କୁ ସମସ୍ତ ସମ୍ପତ୍ତି ଦାନ କରେ । ମହାରାଜ ପୃଥୁ ଥିଲେ ମାନବ ଜାତିର ପ୍ରତିନିଧି । ସେ ଲୋକମାନଙ୍କ ଆହାର୍ଯ୍ୟ ଦ୍ରବ୍ୟ ଦୋହନ କରି ସାରିବା ପରେ ଦେବତାମାନେ ଗୁରୁ ବୃହସ୍ପତିଙ୍କ ମାଧ୍ୟମରେ ଇନ୍ଦ୍ରଙ୍କୁ ବାଛୁରି କରି ସୁବର୍ଣ୍ଣ ପାତ୍ରରେ ପୃଥିବୀର ଓଜ, ବୀର୍ଯ୍ୟ, ବଳ ରୂପକ ଅମୃତ ସଂଗ୍ରହ କଲେ । ଦେବଗଣ ଯେ ପର୍ଯ୍ୟନ୍ତ ଗୁରୁଙ୍କ ଆଶ୍ରୟରେ ରହି ଇନ୍ଦ୍ରଙ୍କ ବାହୁବଳରେ ପାଳିତ ହେବେ, ସେ ପର୍ଯ୍ୟନ୍ତ ସେମାନଙ୍କର ମନୋବଳ, ଇନ୍ଦ୍ରିୟବଳ ଓ ଶାରୀରିକ ବଳ ଅତୁଟ ରହିବ । ଅନ୍ୟଥା କଲେ ସେମାନେ ଦୁର୍ବଳ ହୋଇଯିବେ । ଦୈତ୍ୟ ଦାନବଗଣ ନିଜର ପୂର୍ବଜ ପ୍ରହ୍ଲାଦଙ୍କୁ ବାଛୁରି କରି ଲୌହ ପାତ୍ରରେ ସୁରା, ଆସବ ଆଦି ଦୋହନ କଲେ । ଗନ୍ଧର୍ବ ଓ ଅପ୍‌ସରାଗଣ ସଙ୍ଗୀତପ୍ରିୟ । ନୃତ୍ୟ, ଗୀତ ଓ ବାଦ୍ୟର ମିଶ୍ରିତ ରୂପ ହେଉଛି ସଙ୍ଗୀତ । ସେମାନେ ଗନ୍ଧର୍ବମୁଖ୍ୟ ବିଶ୍ୱାବସୁଙ୍କୁ ବାଛୁରି କରି ସଙ୍ଗୀତ ରୂପକ ଦୁଗ୍ଧ ଦୋହନ କଲେ । ପିତରମାନେ ମାଟି ପାତ୍ର କବ୍ୟ ରୂପକ ଶ୍ରାଦ୍ଧ ଅନ୍ନ ଆହରଣ କଲେ ।

ସିଦ୍ଧ ଓ ବିଦ୍ୟାଧରଗଣ ନିଜର ପୂର୍ବଜ ଭଗବାନ କପିଳଙ୍କୁ ବାଛୁରି କରି ଆକାଶ ରୂପକ ପାତ୍ରରେ ଅଷ୍ଟସିଦ୍ଧି ଓ ଅନ୍ତର୍ଦ୍ଧାନ ଆଦି ବିଦ୍ୟା ଦୋହନ କଲେ । ମାୟାବୀ ଅସୁରଗଣ ମୟ ନାମକ ମାୟାବୀଙ୍କୁ ବାଛୁରି କରି ନାନା ପ୍ରକାର ମାୟା ବିଦ୍ୟା ପୃଥିବୀଠାରୁ ଗ୍ରହଣ କଲେ । ଯକ୍ଷ, ରାକ୍ଷସ, ଭୂତ, ପ୍ରେତ, ପିଶାଚ, ବେତାଳ ଆଦି ନିଜର ଇଷ୍ଟ ରୁଦ୍ରଙ୍କୁ ବାଛୁରି କରି କପାଳ ପାତ୍ରରେ ରୁଧିର ରୂପକ ଦୁଗ୍ଧ ଗ୍ରହଣ କଲେ । ପଶୁଗଣ ନନ୍ଦୀଶ୍ୱର ବୃଷଭଙ୍କୁ ବାଛୁରି କଲେ ଏବଂ ଅରଣ୍ୟ ରୂପକ ପାତ୍ରରେ ଘାସ, ପତ୍ର ରୂପକ ଦୁଧ ତଥା ହିଂସ୍ର ପଶୁଗଣ ସିଂହଙ୍କୁ ବାଛୁରି କରି ନିଜ ଶରୀର ରୂପକ ପାତ୍ରରେ କଞ୍ଚା ମାଂସ ରୂପକ ଦୁଗ୍ଧ ଦୋହନ କଲେ । ପକ୍ଷୀଗଣ ଗରୁଡ଼ଙ୍କ ସାହାଯ୍ୟରେ ଚର, ଅଚର ଅର୍ଥାତ୍ କୀଟ, ପତଙ୍ଗ, ଫଳ, ମୂଳ ବୃକ୍ଷ, ଲତା ଆଦି ରସରୂପକ ଦୁଧ ପୃଥିବୀଠାରୁ ଦୋହନ କଲେ । ପର୍ବତଗଣ ନିଜର ଅଧିପତି ହିମାଳୟ କରିଆରେ ଶିଖର ରୂପକ ପାତ୍ରରେ ବିଭିନ୍ନ ଧାତୁ ରୂପ ଦୁଗଧ ସଂଗ୍ରହ କଲେ । ଏହିପରି ସବୁ ଜୀବଜନ୍ତୁ ନିଜ ଗୋଷ୍ଠୀର ମୁଖ୍ୟଙ୍କୁ ବାଛୁରି କରି ସ୍ୱଭାବ ଅନୁକୂଳ ପାତ୍ରରେ ପ୍ରକୃତି ଅନୁରୂପ ଆବଶ୍ୟକ ଦୁଗ୍ଧ ଦୋହନ କରିଥିଲେ । ଯାହାର ଯାହା ଖାଦ୍ୟ ତାକୁ ତାହାର ପାତ୍ର ଓ ବାଛୁରି ଭେଦରେ ମିଳିଥିଲା ।

ସମସ୍ତେ ଇଚ୍ଛା ଅନୁସାରେ ଦୋହନ କରି ସାରିବା ପରେ ଗୋରୂପା ପୃଥିବୀ କହିଲା—ଆଉ କାହାର କିଛି ଅଭାବ ରହିଲା ନାହିଁ ତ ? ଏହା ଶୁଣି ଜଣେ ଋଷି

ମଣିଷ କହି ପକାଇଲା—ଆଉ ତୁମର ଯାହା ଇଚ୍ଛା ଅନ୍ନ ଦେଇଦିଅ । ହସି ହସି ପୃଥିବୀ କହିଲା—ଲୋଭୀକୁ ଯେତେ ଦିଆଗଲେ ବି ତା'ର ପେଟ ପୂରେ ନାହିଁ । ସେ ସବୁବେଳେ କ୍ଷୁଧାର୍ତ୍ତ ଅବସ୍ଥାରେ ରହିବ । ମୁଁ ସମସ୍ତଙ୍କୁ ତୃପ୍ତ କରିପାରିବି; କିନ୍ତୁ ଲୋଭୀକୁ ସନ୍ତୁଷ୍ଟ କରିବା ପାଇଁ ମୁଁ ଅସମର୍ଥ ।

ପୃଥିବୀ ଅକାତର ଚିତ୍ତରେ ସମସ୍ତଙ୍କୁ ଯଥୋଚିତ ଆହାର ଦେଇ ଦେବାର ଦେଖି ମହାରାଜ ପୃଥୁ ସନ୍ତୁଷ୍ଟ ହେଲେ । ସେ କହିଲେ—ହେ ବସୁଧେ ! ତୁମେ ଜଣେ ଗୁଣବତୀ, କୁଳବତୀ, ସୁଶୀଳା, ଧର୍ମପରାୟଣା କନ୍ୟା ପରି ମୋର ଯଶ-କୀର୍ତ୍ତିକୁ ବିସ୍ତାର କରିଛ । ତେଣୁ ଆଜିଠାରୁ ତୁମେ ମୋର ପୁତ୍ରୀ ରୂପେ ପରିଚିତା ହେବ । ଏହା ଶୁଣି ପୃଥିବୀ ସନ୍ତୋଷ ଲାଭକରି ଅନ୍ତର୍ଦ୍ଧାନ ହୋଇଗଲା ।

ମୈତ୍ରେୟ ମୁନି କହିଲେ—ହେ ବିଦୁର ! ସେ କାଳରୁ ପୃଥୁଙ୍କ ପୁତ୍ରୀ ରୂପେ ଭୂମିର ନାମ ପୃଥ୍ୱୀ ହୋଇଛି । ପୃଥିବୀ ଦୋହନ କଥା ଖୁବ୍ ସଂକ୍ଷେପରେ କହିଲି । ତୁମେ ଆଉ କଣ ଶୁଣିବା ଇଚ୍ଛା କରୁଛ, କୁହ ।

## ଛପ୍ପୟ

"ବିଶ୍ୱାବସୁ କରି ବତ୍ସ ଦୁହେଁୟା ସଙ୍ଗୀତ ଅପ୍ସରନ ।
କପିଲବତ୍ସ ନଭ ପାତ୍ର ସିଦ୍ଧି ଲୀହ୍ନୀ ଦୁହି ସିଦ୍ଧନ ॥
କରେ ରୁଦ୍ର ବର ବତ୍ସ ଭୂତ ପ୍ରେତାଦିକ ଗଣନେ ।
ଲୈ କପାଲ ଇ ପାତ୍ର ଦୁହେଁୟା ରୁଧିରାସବ ସବନେ ॥
ପାତ୍ର ବତ୍ସ କେ ଭେଦ ତେଂ, ଦୁଗ୍ଧ ସବନି ଅଭିମତ ଲୟୌ ।
ତବ ପୃଥୁ ନେ ପୁତ୍ରୀ କରୀ, ପୃଥ୍ୱୀ ନାମ ତବହିଁ ଭୟୌ ॥"



# ପୃଥିବୀ ସଂସ୍କାର

"ଚୂର୍ଣ୍ଣୟନ୍ ସ୍ୱଧନୁଷ୍କୋଟ୍ୟା ଗିରିକୂଟାନିରାଜରାଟ୍ ।
ଭୂମଣ୍ଡଳମିଦଂ ବୈନ୍ୟଃ ପ୍ରାୟଶ୍ଚକ୍ରେ ସମଂବଭୁଃ ॥"
(ଭାଗବତ-୪ର୍ଥ ସ୍କନ୍ଧ ୧୭ଆଧ୍ୟାୟ-୯ ଶ୍ଳୋକ)

## ଛପ୍ପୟ

"ଜବଡ ଖାବଡ଼ ଭୂମି ପରୀ କହୁଁ ପର୍ବତ ଘରୀ ।
ଊଁଚୀ ନୀଚୀ କହୂଁ କହୂଁ, ଜଙ୍ଗଲ କହୁଁ ଝାରୀ ॥
ଲେକେ ପୃଥୁନେ ଧନୁଷ କରୀ ଚୌରସ ସବ ବସୁଧା ।
ଗିରି ଉତ୍ତର ଦକ୍ଷି ଚୁନେ କରୀ ଖେତୀ କୀ ସୁବିଧା ॥
ଭୂମି ସମାନ କରି ନୃପତି, ଗ୍ରାମ ପୁର ପତ୍ତନ ରଚେ ତବ ।
ପହିଲେ ହୋତେ ନ ନଗର ପୁର, ଇତ ଉତ ତରୁତର ବସେ ସବ ।"

ଆବଶ୍ୟକତା ହିଁ ଆବିଷ୍କାରର ଜନନୀ । ଅନ୍ୟ ପକ୍ଷରେ ଆବଶ୍ୟକତା ହିଁ ପତନର ମୂଳ କାରଣ । ଯାହାର ଆବଶ୍ୟକତା ଯେତିକି ବଢେ ତା'ର ଅଶାନ୍ତି ସେତିକି ବଢେ ଓ ସେ ସେତିକି ଦୁଃଖୀ ହୁଏ । କିନ୍ତୁ ଶରୀର ସହିତ ଅବଶ୍ୟକ-ତାର ଘନିଷ୍ଠ ସମ୍ପର୍କ ରହିଛି । ଶରୀରର ଆବଶ୍ୟକତା ମେଣ୍ଟାଇବା ପାଇଁ ଭୋଗ ଭୋଗକରିବାକୁ ପଡ଼େ । ଭୋଗ ଉପଯୋଗୀ ଉପକରଣ ଆବଶ୍ୟକ ହୁଏ । ସେଥି-ପାଇଁ ପ୍ରାରବ୍ଧ ବଶତଃ ଜୀବ ଭୋଗସାମଗ୍ରୀ ଯୋଗାଡ଼ କରେ ଏବଂ ସେଇଥିରେ ମଜ୍ଜି ଯାଏ । ସେହି ପାର୍ଥିବ ଉପାଦାନଗୁଡ଼ିକୁ ସତ୍ୟ ବୋଲି ଭାବି ତାହାର ମମତାବନ୍ଧନରେ ଆବଦ୍ଧ ହୁଏ । କାଶ୍ମୀର ଅଞ୍ଚଳରେ ଏକ ପ୍ରକାର କୀଟ ଦେଖାଯାନ୍ତି । ସେ ତା' ମୁହଁରୁ ରେଶମ ସୂତା ବାହାର କରି ନିଜ ଚାରିପାଖରେ

ଘେରେଇ ହୁଏ ଏବଂ ଶେଷରେ ତାହାରି ଭିତରେ ଲୁଚିଯାଏ । ରେଶମ ସୃଷ୍ଟି-କରିବାର ସାମର୍ଥ୍ୟ ସରିଯିବା ପରେ ପୋକଟି ତା' ଭିତରେ ଆବଦ୍ଧ ହୋଇ ପଡ଼ିରହେ । ଲୋକେ ରେଶମ ସଂଗ୍ରହ ପାଇଁ ଯାଇ ତାକୁ ନେଇଆସନ୍ତି ଏବଂ ଗରମ ପାଣିରେ ପକାଇ ସେଥିରୁ ସୂତା ବାହାର କରନ୍ତି । ସେହି ପୋକଟି ରେଶମ ଖୋଳପା ଭିତରେ ରହି ମୃତ୍ୟୁ ବରଣ କରେ । ଏହି ରେଶମ ବା ଟସର ପୋକ ପରି ଜୀବ ମୋ' ଘର, ମୋ' ପରିବାର, ପଶୁ, ଧନ, ଜନ, ଏହିପରି ମୋର ମୋର କହି ମମତା ବଢ଼ାଏ ଓ ସଂସାର ବନ୍ଧନରେ ପଡ଼ିଯାଏ । କିନ୍ତୁ ଦେଖାଯାଉ-ଥିବା ପାର୍ଥିବ ବସ୍ତୁ ଗୁଡ଼ିକ ତୁମର କି ମୋର ନୁହେଁ । ଏସବୁ ଜିନିଷ ସେହି ନିର୍ମାଣ କର୍ତ୍ତାର, ଯେ ଜିନିଷ ଗୁଡ଼ିକୁ ତିଆରି କରିଛି । ଜଣେ ଧନୀ ଲୋକ ଏକ ବଡ଼ କାରଖାନା କରୁଛନ୍ତି । କାରଖାନାରେ କାମ କରୁଥିବା କର୍ମଚାରୀ ମାନଙ୍କ ପାଇଁ ଗୁଡ଼ାଏ ବାସଗୃହ ତିଆରି କରିଦେଇଛନ୍ତି । କର୍ମଚାରୀମାନେ ସେହି ଗୃହ ଗୁଡ଼ିକରେ ରହନ୍ତି ଏବଂ ପରସ୍ପର ମଧ୍ୟରେ କଳିଗୋଳ କରନ୍ତି । ଏହା ମୋ' ଘର, ମୋ' ଅଗଣା । ଏଠାରେ ତୁମେ ତୁମ ଇଚ୍ଛା ଅନୁସାରେ କିଛି କରି ପାରିବ ନାହିଁ । କିନ୍ତୁ କାମ ସରିବା ପରେ କାରଖାନାର ମାଲିକ ସମସ୍ତଙ୍କୁ ସେଠାରୁ ବାହାର କରି ଦିଅନ୍ତି । ଏଥିରେ ତାର କିଛି ରହିଲା ନାହିଁ କି ମୋର କିଛି ରହିଲା ନାହିଁ । ଏ ସବୁର ସାରକଥା ହେଲା ପାର୍ଥିବ ବସ୍ତୁ ଗୁଡ଼ିଏ ଯୋଗାଡ଼ କରିବା, ସେଗୁଡ଼ିକର ସଂଖ୍ୟା ବଢ଼େଇବା, ଭୋଗ ବିଳାସ ଉପଯୋଗୀ ସାମଗ୍ରୀ ଗୁଡ଼ିକର ପରିବର୍ତ୍ତନ ବା ପରିବର୍ଦ୍ଧନ ଦ୍ୱାରା ପ୍ରକୃତ ଉନ୍ନତି ସାଧିତ ହୁଏ ନାହିଁ । ଏ ପ୍ରକାର ଚିନ୍ତା ବିବଶତା ଓ ଅବନତିର ମୂଳ କାରଣ । ତମୋଭାବାପନ୍ନ ଲୋକେ ଅଧର୍ମକୁ ଧର୍ମ ଓ ଅବନତିକୁ ଉନ୍ନତି ରୂପେ ଅଭିହିତ କରନ୍ତି । ସେମାନେ ପତନକୁ ଉତ୍ଥାନ ବୋଲି ଭାବନ୍ତି । ଏହାକୁ ଅବିଦ୍ୟା କୁହାଯାଏ ।

ପୃଥିବୀ ଦୋହନ କଥା ଶୁଣିବା ପରେ ବିଦୁର ପଚାରିଲେ—ଭଗବାନ୍ ! ଆପଣ ଯାହାସବୁ କହିଲେ ମୁଁ କିଛି ବୁଝିପାରିଲି ନାହିଁ । ପୃଥ୍ୱୀ ଦୋହନର ଅର୍ଥ କଣ ? ବିଦୁର ପ୍ରଶ୍ନରେ ହସି ହସି ମହର୍ଷି ମୈତ୍ରେୟ କହିଲେ—କଣ ତୁମେ କହୁଛ ବିଦୁର ! ଏଥିରେ ବୁଝି ନ ପାରିବା ଭଳି କଣ ରହିଲା ? ସରଳ ଭାବରେ କହିଲେ ମହାରାଜ ପୃଥୁ ପୃଥିବୀକୁ ଏପରି ଏକ ସାଧାସିଧା ଗାଈ କରିଦେଲେ ଯେ ସମସ୍ତେ ତା' ପାଖରୁ ଇଚ୍ଛା ଅନୁସାରେ ଆହାର ସଂଗ୍ରହ କଲେ । ସାଧାସିଧା ସରଳ ଲୋକକୁ ଆମେ କଥାରେ କଥାରେ ଗାଈ ବା ଗୋରୁ କହିଥାଉଁ । ସରଳ ଓ ଉଦାର ପୁରୁଷମାନଙ୍କ ଦ୍ୱାରା ସମସ୍ତଙ୍କର ସୁବିଧା ହୁଏ । କିନ୍ତୁ ଯେ କୃପଣ, ଅନୁଦାର ତା' ଦ୍ୱାରା ସମସ୍ତେ ହଇରାଣ ହୁଅନ୍ତି । କାରଣ ସେ କାହାରି ଚିନ୍ତା

କରେ ନାହିଁ । ସେ କେବଳ ନିଜକଥା ହିଁ ଭାବେ । ମହାରାଜ ପୃଥୁ ଥିଲେ ଉଦାର୍‌ମନା । ତେଣୁ ସେ ସମସ୍ତଙ୍କୁ ଆହାର ଯୋଗାଇଥିଲେ । ପିତା ଝିଅଟିଏ ଜନ୍ମ ଦେଇ ତାକୁ ପାଳନ ପୋଷଣ କରନ୍ତି ଏବଂ ବଡ଼ ହେଲା ପରେ ଯଥାଶକ୍ତି ବସ୍ତ୍ର, ଅଳଙ୍କାର ସହିତ ତାକୁ ସତ୍ପାତ୍ରରେ ଦାନକରନ୍ତି । ତାଙ୍କର ଏ କାର୍ଯ୍ୟ ପରର ମଙ୍ଗଳ ସାଧନା ପାଇଁ ଉଦ୍ଦିଷ୍ଟ । ପରର ଘର କରିବା ଓ ପରର ବଂଶ ବଢ଼େଇବା ପାଇଁ ପିତା କନ୍ୟାର ଲାଳନ ପାଳନ କରନ୍ତି । ସେହିପରି ମହାରାଜ ପୃଥ ପୁତ୍ରକନ୍ୟା ତୁଲ୍ୟ ନିଜର ପ୍ରଜାବର୍ଗଙ୍କ କଲ୍ୟାଣ ନିମିତ୍ତ ଗୋ ସ୍ୱରୂପା ପୃଥିବୀକୁ ଦୋହନ କରିଥିଲେ । ସମସ୍ତଙ୍କୁ ଅନ୍ନ ବସ୍ତ୍ର ଯୋଗାଇଥିଲେ । ସେଥିପାଇଁ ପୃଥିବୀ ତାଙ୍କର ପୁତ୍ରୀ ରୂପେ ପରିଚିତ ହେଲା ।

'ମହାରାଜ ପୃଥୁ ନିଜର କନ୍ୟା ପୃଥିବୀକୁ କିପରି ପାଳନ କରିଥିଲେ' ବୋଲି ବିଦୁର ପଚାରିବାରୁ ମୈତ୍ରେୟ ମୁନି କହିବାକୁ ଲାଗିଲେ—ମହାରାଜ ପୃଥୁଙ୍କ ଆବିର୍ଭାବ ପୂର୍ବରୁ ପୃଥିବୀର ବକ୍ଷ ସମତଳ ନ ଥିଲା । ପାହାଡ଼, ପର୍ବତ, ନଦୀ, ନାଳ ଘନ ଜଙ୍ଗଲ ଓ ଝାଡ଼ରେ ପରିପୂର୍ଣ୍ଣ ଥିବାରୁ ଗୃହବାସ ହୋଇପାରୁ ନ ଥିଲା । ମହାରାଜ ପୃଥୁ ବାଣମାରି ପାହାଡ଼ଗୁଡ଼ିକୁ ମାଟିରେ ମିଶାଇଦେଲେ । କେତେକ ପାହାଡ଼କୁ ଉତ୍ତର ଦିଗରେ ନେଇ ରଖାଇଲେ । ଦେବଦେବ ଶିବଙ୍କୁ କହିଲେ—ମହାରାଜ ! ଆପଣ ବଣ ପାହାଡ଼କୁ ଆଦର କରନ୍ତି । ଅରଖ, ଦୁଦୁରା, ଆଦି ଗ୍ରହଣକରି ଖାଆନ୍ତି । ତେଣୁ ଆପଣଙ୍କ ସୁବିଧା ପାଇଁ ଏହି ଅଖାଡ଼ୁଆ ପାହାଡ଼ ଗୁଡ଼ିକୁ ଏ ପାଖରେ ରଖି ଦେଉଛି । ଶିବ ଉତ୍ତର ଦେଲେ—ଠିକ୍ ଅଛି । ଯାହା କାହାରି ଦରକାର ହୁଏ ନାହିଁ ତାହା ମୋ' କାମରେ ଲାଗେ । ଦେବତାମାନେ ଅମୃତ ବାହାର କଲେ, ମୋତେ ଟିକିଏ ଖବର ବି ଦେଲେ ନାହିଁ । କିନ୍ତୁ ବିଷ ବାହାରିଲା, ସମସ୍ତେ ମିଶି ସେ ବିଷକୁ ମୋ' ମୁଣ୍ଡରେ ଥୋଇଲେ । ହେଉ ତୁମେ ଗୋଟିଏ କାମ କର । ଏହି ପାହାଡ଼ ଗୁଡ଼ିକରେ କିଛି ଅଂଶ ସମାନ କରିଦିଅ ଯେଉଁଠି ମୁନି, ଋଷି, ଜଙ୍ଗଲୀ ଜାତିର ଲୋକେ ବସବାସ କରିପାରିବେ । ସେମାନଙ୍କ ପାଇଁ ଏକ ଦ୍ୱାର ଖୋଲିଦିଅ ।

ଶିବଙ୍କ ଆଦେଶରେ ମହାରାଜ ପୃଥୁ ଏକ ଦ୍ୱାର ନିର୍ମାଣ କରିଦେଲେ । ତାହା 'ହରଦ୍ୱାର' ନାମରେ ଅଭିହିତ । ହରଦ୍ୱାରପରେ କେବଳ ପାହାଡ଼ । ସେହି ପାହାଡ଼ ଗୁଡ଼ିକ ମଧ୍ୟରେ ସ୍ଥାନେ ସ୍ଥାନେ ସମତଳ ଭୂମି ରହିଛି । ଏହିପରି ପାହାଡ଼ ଭଙ୍ଗାଭଙ୍ଗି କରି ପୃଥୁ ପୃଥିବୀର ବହୁ ଅଂଶକୁ ସମତଳ ଓ ଉତ୍ପାଦନକ୍ଷମ କରାଇ-ଥିଲେ । ମହାରାଜ ପୃଥୁ ଯେଉଁ ଯେଉଁ ଅଞ୍ଚଳକୁ ଯାଇଥିଲେ ସେ ସବୁ ଅଞ୍ଚଳ

ସମତଳ ହୋଇଥିଲା । ଦେବଦେବୀଙ୍କ ମନ୍ଦିର ଥିବା ସ୍ଥାନ, ତୀର୍ଥ ସ୍ଥାନଗୁଡ଼ିକ ପୃଥୁଙ୍କ ଅଭିଯାନରୁ ମୁକ୍ତ ଥିଲା । ନୋହିଲେ ପ୍ରାୟ ସମଗ୍ର ପୃଥିବୀକୁ ସେ ସମତଳ ଓ କୃଷି ଉପଯୋଗୀ କରିପାରି ଥିଲେ ।

'କିନ୍ତୁ ଅଖାଡ଼ୁଆ ଜମିକୁ ସମତଳ ନ କରି ଛାଡ଼ିଦେଲେ କାହିଁକି' ବୋଲି ବିଦୁର ପଚାରିବାରୁ ମୈତ୍ରେୟ ମୁନି କହିଲେ—ଲୋକମାନଙ୍କ ଜାଣିବା ପାଇଁ ମହାରାଜ ପୃଥୁ କେତେକ ଅଞ୍ଚଳ ଛାଡ଼ି ଦେଇଥିଲେ । ଲୋକେ ଅନୁମାନ କରି-ପାରିବେ ଯେ ପୃଥିବୀର ଅବସ୍ଥା ପ୍ରଥମେ ଏହିପରି ଥିଲା । ଦକ୍ଷିଣରେ ଏ ପ୍ରକାର ଅଞ୍ଚଳ ଥିବାର ଦେଖାଯାଏ । କନକର ସ୍ଥାନ ପ୍ରଭୃତି ସାଧାରଣତଃ ସମତଳ ଥାଏ । ମହାରାଜ ପୃଥୁଙ୍କ ରାଜଧାନୀ ଗଙ୍ଗା ଯମୁନାର ମଧ୍ୟବର୍ତ୍ତୀ ବର୍ହ୍ମାବର୍ତ୍ତ ପ୍ରଦେଶରେ ଥିଲା । ତେଣୁ ସେ ଅଞ୍ଚଳଟିକୁ ସେ ସୁନ୍ଦର ଭାବେ ସମତଳ କରାଇଥିଲେ । ଏତେ ଉର୍ବର ଭୂମି ଅନ୍ୟତ୍ର ଦେଖାଯାଏ ନାହିଁ । ପୂର୍ବ ଭାଗରେ ଚର୍ମଣ୍ୱତୀ (ଚମ୍ବଲ) ନଦୀ ଯେଉଁଠି ଯମୁନା ସହିତ ମିଶିଛି (ଇଟାଓ୍ୱା) ତା' ପରବର୍ତ୍ତୀ ଅଞ୍ଚଳ ଏବେ ବି ଆବଡ଼ା ଖାବଡ଼ା ହୋଇ ପଡ଼ିରହିଛି । ଦୀର୍ଘ ୧୦।୧୫ ଯୋଜନ ବିସ୍ତୃତ ଏହି ଭୂଖଣ୍ଡରେ ଗ୍ରାମ ନାହିଁ, ନଗର ନାହିଁ କି କୃଷିପାଇଁ ଉପଯୋଗୀ ଭୂମି ନାହିଁ । ସେଥିରୁ ମନେ ହୁଏ ପୃଥୁ ମହାରାଜ ସେଆଡ଼େ ଯାଇ ନ ଥିଲେ । ବଦ୍ରିନାଥଠାରୁ କୈଳାସ ପର୍ଯ୍ୟନ୍ତ ପାହାଡ଼ର ପଶ୍ଚିମରେ ବିସ୍ତୃତ ସମତଳ ଭୂମି ଥିଲେ ମଧ୍ୟ ସେଥିରେ କୌଣସି ଫସଲ ହୁଏ ନାହିଁ । ମରୁଭୂମି ପରି ତାହା ପଡ଼ିରହିଛି ।

ଭୂମି ସମତଳ ହୋଇସିବା ପରେ ଲୋକେ ଘରଦ୍ୱାର କରି ବସବାସ କଲେ । ପଥର, ଇଟା, ମାଟି ଯେଉଁଠି ଯାହା ସୁବିଧା ହେଲା ସେଥିରେ ଘର ତିଆରି ହେଲା । କ୍ରମଶଃ ଗ୍ରାମ, ପୁର, ନଗର, ଦୁର୍ଗ ନିର୍ମାଣ କରାଗଲା । ଶାସକ, ସେନାବାହିନୀ ସୃଷ୍ଟି ହେଲେ । ଭୂମିରୁ ବିଭିନ୍ନ ଧାତବ ଦ୍ରବ୍ୟ ଉଦ୍ଧାର କରାଗଲା । ହାଟ ବଜାର ବସିଲା । କିଣା ବିକା ଚାଲିଲା । କିନ୍ତୁ ମହାରାଜ ପୃଥୁଙ୍କ ପୂର୍ବରୁ ପୃଥିବୀରେ ଗ୍ରାମ, ନଗର ପ୍ରଭୃତିରେ କଳ୍ପନା ମଧ୍ୟ କରାଯାଇ ନ ଥିଲା । ଲୋକେ ପାହାଡ଼' ଗୁମ୍ଫା, ଗଛ ମୂଳରେ ବାସ କରୁଥିଲେ ।

ଶୌନକ ପଚାରିଲେ—ଭଗବାନ୍ ! ମହାରାଜ ପୃଥୁଙ୍କ ପୂର୍ବରୁ କେବଳ ଅସଭ୍ୟ ଲୋକେ ବସବାସ କରୁଥିବାର ଆପଣ କଥାରୁ ଜଣାପଡ଼ୁଛି । ସମସ୍ତେ ବଣ ପାହାଡର ଅଧିବାସୀ, ଅନୁନ୍ନତ ଲୋକ ଥିଲେ । ଯାହାକିଛି ଉନ୍ନତି ଘଟିଛି ସେ ସବୁ ମହାରାଜ ପୃଥୁଙ୍କ ପରେ, ଏହା କଣ ସତ୍ୟ ?

'ସଭ୍ୟ ଅସଭ୍ୟ' ଉନ୍ନତ ଅବନତ, ଏହାର ଅର୍ଥ ଆପଣ କଣ ବୁଝିଛନ୍ତି' ବୋଲି ମହର୍ଷି ସୂତ ପଗ୍ଚରିବାରୁ ଶୌନକ କହିଲେ—ଭଲ ଖାଇବା, ପିନ୍ଧିବା, ପଢ଼ାପଢ଼ି କରି ଦେଶ ବିଦେଶର ସମାଚାର ଜାଣିବା ଆଦି କାର୍ଯ୍ୟ ଯେ କରେ ତାକୁ ଆମେ ସଭ୍ୟ କହୁଁ । ଶ୍ରେଷ୍ଠ ଲୁଗା ପିନ୍ଧିବା, ସାଧାରଣ ଘରେ ରହିବା, ଅଳ୍ପ ଜିନିଷ ପତ୍ର ନେଇ ଚଳିବା ଏବଂ କୌଣସିମତେ ଜୀବନ ନିର୍ବାହ କରୁଥିବା ଲୋକଙ୍କୁ ସାଧାରଣତଃ ଅସଭ୍ୟ ବୋଲି କହୁଥାଉଁ, ସେହିପରି ପ୍ରତିଦିନ ନୂଆ ନୂଆ ବସ୍ତୁର ଉଦଭାବନାକୁ ସଭ୍ୟତା ଏବଂ ପୁରୁଣା ରୀତି ନୀତିରେ ଚଳିବାକୁ ଅସଭ୍ୟତା କୁହାଯାଏ ।

ଶୌନକଙ୍କ ବ୍ୟାଖ୍ୟା ଶୁଣି ମହର୍ଷି ସୂତ ହସି ହସି କହିଲେ—ଭଗବାନ୍ ! ଆପଣ କଳିଯୁଗ ଲୋକଙ୍କ ପ୍ରତିନିଧିତ୍ୱ କରୁଥିବାର ମନେ ହେଉଛି । ସଭ୍ୟତା ଅସଭ୍ୟତା, ଉନ୍ନତି ଅବନତିର ସମ୍ବନ୍ଧ ବାହ୍ୟବସ୍ତୁ ସହିତ ନୁହେଁ ମନ ସହିତ ରହିଛି । ଆପଣ ଯାହାକୁ ସଭ୍ୟତା କହୁଛନ୍ତି ତାହା ପ୍ରକୃତରେ ଅସଭ୍ୟତା ଏବଂ ଯାହାକୁ ଆପଣ ଉନ୍ନତ ବୋଲି ତାହା ବାସ୍ତବରେ ଅବନତ । ମଣିଷର ଯେତିକି ଯେତିକି ସ୍ୱାଭାବିକ ସିଦ୍ଧି କମି ଯାଉଛି ସେ ସେତିକି ସେତିକି ଭୌତିକ ବସ୍ତୁର ଆଶ୍ରୟ ନେଉଛି ଆଉ ଅଧିକରୁ ଅଧିକ ନିଜକୁ କର୍ତ୍ତା ବୋଲି ଭାବୁଛି । ଯେ ଯେଉଁ ମାତ୍ରାରେ ଭୌତିକ ବସ୍ତୁର ଅଧୀନ ହେବ ସେ ସେତିକି ଅସଭ୍ୟ ବୋଲି ଗୃହୀତ ହେବ ।

ଆପଣ ଦେଖନ୍ତୁ, ପ୍ରାଚୀନ କାଳରେ ସତ୍ୟଯୁଗରେ ସମସ୍ତଙ୍କୁ ସ୍ୱାଭାବିକ ସିଦ୍ଧି ମିଳିଥିଲା । ଭୋକ ଲାଗିଲା ତ ଗଛରୁ ଫଳ ତୋଳିଲେ ଖାଇଲେ । ସେତେବେଳେ କୌଣସି ଜିନିଷ ପରି ଆପଣାର ବୋଲି ବିଚାର ବସାଯାଉ ନ ଥିଲା । ଥଣ୍ଡା ବା ଗରମଜନିତ ଭୟ ନ ଥିଲା । ଲୋକେ ମନ ଇଚ୍ଛା ଯିବା ଆସିବା କରୁଥିଲେ । ଯେଉଁଠି ସେଇଠି ଶୋଇ ଯାଉଥିଲେ । ସମୟର ପରିବର୍ତ୍ତନ ସହିତ ଧୀରେ ଧୀରେ ସେ ଶକ୍ତି ହ୍ରାସ ପାଇଲା । କେତେକ କେତୋଟି ଗଛକୁ ସୀମାବଦ୍ଧ କଲେ, ବଢ଼େଇଲେ, ତାର ଫଳ ଖାଇଲେ ଏବଂ ସେଗୁଡ଼ିକୁ ନିଜର ବୋଲି ଭାବିଲେ । ଫଳରୁ ବିହନ ରଖିଲେ, ତାକୁ କ୍ଷେତରେ ବୁଣିଲେ । ଏହି ଭାବରେ ଅଧିକରୁ ଅଧିକ ଉତ୍ପାଦନ ଚିନ୍ତା ଉନ୍ନତି ନୁହେଁ, ଅବନତିର ଲକ୍ଷଣ ।

ପ୍ରଥମେ କେହି ଲୁଗା ପିନ୍ଧୁ ନ ଥିଲେ । ଲୁଗାର ଆବଶ୍ୟକତା ନ ଥିଲା । ସବୁ କିଛି ସହିଯିବାର ଅସମ୍ଭବ ସାମର୍ଥ୍ୟ ଥିଲା । ସମୟକ୍ରମେ ସେ ଶକ୍ତି ନଷ୍ଟ ହୋଇଗଲା । ଲୋକେ ଶୀତ, ଗ୍ରୀଷ୍ମ ସହିପାରିଲେ ନାହିଁ । ପ୍ରଥମେ ବୃକ୍ଷର ବଲ୍କଲ

ପିନ୍ଧିଲେ ଏବଂ କାଳକ୍ରମେ କପା ଗଛ କରି, ସୂତା କାଟି, ଲୁଗା ବୁଣି ପିନ୍ଧିଲେ । ପ୍ରଥମେ ସମସ୍ତେ ଅଧୋବାସ ଓ ଉତ୍ତରୀବାସ ସ୍ୱରୂପ ଦୁଇଖଣ୍ଡ ବସ୍ତ୍ର ବ୍ୟବହାର କରୁଥିଲେ । କାଳକ୍ରମେ ନାନାପ୍ରକାର ବସ୍ତ୍ର ଉଦ୍ଭାବିତ ହେଲା । ଏହି ଉଦ୍ଭାବନ ଉନ୍ନତି ନୁହେଁ ବରଂ ଅବନତିର ସୂଚକ ।

ପ୍ରଥମେ ସମସ୍ତେ ନଦୀର ପାଣି ଉପରେ ନିର୍ଭର କରୁଥିଲେ; କିନ୍ତୁ ଆଳସ୍ୟ ହେତୁ ନଦୀକୁ ନ ଯାଇ କୂଅ ଖୋଳିଲେ । ମାଟିରେ ପାଇପ ତିଆରି କରି ତାକୁ ପୋତି ସେଥିରେ ପାଣି ସଂଗ୍ରହ କଲେ । ସେଥିରେ ହେଲା ନାହିଁ । ପାଇପ୍ ତିଆରି ହେଲା । ଜଳର ଧାରା ଘର ଭିତରେ ପହଞ୍ଚିଲା । ଯେପରି ପୂର୍ବେ ଲୋକେ ମନ ହେଲା ତ ସ୍ୱର୍ଗକୁ ଚାଲିଗଲେ, ପୁଣି ଇଚ୍ଛା ହେଲେ ମର୍ତ୍ତ୍ୟକୁ ଫେରି ଆସୁଥିଲେ । ଦେବତାମାନେ ଈର୍ଷ୍ୟାବଶତଃ ମଣିଷଙ୍କର ସେ ଶକ୍ତିକୁ ନଷ୍ଟ କରିଦେଲେ । ତା'ପରେ ଲୋକେ ମରିବା ପରେ ହିଁ ସ୍ୱର୍ଗକୁ ଗଲେ । ସ୍ୱର୍ଗକୁ ଯିବା ସିନା ବନ୍ଦ ହୋଇଗଲା; କିନ୍ତୁ ବାୟୁବେଗରେ ପାଦରେ ଚାଲି ଯେକୌଣସି ସ୍ଥାନକୁ ଚାଲି ଯାଉଥିଲେ । ସେକାଳ କଥା ଛାଡ଼ନ୍ତୁ, ଏବେ ବି ଜଣେ ଜଣେ ଲୋକ ପ୍ରତିଦିନ ୩୦, ୩୫ କୋଶ ବାଟ ଚାଲିଯାଉଛନ୍ତି । ଲୋକେ ଯେତେବେଳେ ଦୁର୍ବଳ ହୋଇଗଲେ, ସେତେବେଳେ ସେମାନେ ହାତୀ, ଘୋଡ଼ା, ଓଟ ଉପରେ ଚଢ଼ି ଯିବା ଆସିବା କଲେ । ତା'ପରେ ରଥ ତିଆରି ହେଲା, ବିବିଧ ବାହନ ସୃଷ୍ଟି ହେଲା । ସଜୀବ ବାହନରେ କାମ ଚାଲିଲା ନାହିଁ; ତେଣୁ ବାଷ୍ପୀୟ ବାହନ ତିଆରି ହେଲା । ଏସବୁ ଉନ୍ନତି ନୁହେଁ ବରଂ ମଣିଷର ଦୁର୍ବଳତା ଓ ପରାଧୀନତାର ପରିଚାୟକ ।

ପୂର୍ବେ ଲୋକେ ମନୋବଳରେ ସମୁଦ୍ର ପାର ହୋଇ ଯାଉଥିଲେ, କିନ୍ତୁ ସେ ସାମର୍ଥ୍ୟ ହ୍ରାସ ପାଇବା ପରେ ଭେଳା ତିଆରି କଲେ । ତା'ପରେ ନୌକା, ଜାହାଜ, ବାଷ୍ପୀୟ ଜଳଯାନ ତିଆରି ହେଲା । ପ୍ରଥମେ ବିବାହ ବ୍ୟବସ୍ଥା ନ ଥିଲା । ନିଜ ଇଚ୍ଛା ଅନୁସାରେ ଯେକୌଣସି ସ୍ତ୍ରୀଠାରେ ସନ୍ତାନ ଉତ୍ପାଦନ କରାଯାଉଥିଲା । କିନ୍ତୁ ସ୍ତ୍ରୀକୁ କେନ୍ଦ୍ର କରି ଯେତେବେଳେ ପୁରୁଷମାନଙ୍କ ମଧ୍ୟରେ କଳିଗୋଳ ଆରମ୍ଭ ହେଲା, ସେତେବେଳେ ଜଣେ ପୁରୁଷ ପାଇଁ ଜଣେ ସ୍ତ୍ରୀ ନିର୍ଦ୍ଧାରଣ କରିବା ନିମିତ୍ତ ବିବାହ ବ୍ୟବସ୍ଥା ପ୍ରବର୍ତ୍ତିତ ହେଲା । ସେ ବ୍ୟବସ୍ଥା ବେଶୀ ଦିନ ସ୍ଥିର ରହିଲା ନାହିଁ । ସେଥିପାଇଁ କଠୋର ନୀତି ନିୟମ ପ୍ରଣୟନ କରାଗଲା । ତାହା ମଧ୍ୟ ଅସୁବିଧାଜନକ ହେବାରୁ ଛାଡ଼ପତ୍ର ନିୟମ ତିଆରି ହେଲା । ଏସବୁକୁ ସଭ୍ୟତା ବା ଉନ୍ନତି କୁହାଯିବ କି ?"

ପ୍ରଥମେ ବର୍ଣ୍ଣାଶ୍ରମ ଧର୍ମ ବ୍ୟବସ୍ଥା ନ ଥିଲା । ସମସ୍ତେ ଏକ ବର୍ଣ୍ଣର ଅନ୍ତର୍ଗତ ଥିଲେ । ପରସ୍ପର ମଧ୍ୟରେ ଶ୍ରେଷ୍ଠ, ବଡ଼ ଧାରଣା ସୃଷ୍ଟି ହେବା ପରେ ବର୍ଣ୍ଣ କଳ୍ପନା

କରାଗଲା । ପ୍ରଥମେ ଚାରିବର୍ଣ୍ଣ ପରେ ପାରସ୍ପରିକ ସଂଯୋଗରୁ ଅପବର୍ଣ୍ଣ, ଅନ୍ତ୍ୟଜ ବର୍ଣ୍ଣ ଏବଂ କାଳକ୍ରମେ ବହୁବର୍ଣ୍ଣ ସୃଷ୍ଟି ହେଲେ । ସମସ୍ତଙ୍କ କାର୍ଯ୍ୟ ନିର୍ଦ୍ଧାରିତ ହୋଇଗଲା । ତଥାପି ପରସ୍ପର ମଧ୍ୟରେ କଳିଗୋଳ ହେଲା । ଏହା କ'ଣ ସଭ୍ୟତା ? ଲୋକେ ଦେବତାମାନଙ୍କୁ ସନ୍ତୁଷ୍ଟ କରି ଅଲୌକିକ ଶକ୍ତିଲାଭ କରୁଥିଲେ ଏବଂ ଯୁଆଡ଼େ ଇଚ୍ଛା ସେଆଡ଼େ ଯାଇପାରୁଥିଲେ; କିନ୍ତୁ ଦେବତାମାନଙ୍କୁ ପ୍ରସନ୍ନ କରିବାରେ ଅସମର୍ଥ ହେବାରୁ ବାଷ୍ପୀୟ ଯାନ ଉଦ୍ଭାବନ କରି ଆକାଶରେ ଉଡ଼ିଲେ । ଏସବୁ ଉନ୍ନତି ନୁହେଁ, ବରଂ ପତନର ସଙ୍କେତ ଦେଉଛି ।

ଏହା ଶୁଣି ଶୌନକ ପଚାରିଲେ -- ଆପଣ ସବୁ କିଛି ପତନର ଚିହ୍ନ ବୋଲି କହିଲେ; କିନ୍ତୁ ନୂଆ ନୂଆ ଉଦ୍ଭାବନଦ୍ୱାରା କେତେ ଯେ ସୁବିଧା ହେଲା, ସେ କଥା ଆପଣ ଭାବୁନାହାନ୍ତି କାହିଁକି ? ଅଳ୍ପ ସମୟ ଓ ସାମର୍ଥ୍ୟ ବ୍ୟୟରେ ଯେତେ ବେଶୀ କାମ ଏବେ ହୋଇପାରୁଛି ତାହା ପୂର୍ବେ କଣ ହୋଇପାରୁଥିଲା ? ଏହାକୁ ଆପଣ ଅବନତି ବୋଲି କିମିତି କହୁଛନ୍ତି ?

ସୂତ ମହର୍ଷି କହିଲେ—ଭଗବନ୍ ! ସମୟ ହେଉଛି ଅନନ୍ତ । ତାକୁ କେହି ବଢ଼େଇ ପାରିବ ନାହିଁ କି କମେଇ ପାରିବ ନାହିଁ; କିନ୍ତୁ ଦେଖିବା କଥା ହେଉଛି ଏହି ଯେଉଁ ଉଦ୍ଭାବନ ସବୁ ହେଲା, ସେଥିରେ ସଦ୍‌ବୃତ୍ତିର ବିକାଶ ଘଟୁଛି ନା ତା'ର ଅଧୋଗତି ହେଉଛି । ଚାଲି ଚାଲି ଯିବା ଦ୍ୱାରା କେତେପ୍ରକାର ଅନୁଭୂତି ମିଳୁଥିଲା, ବଳବୀର୍ଯ୍ୟର ବିକାଶ ଘଟୁଥିଲା, ଶାନ୍ତି, ପ୍ରୀତି, ମୈତ୍ରୀର ବାର୍ତ୍ତା ପ୍ରସାର ଲାଭ କରୁଥିଲା । ଦୀର୍ଘ ପ୍ରତୀକ୍ଷା ପରେ ପ୍ରିୟଜନର ଆଗମନରେ ଅଲୌକିକ ଆନନ୍ଦ ଜାତ ହେଉଥିଲା; କିନ୍ତୁ ସେ ସବୁ ଆଜି କାହିଁ ? ଆଜିକାଲି ସବୁ କିଛି ଅତି ସାଧାରଣ ହୋଇଯାଇଛି । ନାନାପ୍ରକାର ବସ୍ତୁର ଉଦ୍ଭାବନ ଦ୍ୱାରା ଲୋକମାନଙ୍କର ସଦ୍‌ଗୁଣ ଦିନକୁ ଦିନ ହ୍ରାସ ପାଉଛି । ଭଗବଦ୍ ବିଶ୍ୱାସ କମି ଯାଉଛି । ଲୋକେ ଶୁଷ୍କ, ନିର୍ଦ୍ଦୟ, ହୃଦୟହୀନ, ସ୍ୱାର୍ଥପର, ପରପୀଡ଼କ, ଇନ୍ଦ୍ରିୟଲୋଲୁପ ହୋଇଯାଉଛନ୍ତି ।

ମୁଁ ଆଗରୁ କହିଛି, ବାହ୍ୟବସ୍ତୁ ସହିତ ଉନ୍ନତିର କୌଣସି ସମ୍ବନ୍ଧ ନାହିଁ । ତପସ୍ୱୀ, ସାଧୁ, ଜ୍ଞାନୀ, ମୂର୍ଖ, ଉନ୍ନତ, ଅବନତର ବାହ୍ୟ ସ୍ଥିତି ଏକପ୍ରକାର; କିନ୍ତୁ ଏମାନଙ୍କ ଅନ୍ତର ଭିତରେ ପ୍ରକୃତ ପାର୍ଥକ୍ୟ ରହିଛି । ଜଣେ ଜ୍ଞାନୀ ମୂର୍ଖ ପରି ଯାହା ତାହା ଖାଏ, ପାଗଳ ପରି କଥାବାର୍ତ୍ତା କରେ । ତେଣୁ ଜ୍ଞାନୀ ଓ ମୂର୍ଖ ବାହାରୁ ଏକପ୍ରକାର ଦେଖାଗଲେ ମଧ୍ୟ ଅନ୍ତର୍ଦୃଷ୍ଟିରୁ ଉଭୟ ପରସ୍ପରଠାରୁ ପୃଥକ୍ । ଜ୍ଞାନ ବଳରେ ଜଣକର ଆତ୍ମା ତୃପ୍ତ ଓ ଶାନ୍ତ ଥିବାବେଳେ ଅଜ୍ଞାନତା ହେତୁ ଅନ୍ୟ ଜଣକର ଆତ୍ମା ଅତୃପ୍ତ ଓ ଅଶାନ୍ତ ରହେ । କଳିଯୁଗର ଲୋକେ ଅବନତିକୁ ଉନ୍ନତି ବୋଲି ଭାବନ୍ତି । ଭଲଭାବରେ ଜାଣି ନ ଥିବା; ବୁଝି ନ ଥିବା ବସ୍ତୁ ପ୍ରତି ଆମର ଆଗ୍ରହ ଜାତ ହୁଏ ନାହିଁ । ଏ ଯୁଗର ଲୋକେ ବିବାହ, ଧର୍ମ, କର୍ମ, ବର୍ଣ୍ଣାଶ୍ରମ

ବ୍ୟବସ୍ଥାକୁ ନିନ୍ଦା କରିବେ । ଏପରି ବ୍ୟବହାର କରିବାର ମୁଖ୍ୟ କାରଣ ହେଉଛି ଅଜ୍ଞାନତା । ଲୋକେ ଅଧର୍ମ ଓ ତାମସିକ ଭାବରେ ଶୀକାର ହୋଇଥିବାରୁ ସେମାନଙ୍କର ବିଚାରଶକ୍ତି ହ୍ରାସ ପାଇଛି । ଆଖିରେ ଚଷମା ଦେଇ ସମସ୍ତଙ୍କୁ ଦେଖାଇ ଦେଉଛନ୍ତି ଯେ ଆମେ ଜ୍ଞାନୀ ଓ ପଣ୍ଡିତ; କିନ୍ତୁ ଚଷମା ଦେବାଟା ଯେ ଦୃଷ୍ଟିଶକ୍ତି ହ୍ରାସ, ଜ୍ୟୋତିର କ୍ଷୀଣତା ଓ ବ୍ରହ୍ମଚର୍ଯ୍ୟର ଅଭାବ ସୂଚକ, ତାହା କେତେଜଣ ବିଚାର କରନ୍ତି ?

ଏହା ଶୁଣି ଶୌନକ ପଚାରିଲେ—ଆପଣ ଯାହା ସବୁ କହିଲେ ସେଗୁଡ଼ିକ ସତ କଥା; କିନ୍ତୁ ଗୋଟିଏ ବିଷୟରେ ସନ୍ଦେହ ରହୁଛି । ମହାରାଜ ଉତ୍ତାନପାଦ, ଧ୍ରୁବ ପ୍ରଭୃତିଙ୍କ ଅମଳରେ ଗ୍ରାମ, ନଗର ସବୁ ଥିଲା । ମହାରାଜ ପୃଥୁଙ୍କ ସମୟରେ ସେ ସବୁ ସୃଷ୍ଟି ହେଲା ବୋଲି ଆପଣ କହୁଛନ୍ତି । ଏଥିରୁ କେଉଁ କଥାଟି ସତ୍ୟ ?

ମହର୍ଷି ସୂତ କହିଲେ—ମହାଶୟ ' ପୂର୍ବେ ଯେଉଁ ଗ୍ରାମ, ନଗର, ଦୁର୍ଗ ସବୁ ଥିଲା ସେଗୁଡ଼ିକ ଦିବ୍ୟସ୍ଥାନୀୟ । ସ୍ୱର୍ଗୀୟ ବିମାନ ସଦୃଶ ବିଶିଷ୍ଟ ବିଶିଷ୍ଟ ବ୍ୟକ୍ତିଙ୍କ ପାଖରେ ସେ ସବୁ ଥିଲା; କିନ୍ତୁ ମହାରାଜ ପୃଥୁଙ୍କ ସାଧାରଣ ପ୍ରଜା ଘରଦ୍ୱାର, ଉଦ୍ୟାନ, ଭବନ, ଗ୍ରାମ, ନଗର ନିର୍ମାଣ କରି ରହିବାକୁ ଲାଗିଲେ । ନିୟମ ଅନୁସାରେ ପ୍ରଶାସନ ବ୍ୟବସ୍ଥା ପ୍ରବର୍ତ୍ତିତ ହୋଇଥିଲା । ରାଜଧାନୀ, ରାଜମାର୍ଗ ନିର୍ମାଣ କରାଯାଇଥିଲା । ଆଜିକାଲିର ସମାଜ ବ୍ୟବସ୍ଥାରେ ଯାହା ସବୁ ରହିଛି ସେ ସବୁର ସୂତ୍ରପାତ ହୋଇଥିଲା ମହାରାଜ ପୃଥୁଙ୍କ ସମୟରେ । ଏହା ତ୍ରେତା ଯୁଗର ଘଟଣା । ଲୋକଙ୍କ ସ୍ୱାଭାବିକ ଶକ୍ତି ନଷ୍ଟ ହୋଇଯିବାରୁ ଏ ପ୍ରକାର ବ୍ୟବସ୍ଥା ଆରମ୍ଭ କରାଯାଇଥିଲା । ବର୍ତ୍ତମାନ ମହାରାଜ ପୃଥୁଙ୍କ ଚରିତ ମନୋଯୋଗ ସହକାରେ ଶୁଣନ୍ତୁ ।

## ଛପ୍‌ପୟ

**"ରଚେ ନଗର ଅରୁ ଗ୍ରାମ ଭବନ, ଗୃହ ଅଟା ଅଟାରୀ ।**
**ବାପୀ, କୂପ, ତଡ଼ାଗ, ରାଜପଥ ଅତି ସୁଖକାରୀ ॥**
**ନଗରନି ସୀମା ବନୀ ପୃଥକ୍ ସବ୍ ପ୍ରାନ୍ତ ବନାୟେ ।**
**ମଣ୍ଡଳିକ ଭୂପାଲ ସବନି କେ ଦୁର୍ଗ ସୁହାୟେ ॥**
**କରୀ ବ୍ୟବସ୍ଥା ସବହିଁ ବିଧି, ଦୁଃଖ ସବନି କେ ମେଟଗୟେ ।**
**ରାଜ୍ୟ ନିୟାମକ ପତି ପୃଥୁ, ଆଦି ରାଜ ଭୂ କେ ଭୟେ ॥"**



# ପୃଥୁଙ୍କ ଯଜ୍ଞଦୀକ୍ଷା

"ଅଥାଦୀକ୍ଷତ ରାଜା ତୁ ହୟମେଧଶତେନ ସଃ ।
ବ୍ରହ୍ମାବର୍ତ୍ତେ ମନୋଃ କ୍ଷେତ୍ରେ ଯତ୍ର ପ୍ରାଚୀ ସରସ୍ୱତୀ ॥"

(ଭାଗବତ-୪ର୍ଥ ସ୍କନ୍ଧ-୧୯ ଅଧ୍ୟାୟ-ଶ୍ଲୋକ-୧)

## ଛପ୍‌ପୟ

"ବର୍ଣ୍ଣାଶ୍ରମ କୀ ମିଟୀ ବ୍ୟବସ୍ଥା ସ୍ଥାପିତ କୀହ୍ନୀଁ ।
ଯେ ସବ କରକେ କାଜ ଯଜ୍ଞଶତ ଦୀକ୍ଷା ଲୀହ୍ନୀଁ ॥
ବହେ ସରସ୍ୱତୀ ଜହାଁ, ପୁଣ୍ୟପ୍ରଦ ଭୂମି ସୁହାବନ ।
ଗଙ୍ଗା ଯମୁନା ମଧ୍ୟ ବ୍ରହ୍ମ, ଋଷି ସେବିତ ପାବନ ॥
ମଖ ପୂଜା ତ୍ରେତା କହୀଁ, ଅଶ୍ୱମେଧ ତାତେଁ କରହୁଁ ।
କାଳକ୍ଷେପ କରି ଦେହୁଂ ସିଖ, କରହୁଂ ଅନୁକରଣ ଭବତରହୁଂ ॥"

ସବୁ ଯୁଗରେ, ସବୁ କ୍ଷେତ୍ରରେ ଓ ସବୁ ସମୟରେ ଭଗବାନ ଶ୍ରୀହରି ପୂଜନୀୟ, ବନ୍ଦନୀୟ ଭାବେ ଗୃହୀତ ହୋଇଛନ୍ତି; କିନ୍ତୁ ଦେଶ, କାଳ, ପାତ୍ରଭେଦରେ ତାଙ୍କ ପୂଜା ଓ ଉପାସନାରେ କେତେକ ପାର୍ଥକ୍ୟ ପରିଲକ୍ଷିତ ହୁଏ । ଦେଶ ବିଦେଶର ଉପଲବ୍ଧ ସାମଗ୍ରୀ ଦ୍ୱାରା ପୂଜାକାର୍ଯ୍ୟ କରାଯାଏ । ପାତ୍ର ଅବସ୍ଥା ଅନୁସାରେ ପୂଜା ଆଡ଼ମ୍ବର ପୂର୍ଣ୍ଣ ବା ନିରାଡ଼ମ୍ବର ହୁଏ । କିଏ ବିବିଧ ମଣିମୁକ୍ତା ସମର୍ପଣ କଲାବେଳେ ଆଉ କେହି କେବଳ ତୁଳସୀପତ୍ର ଦ୍ୱାରା ଭଗବାନଙ୍କ ଅର୍ଚ୍ଚନା କରନ୍ତି, କିନ୍ତୁ ବିଭବଶାଳୀ ଲୋକ ଯଦି ନିଜ ସମ୍ପତ୍ତିର ଅଭିମାନ ପ୍ରକାଶ ପାଇଁ ଅଯଥା ଆଡ଼ମ୍ବର କରେ, ତେବେ ସେ ପ୍ରକାର ପୂଜା ହିଂସନ ଓ ଦୂଷିତ ବୋଲି ବୁଝାଯାଏ ।

ଯୁଗ ଅନୁସାରେ ମଧ୍ୟ ପୂଜା ପଦ୍ଧତିରେ ପାର୍ଥକ୍ୟ ଥିବାର ଦେଖାଯାଏ । ସତ୍ୟଯୁଗରେ ଭଗବତ୍ ପ୍ରାପ୍ତି ନିମିତ୍ତ ଧ୍ୟାନକୁ ପୂଜା ରୂପେ ଗ୍ରହଣ କରାଯାଉଥିଲା । ତ୍ରେତାଯୁଗରେ ଯାଗ ଯଜ୍ଞଦ୍ୱାରା ଶ୍ରୀହରିଙ୍କ ପୂଜା ପ୍ରଚଳିତ ଥିଲା । ଦ୍ୱାପର ଯୁଗରେ ବୈଦିକ ଓ ତାନ୍ତ୍ରିକ ମନ୍ତ୍ରର ପ୍ରୟୋଗ କରାଗଲା । କଳିଯୁଗରେ ଭଗବାନଙ୍କ ନାମ ସଂକୀର୍ତ୍ତନକୁ ସହଜ, ସରଳ, ସରସ ଓ ସର୍ବୋତ୍କୃଷ୍ଟ ସାଧନା ରୂପେ ଗ୍ରହଣ କରାଗଲା । ଭଗବତ୍‌ନାମ କୀର୍ତ୍ତନରେ କୌଣସି ବିଧାନ ନାହିଁ । ସମସ୍ତେ ସବୁ ସମୟରେ ସବୁଠି ଭେଦଭାବନା ପରିହାର କରି ନାମ କୀର୍ତ୍ତନରେ ଭାଗ ନେଇପାରିବେ । ଯୁଗ ଅନୁସାରେ ସାଧନା କରୁଥିବା ଲୋକ ସହଜରେ ସିଦ୍ଧିଲାଭ କରେ ।

ମୈତ୍ରେୟ ମୁନି କହିଲେ—ହେ ବିଦୁର ! ମହାରାଜ ପୃଥୁ ଭୂମିକୁ କୃଷି ଓ ବାସୋପଯୋଗୀ କରିଦେବା ପରେ ଲୋକେ ଗୃହଆଦି ଗ୍ରାମ, ନଗର, ପୁର ନିର୍ମାଣ କରି ବସବାସ କଲେ । ପୃଥିବୀର ବହୁ ଅଂଶ ସମତଳ ହୋଇଯାଇଥିବାରୁ ଲୋକମାନେ ସହଜରେ କୃଷିଦ୍ୱାରା ଅନ୍ନାଦି ଉତ୍ପନ୍ନ କଲେ ଏବଂ ଯାଗ, ଯଜ୍ଞ, ଧର୍ମକାର୍ଯ୍ୟ ପ୍ରଭୃତିରେ ମାତିଗଲେ । ପ୍ରଜାମାନଙ୍କର ଶାନ୍ତି ଓ ସନ୍ତୋଷ ଦେଖି ମହାରାଜ ପୃଥୁ ଖୁବ୍ ଆନନ୍ଦିତ ହେଲେ । ତାଙ୍କର ଅକ୍ଷୟ ଯଶକୀର୍ତ୍ତି ଚାରିଆଡ଼େ ପ୍ରଚାରିତ ହେଲା । ଅନ୍ୟ କୌଣସି ପ୍ରତିଦ୍ୱନ୍ଦ୍ୱୀ ରାଜା ନ ଥିବାରୁ ସେ ସପ୍ତଦ୍ୱୀପ ଓ ନବଖଣ୍ଡ ମେଦିନୀର ଏକଚ୍ଛତ୍ର ଶାସକ ରୂପେ ପ୍ରତିଷ୍ଠା ଅର୍ଜନ କଲେ । ଲୋକହିତକର କାର୍ଯ୍ୟରୁ ନିବୃତ୍ତ ହେବା ପରେ ମହାରାଜ ପୃଥୁ ନିଜ ରାଜଧାନୀରେ ଏକ ସମୟରେ ଶତ ସଂଖ୍ୟକ ଅଶ୍ୱମେଧ ଯଜ୍ଞ କରିବା ପାଇଁ ଦୀକ୍ଷା ନେଲେ । ଗଙ୍ଗା ଯମୁନାର ମଧ୍ୟବର୍ତ୍ତୀ ଭୂମି ଯଜ୍ଞକାର୍ଯ୍ୟ ପାଇଁ ସବୁଠାରୁ ଉତ୍କୃଷ୍ଟ ସ୍ଥାନ ରୂପେ ବିବେଚିତ ହେଉଥିଲା । ମୁନିଋଷିମାନେ ସେହି ଅଞ୍ଚଳରେ ରହୁଥିଲେ । ତେଣୁ ସେ ଦେଶକୁ ବ୍ରହ୍ମର୍ଷି ଦେଶ କୁହାଯାଉଥିଲା । ପ୍ରାଚୀ ସରସ୍ୱତୀ ଗୁପ୍ତ ରୂପେ ଆସି ପ୍ରୟାଗଠାରେ ଗଙ୍ଗା ଓ ଯମୁନା ସହିତ ମିଶିଯାଉଛି । ଏହି ସଙ୍ଗମ ତ୍ରିବେଣୀ ସଙ୍ଗମ ନାମରେ ଅଭିହିତ । ଯଜ୍ଞ ପାଇଁ ଏହା ଥିଲା ଶ୍ରେଷ୍ଠ ସ୍ଥାନ । ତ୍ରେତା ଯୁଗର ଆରମ୍ଭ ଥିଲା ସର୍ବଶ୍ରେଷ୍ଠ କାଳ । ମହାରାଜା ପୃଥୁ ଭଗବାନଙ୍କ ଅଂଶାବତାର ହୋଇଥିବାରୁ ଯଜ୍ଞ କରିବା ଯୋଗ୍ୟତମ ଯଜମାନ ଥିଲେ । ଦେଶ, କାଳ ଓ ପାତ୍ର ତିନୋଟି ଯାକ ସର୍ବୋତ୍କୃଷ୍ଟ ଥିବାରୁ ଯଜ୍ଞକାର୍ଯ୍ୟ ଖୁବ୍ ଆଡ଼ମ୍ବର ସହକାରେ ଆରମ୍ଭ ହେଲା ।

ଶୌନକ ପଚାରିଲେ—ଭଗବନ୍ ! ମହାରାଜ ପୃଥୁ ଥିଲେ ଭଗବାନଙ୍କ ଅବତାର । ସାଂସାରିକ ଭୋଗ ବିଳାସ ତାଙ୍କର ଅଭାବ ନ ଥିଲା । ତାଙ୍କ ପକ୍ଷରେ ସ୍ୱର୍ଗ ଥିଲା ଅତି ତୁଚ୍ଛ । ସେ ନିଜେ ମୁକ୍ତ ପୁରୁଷ ଥିବାରୁ ତାଙ୍କର ମୁକ୍ତି କାମନା ମଧ୍ୟ ନ ଥିଲା । ତଥାପି ସେ ଏତେ ଆଡ଼ମ୍ବରରେ ଯଜ୍ଞ କଲେ କାହିଁକି ? ଗୋଟିଏ

ଅଶ୍ୱମେଧ ଯଜ୍ଞ ପାଇଁ କେତେ କେତେ ସାମଗ୍ରୀ ଯୋଗାଡ଼ କରିବାକୁ ପଡ଼େ। କେତେ ପ୍ରକାର କଷ୍ଟ ସହିବାକୁ ହୁଏ। ଆପଣ କହୁଛନ୍ତି ସେ ଶହେଟି ଯଜ୍ଞ ଏକ ସମୟରେ କରିବା ପାଇଁ ଦୀକ୍ଷା ନେଇଥିଲେ। ଏତେ କଷ୍ଟ କାହିଁକି ବରଣ କଲେ ? ତାଙ୍କର କି କାମନା ଥିଲା ?

ମହର୍ଷି ସୂତ ଉତ୍ତର ଦେଲେ—ଭଗବନ୍ ! ଆପଣ କୁହନ୍ତୁ, ସେ ଯଜ୍ଞ ନ କରି ଆଉ କିଏ କରିବେ ? ସେ ଥିଲେ ଦୀର୍ଘାୟୁ। ବହୁକାଳ ଧରି ପୃଥିବୀରେ ତାଙ୍କୁ ରହିବାକୁ ପଡ଼ିଥିଲା। ସେ ନିଜର ସମୟ କଟାଇଥାନ୍ତେ କିପରି ? ଶ୍ରେଷ୍ଠ ପୁରୁଷଗଣ ଯେଉଁ କାର୍ଯ୍ୟ କରନ୍ତି ସାଧାରଣ ଲୋକେ ତାହାର ଅନୁସରଣ କରନ୍ତି। ବଡ଼ ଲୋକମାନେ ଯେଉଁ କଥାକୁ ପ୍ରମାଣ ରୂପେ ଗ୍ରହଣ କରନ୍ତି ଅନ୍ୟ ଲୋକେ ତାହାକୁ ଆଦର୍ଶ ବୋଲି ମାନନ୍ତି। ତେଣୁ ଭଗବତ୍ ଚିନ୍ତନରେ ସମୟ କଟାଇବା ପାଇଁ ମହାରାଜ ପୃଥୁ ଯଜ୍ଞର ଆୟୋଜନ କରିଥିଲେ। ଶାସ୍ତ୍ର ଅନୁସାରେ ଯେ ଆଚରଣ କରନ୍ତି, ଆଚରଣୀୟ ଉପଦେଶକୁ ପ୍ରଚାର କରନ୍ତି ସେ ପ୍ରକୃତ ଆଚାର୍ଯ୍ୟ। ମହାରାଜ ପୃଥୁ ଥିଲେ ଜଣେ ସର୍ବଶ୍ରେଷ୍ଠ ଆଚାର୍ଯ୍ୟ।

'ଭଗବାନଙ୍କ ଆରାଧନା ପାଇଁ ଏକାନ୍ତରେ ଜପ, ତପ ନ କରି ଏପରି ଆଡ଼ମ୍ବରରେ ମାତିବାର ଆବଶ୍ୟକତା କିଣ ଥିଲା' ବୋଲି ଶୌନକ ପଚାରିବାରୁ ସୂତ ମହର୍ଷି କହିଲେ—ଆପଣଙ୍କ କଥା ଠିକ୍। ମହାରାଜ ପୃଥୁ ସେ ସବୁ କରିଥିଲେ। କିନ୍ତୁ ତ୍ରେତା ଯୁଗରେ ଯାଗ ଯଜ୍ଞକୁ ସାଧନାର ମାର୍ଗ ରୂପେ ଗ୍ରହଣ କରାଯାଇ-ଥିଲା। ତେଣୁ ଯୁଗ ଅନୁସାରେ ଯେ ସାଧନାର ମାର୍ଗ ଅନୁସରଣ କରେ ସେ ଶ୍ରେଷ୍ଠ ଓ ଆଦର୍ଶସ୍ଥାନୀୟ ହୁଏ ଏବଂ ଲୋକେ ତାଙ୍କୁ ହିଁ ଅନୁକରଣ କରନ୍ତି। ଯଜ୍ଞର ଆୟୋଜନ ପାଇଁ ତାଙ୍କୁ କଷ୍ଟ ସ୍ୱୀକାର କରିବାକୁ ପଡ଼ି ନ ଥିଲା। କାରଣ, ଅଷ୍ଟସିଦ୍ଧି, ନବନିଧି ମହାରାଜ ପୃଥୁଙ୍କ ହାତ ପାଖରେ ଥିଲା। ତାଙ୍କର ଇଙ୍ଗିତ ମାତ୍ରେ ସବୁ କିଛି ଏକତ୍ରିତ ହୋଇଯାଉଥିଲା। ଏତେଗୁଡ଼ିଏ ଅଶ୍ୱକୁ ବଳି ଦେବା ଏକ ହିଂସାତ୍ମକ କାର୍ଯ୍ୟ। ଏହା ବିଚାର ଯୋଗ୍ୟ। କିନ୍ତୁ ଶାସ୍ତ୍ରୀୟ ବିଧିବିଧାନ ତ ପାଳନ କରିବାକୁ ପଡ଼ିବ। ହିଂସା ରହିତ କାର୍ଯ୍ୟ କରିବା ସବୁବେଳେ ସମ୍ଭବ ନୁହେଁ। ଯିବା, ଆସିବା, ଖାଇବା, ପିଇବା ଏପରିକି ଶ୍ୱାସକ୍ରିୟାରେ ମଧ୍ୟ ହିଂସାର ସ୍ଥାନ ରହିଛି। ଏ ବିଷୟରେ ଶାସ୍ତ୍ର ପ୍ରମାଣ ଗ୍ରହଣୀୟ। ଶାସ୍ତ୍ର ଯାହା ନିନ୍ଦା କରେ ତାହା ହିଁ ନିନ୍ଦନୀୟ। ତେଣୁ ଶାସ୍ତ୍ର ପ୍ରମାଣ ଅନୁସାରେ, ଦେଶ, କାଳ, ପାତ୍ରର ବଳାବଳ ବିଚାର କରି ସର୍ବଦା ହରିସ୍ମରଣରେ ସମୟର ସଦୁପଯୋଗ କରିବା ବାଞ୍ଛନୀୟ। ମହାରାଜ ପୃଥୁ ଗୋଟିଏ ପରେ ଗୋଟିଏ କରି ଶହେଟି ଅଶ୍ୱମେଧ ଯଜ୍ଞ ପାଇଁ ସଂକଳ୍ପ କରିଥିଲେ। ଏହି ଯଜ୍ଞରେ ବେଦବିତ୍ ଅତ୍ରି ଆଦି ମୁନି ଋଷିମାନେ ଭାଗ ନେଇଥିଲେ।

ସ୍ୱୟଂ ମହାରାଜ ପୃଥୁ ଯେଉଁ ଯଜ୍ଞର କର୍ତ୍ତା, ବ୍ରହ୍ମାଙ୍କ ମାନସ ପୁତ୍ର ଅତ୍ରି ମୁନି ଯେଉଁ ଯଜ୍ଞର ପୁରୋହିତ, ସମଗ୍ର ଜୀବଜଗତ ଯେଉଁ ଯଜ୍ଞର ସାହାଯ୍ୟକାରୀ ସେ ଯଜ୍ଞର ପୂର୍ଣ୍ଣତା ବିଷୟରେ କୌଣସି ପ୍ରକାର ସନ୍ଦେହ ନାହିଁ । ମହାରାଜାଙ୍କ ଯଜ୍ଞ ଥିଲା ଅସାଧାରଣ । ସେ ସମୟରେ ସେପରି ଯଜ୍ଞ କେହି କରି ନଥିଲେ । ସେ ଯଜ୍ଞସ୍ଥଳକୁ ସ୍ୱୟଂ ଶ୍ରୀହରି ବିଜୟ କରିଥିଲେ । କେବଳ ଶ୍ରୀହରି ନୁହନ୍ତି ତାଙ୍କ ସହିତ ମୁଖ୍ୟ ପାର୍ଷଦ ନନ୍ଦ, ସୁନନ୍ଦ, ଗନ୍ଧର୍ବ, ଅପ୍ସରା, ଅଷ୍ଟଦିକ୍‌ପାଳ, ସିଦ୍ଧ, ବିଦ୍ୟାଧର, ଦୈତ୍ୟ, ଦାନବ, ଗୁହ୍ୟକ ଏବଂ ନାରଦ, କପିଳ, ଦତ୍ତାତ୍ରେୟ, ସନକ, ସନନ୍ଦନ, ସନାତନ, ସନତ୍‌କୁମାର ଆଦି ଯୋଗେଶ୍ୱରଗଣ ଆସିଥିଲେ ।

ମୈତ୍ରେୟ ମୁନି କହିଲେ—ହେ ବିଦୁର 'ଅଶ୍ୱମେଧ ଯଜ୍ଞ ପାଇଁ ପୃଥୁ ଯେଉଁ ଆୟୋଜନ କରିଥିଲେ ତାହା ବର୍ଣ୍ଣନା କରି ହେବ ନାହିଁ । ଆପଣ ଅନୁମାନ କରନ୍ତୁ ଯେ, ଭଗବତୀ ବସୁନ୍ଧରା ଯାହାର ପତ୍ନୀ ରୂପେ ସମସ୍ତ ସେବା କରୁଥିଲେ ତାଙ୍କ ଯଜ୍ଞରେ ଅଭାବ କଣ ଥିବ । ଚର, ଅଚର ସମସ୍ତେ ପୃଥୁଙ୍କ ଯଜ୍ଞୋତ୍ସବରେ ସହଯୋଗ କରୁଥିଲେ । ଯେତେ ନଦ, ନଦୀ, ବୃକ୍ଷ, ପର୍ବତର ଅଧିଷ୍ଠାତୃ ଦେବାଦେବୀ ଥିଲେ ସେମାନେ ସାକାର ରୂପ ଧାରଣ କରି ସେ ଯଜ୍ଞକୁ ଆସିଥିଲେ ଓ ସେବକ ପରି ସେବାକାର୍ଯ୍ୟ କରିଥିଲେ । ଦୁଧ, ଦହି, କ୍ଷିର, ଘିଅ ନଦୀ ଆକାରରେ ବହିଯାଇ-ଥିଲା । ମଧୁର ଫଳ, ମୂଳରେ ଯଜ୍ଞ ସ୍ଥଳ ପରିପୂର୍ଣ୍ଣ ହୋଇଥିଲା । ସମୁଦ୍ର ଏତେ ପରିମାଣ ମଣି, ମୁକ୍ତା, ପୋହଳାଆଦି ଆଣିଥିଲା ଯେ ତାହା ଗୃହଆଡ଼େ ବିସ୍ତୃତ ହୋଇ ପଡ଼ିଥିଲା । ଭକ୍ଷ୍ୟ, ଭୋଜ୍ୟ, ଲେହ୍ୟ, ପେୟ, ଚର୍ବ୍ୟ, ଚୋଷ୍ୟ ଉପାଦାନରେ ଅନ୍ନାଗାର ପୂରି ରହିଥିଲା । ଯେତେ ଅତିଥି ଆସିଥିଲେ ସମସ୍ତେ ଖାଇ, ପିଇ ସନ୍ତୋଷ ଲାଭ କରିଥିଲେ । ଏହି ଭାବରେ ଅନେକଗୁଡିଏ ଯଜ୍ଞ ପୂର୍ଣ୍ଣ ହେଲା । 'ବର୍ତ୍ତମାନ ସର୍ବଶେଷ ଯଜ୍ଞର ସମ୍ବାଦ ଶୁଣନ୍ତୁ ।

**ଛପ୍‌ପୟ**

**"ହୋହିଂ ଯଜ୍ଞ ଅତି ବିଶଦ କରେଂ ସୁର ଗନ ସବ ସେବା ।**
**ଦେହିଂ ବୃକ୍ଷ ବହୁମୂଲ୍ୟ ଫଲ ଫଲ ମଧୁମୟ ମେବା ।।**
**ଦୂଧ, ଦହି, ଘୃତ, ତକ୍ର ଖୀର ସରିତା ସବ ଲାଓେଂ ।**
**ରୁଚି ପ୍ରିୟ ପରମ ପଦାର୍ଥ ପ୍ରେମତେଂ ପଣ୍ଡିତ ପାଓେଂ ।।**
**ହଲୁଆ ପୁରି କଲେବ, ମାଖନ ମିସିରୀ ଯୋ ଚହୋ ।**
**ଖାଓ ପିୟୋ ପେଟଭରି, ତାନି ଦୁପଟ୍ଟା ସୋ ରହୋ ।।"**

# ପୃଥୁଙ୍କ ଅନ୍ତିମ ଯଜ୍ଞ

"ଚରମେଣାଶ୍ୱମେଧେନ ଯଜମାନେ ଯଜୁଷ୍ପତିମ୍ ।
ବୈନ୍ୟେ ଯଜ୍ଞପଶୁଂ ସ୍ପର୍ଦ୍ଧନ୍ନପୋବାହ ତିରୋହିତଃ ॥"
(ଭାଗବତ-୪ର୍ଥ ସ୍କନ୍ଦ- ୧୯ଆଧ୍ୟାୟ-୧୧ ଶ୍ଳୋକ )

## ଛପ୍ପୟ

"ଯେତେଁ ନୌ ନବ୍ବେ ଯଜ୍ଞ ଭୟେ ଅନ୍ତିମ ଯଜ୍ଞ ଆୟେ ।
ଇନ୍ଦ୍ରାସନ ମମ ଲେହିଂ ଅମରପତି ପେଟ ପିରାୟେ ॥
ବେଷ ବଦଲି କେ ବିଘ୍ନ କରନ ମଖ ଅଶ୍ୱ ଚୁରାୟେ ।
ଚୋରୀ କରିକେ ଚଲେ୍ୟା ଅଗ୍ନିମୁନି ତୁରତ ଲଖାୟେ ॥
କରନୀ ସୁରପତି କୀ ଲଖୋ, ବିଷୟୀ ଭୋଗ ଦୁଃଖ ମୂକ ହୈଂ ।
ଜେ ବିଷୟନି ଅନୁକୂଳ ତୈଂ, ମୋକ୍ଷ ମାର୍ଗ ପ୍ରତିକୂଳ ହୈଂ ॥"

ସେ ମୋ' ଠାରୁ ଧନୀ, ଜ୍ଞାନୀ, ମାନୀ, ଯଶସ୍ୱୀ, ତେଜସ୍ୱୀ, ସୁଖୀ ବା ସମୃଦ୍ଧିଶାଳୀ କାହିଁକି ହେବ ? ଏପ୍ରକାର ଭାବନାକୁ ଅତିଶୟ ଦୋଷ କୁହାଯାଏ । ପ୍ରତ୍ୟେକ ବ୍ୟକ୍ତିଠାରେ ଏ ଦୋଷ ଊଣା ଅଧିକ ଦେଖାଯାଏ । ନିଜର ପରିଚିତ, ସମ୍ପର୍କୀୟ ବା ଜଣାଶୁଣା ଲୋକ ଉନ୍ନତି କରିବାର ଦେଖିଲେ ମନରେ ଏକ ପ୍ରକାର ଈର୍ଷ୍ୟାଭାବ ଜାତ ହୁଏ; କିନ୍ତୁ, କାହିଁକି ଏପରି ଈର୍ଷ୍ୟାଭାବ ଆସେ ତାହା କେହି କହିପାରିବ ନାହିଁ । ହୁଏତ ଏହା ସୃଷ୍ଟିକର୍ତ୍ତାର ଦୋଷ ବା ସେହି ସର୍ବାନ୍ତର୍ଯ୍ୟାମୀଙ୍କ ମହତ୍ତ୍ୱ, ଯାହା ଆମେ ବୁଝିବା ପାଇଁ ଅସମର୍ଥ । କ୍ଷୁଦ୍ର ପିମ୍ପୁଡ଼ିଟିଏଠାରୁ ଆରମ୍ଭ କରି ପିତାମହ ବ୍ରହ୍ମାଙ୍କ ପର୍ଯ୍ୟନ୍ତ ସମସ୍ତେ ନିଜ ନିଜକୁ ସର୍ବଶ୍ରେଷ୍ଠ ବୋଲି ଭାବନ୍ତି । ଅନେକ ଶିଷ୍ଟାଚାର ଦୃଷ୍ଟିରୁ ନିଜକୁ କ୍ଷୁଦ୍ରାଦପି କ୍ଷୁଦ୍ର ବୋଲି କଥାରେ କହନ୍ତି । କିନ୍ତୁ

ତାଙ୍କ କହିବା ଶୈଳୀ ଭିତରେ ଶ୍ରେଷ୍ଠତ୍ୱ ବା ମହତ୍ତ୍ୱ ଭାବ ଲୁଚି ରହିଥାଏ । କେତେକ ନିଜକୁ ଦାସାନୁଦାସ ବୋଲି କହି ହୁଅନ୍ତି । ଆପଣ ସେମାନଙ୍କୁ ଟ୍ରେଟିଏ କାମଟିଏ କରିବା ପାଇଁ କୁହନ୍ତୁ, ତାଙ୍କ ମୁହଁରେ ଗାଳିଦିଅନ୍ତୁ ଦେଖିବେ ସେ କେତେ ଦୂର ନମ୍ର, ଭଦ୍ର, ଶାନ୍ତ ଓ ଶିଷ୍ଟ । ଯେଉଁମାନେ ନିଜକୁ ସେବକ ବୋଲି ପରିଚୟ ଦିଅନ୍ତି ସେମାନଙ୍କ ଆଗରେ କୌଣସି ମହାପୁରୁଷ କଥା ଆଲୋଚନା କଲେ ସେମାନେ ମୁହଁରେ କିଛି କହିବେ ନାହିଁ କିମ୍ବା ଆପଣଙ୍କୁ ଆଦର କରିବେ ନାହିଁ । ଏଥିରୁ ପ୍ରତ୍ୟେକେ କପର ନିଜକୁ କପର ବଡ଼ ବୋଲି ଭାବୁଛନ୍ତି ତାହା ଜଣାପଡୁଛି । ଈଶ୍ୱର ଜୀବର ଅଂଶ ଓ ଅବିନଶ୍ୱର । ନିଜକୁ ଯେ ଶ୍ରେଷ୍ଠ ବୋଲି ଭାବିବ କାହିଁକି ? ଜ୍ଞାତସାରରେ ହେଉ ବା ଅଜ୍ଞାତସାରରେ ହେଉ ସମସ୍ତଙ୍କ ହୃଦୟରେ ଏପ୍ରକାର ଭାବନା ରହିଛି । କିନ୍ତୁ ନିଜକୁ ଅଜ୍ଞାନ ଭାବି ଯେ ଭଗବଦ୍ ଭକ୍ତିରେ ବିଭୋର ହୁଏ ସେ ସଂସାର ବନ୍ଧନରୁ ମୁକ୍ତ ହୁଏ । ଅନ୍ୟର ସମୃଦ୍ଧି ଦେଖି ଯେଉଁମାନେ ଈର୍ଷାପରାୟଣ ହୁଅନ୍ତି ଓ କାର୍ଯ୍ୟରେ ବ୍ୟାଘାତ ସୃଷ୍ଟି କରନ୍ତି ସେମାନଙ୍କୁ କିଏ କୁହାଯିବ, ସେଥିପାଇଁ ଭାଷା ନାହିଁ ।

ମୈତ୍ରେୟ ମୁନି କହିଲେ—ହେ ବିଦୁର ! ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଏହି ତିନିଲୋକରେ ଇନ୍ଦ୍ରପଦ ହେଉଛି ସର୍ବଶ୍ରେଷ୍ଠ ପଦ । ଯେ ଇନ୍ଦ୍ରପଦ ଲାଭ କରେ ସେ ଦେବତା, ଲୋକପାଳ, ଉପଦେବ, ଋଷି, ମୁନି, ମନୁଷ୍ୟ, ପଶୁ, ପକ୍ଷୀ ସମସ୍ତଙ୍କର ପ୍ରଭୁ ଓ ପୂଜନୀୟ ହୁଏ । ଇନ୍ଦ୍ରପଦ ମଧ୍ୟ କାହାର ସ୍ଥିର ରହେ ନାହିଁ । ଆଜି ଯେ ଇନ୍ଦ୍ର କାଲି ସେ ପିମ୍ପୁଡ଼ି ହୋଇଯାଇପାରେ । ଯେ ନିର୍ବିଘ୍ନରେ ଶତ ଅଶ୍ୱମେଧ ଯଜ୍ଞ ପୂର୍ଣ୍ଣ କରେ ସେ ଇନ୍ଦ୍ରପଦର ଅଧିକାରୀ ହୁଏ । ତେଣୁ ଇନ୍ଦ୍ରଙ୍କୁ ଶତକ୍ରତୁ କହନ୍ତି । କେହି ଜଣେ ଯାଗ ଯଜ୍ଞ କଲେ ଇନ୍ଦ୍ର ବ୍ୟସ୍ତ ହୋଇ ପଡ଼ନ୍ତି, କାଳେ ତାଙ୍କର ଇନ୍ଦ୍ରପଦ ଚାଲିଯିବ । ଜଣେ ତେଜସ୍ୱୀ, ତପସ୍ୱୀ ଓ ପ୍ରଭାବଶାଳୀକୁ ଦେଖିବାମାତ୍ରେ ଇନ୍ଦ୍ର ବ୍ୟାକୁଳ ହୁଅନ୍ତି । ମହାରାଜ ପୃଥୁ ଅନେକଗୁଡ଼ିଏ ଯଜ୍ଞ କରି-ସାରିବାର ଦେଖି ଇନ୍ଦ୍ର ଭୟଭୀତ ହୋଇପଡ଼ିଲେ । 'ଶତତମ ଯଜ୍ଞ ପୂର୍ଣ୍ଣ ହେଲେ ମୋତେ ଇନ୍ଦ୍ରପଦ ତ୍ୟାଗ କରିବାକୁ ହେବ' ଏହାଭାବି ଦେବରାଜ ଇନ୍ଦ୍ର କପରି ପୃଥୁଙ୍କ ଶତାଶ୍ୱମେଧ ଯଜ୍ଞ ପୂର୍ଣ୍ଣ ନ ହେବ ସେଥିପାଇଁ ଉପାୟ ଚିନ୍ତାକଲେ ।

ଇନ୍ଦ୍ରଙ୍କର ଏ ପ୍ରକାର ଭାବନା ଆଦୌ ଯୁକ୍ତିଯୁକ୍ତ ନୁହେଁ । କାରଣ ଭଗବାନଙ୍କ ଅଂଶାବତାର ମହାରାଜ ପୃଥୁଙ୍କ କୋପରେ ଇନ୍ଦ୍ରପଦର ଆବଶ୍ୟକତା ନ ଥିଲା । ତାଙ୍କ ଆଗରେ ଶହ ଶହ ଇନ୍ଦ୍ର ହାତଯୋଡ଼ି ଠିଆ ହେଉଥିଲେ; କିନ୍ତୁ ଯାହାକୁ ଯାହା ଭଲ ଲାଗେ ସେ ତାକୁ ହିଁ ସର୍ବସ୍ୱ ବୋଲି ଭାବେ ଏବଂ ଅନ୍ୟମାନେ

ତାହାର ପର ଭାବୁଥିବେ ବୋଲି ସେ ଚତୁର କଚେ । କୁକୁରଟିଏ ହାଡ଼ ଖଣ୍ଡିଏ ଧରି ଯାଉଛି । ଇନ୍ଦ୍ର ତାଙ୍କ ଐରାବତ ହାତୀ ଚଢ଼ି ଯାଉଛନ୍ତି । କୁକୁରଟି ଇନ୍ଦ୍ରଙ୍କୁ ଦେଖି ଆତଙ୍କରେ ଲୁଚିଯାଉଛି, କାଳେ ଇନ୍ଦ୍ର ତା'ର ସେ ହାଡ଼ଖଣ୍ଡିକ ଛଡ଼ାଇ ନେବେ । ସେହିପରି ଶିଆଳଟିଏ ପଶୁ ମାଂସ ଖଣ୍ଡି ନେଇ ଯିବାବେଳେ ଦୂରରୁ ସିଂହକୁ ଦେଖି ଡରିଯାଏ, କାଳେ ତାର ମାଂସ ଖଣ୍ଡିକ ସିଂହ ନେଇଯିବ; କିନ୍ତୁ ଇନ୍ଦ୍ର ବା ସିଂହ ପକ୍ଷରେ ସେ ହାଡ ବା ପଶୁ ମାଂସ ଖଣ୍ଡିକର କୌଣସି ପ୍ରୟୋଜନ ନାହିଁ । ଜୀବ ସବୁବେଳେ ନିଜର ଭାବନା ଅନ୍ୟ ଉପରେ ଆରୋପ କରେ । ତେଣୁ ଇନ୍ଦ୍ର ଭାବିଲେ ତାଙ୍କର ଇନ୍ଦ୍ରପଦ ପାଇଁ ମହାରାଜ ପୃଥୁ ଶତ ଅଶ୍ୱମେଧ ଯଜ୍ଞ କରୁଛନ୍ତି । ଯେ କୌଣସି ଉପାୟରେ ଯଜ୍ଞକୁ ପୂର୍ଣ୍ଣ କରାଇଦେବା ଉଚିତ ହେବ ନାହିଁ ।

ଇନ୍ଦ୍ର ଏପ୍ରକାର ବିଚିତ୍ର ବେଶ ଧାରଣ କଲେ । ଧୂର୍ତ୍ତ ଲୋକେ ବେଶ ବଦଳାଇ ଲୋକଙ୍କୁ ଠକନ୍ତି । ସାଧୁ ଲୋକର ବେଶ ଧରନ୍ତି; କିନ୍ତୁ ଅସାଧୁ ଲୋକର କାର୍ଯ୍ୟ କରନ୍ତି । ଉପର ବେଶରୁ ସାଧୁତା ପ୍ରକାଶ ପାଉଥିଲେ ମଧ୍ୟ ଭିତରେ ଅସାଧୁତା ପୂରିଥାଏ । ଦୁଷ୍ଟ, ବଦମାସ୍, ପାଷଣ୍ଡ, କପଟାଚାରୀ ଲୋକେ ଏହି ବେଶ ଧାରଣ କରନ୍ତି । ଏହିପରି ଧାର୍ମିକ ବେଶ ଧରି ଅଧାର୍ମିକମାନେ ପାପର ପ୍ରଚାର କରି ଥାଆନ୍ତି । ଯେ ଭିତରେ ପ୍ରକାରେ, ବାହାରେ ଆଉ ପ୍ରକାରେ ରୂପ ଧରି ଅଧର୍ମ ପ୍ରଚାର କରନ୍ତି କେହି ତାଙ୍କ କଥା ଶୁଣନ୍ତି ନାହିଁ । ସେମାନେ କେବଳ ସରଳ ଲୋକଙ୍କୁ ଠକାନ୍ତି । ଇନ୍ଦ୍ର ସେହିପରି ଜଣେ ପାଷଣ୍ଡର ରୂପ ଧାରଣ କଲେ । ମୁଣ୍ଡରେ ଲମ୍ବା ଜଟା, ମୁହଁରେ ଲମ୍ବା ଦାଢ଼ି, କପାଳରେ ତିଳକ, ପରିଧାନ ଗେରୁଆ ଲୁଗା, ହାତରେ ମାଳା ଧରି ଇନ୍ଦ୍ର ମହାରାଜ ପୃଥୁଙ୍କୁ ଠକିବା ପାଇଁ ବାହାରିଲେ । ସେ ଭାବିଲେ, ଅଶ୍ୱମେଧରେ ଅଶ୍ୱର ପ୍ରାଧାନ୍ୟ ରହିଛି, ତେଣୁ କୌଣସିମତେ ଯଜ୍ଞ ଅଶ୍ୱକୁ ହରେଇ ନେଲେ ଯଜ୍ଞ ହୋଇପାରିବ ନାହିଁ । ଏହା ଭାବି ଇନ୍ଦ୍ର ଗୋପନରେ ଯଜ୍ଞ ଅଶ୍ୱକୁ ଚୋରାଇ ନେଲେ ।

ତିରସ୍କରଣୀ ବିଦ୍ୟା ପ୍ରଭାବରେ ଇନ୍ଦ୍ରଙ୍କୁ କେହି ଦେଖି ପାରୁ ନ ଥିଲେ ମଧ୍ୟ ସବଙ୍କ ମୁନି ଅତ୍ରି ଦେଖିଲେ ଧାର୍ମିକ ବେଶ ଧରି ଇନ୍ଦ୍ର ଅଧର୍ମ କାର୍ଯ୍ୟ କରୁଛି । ଈର୍ଷ୍ୟାବଶତଃ ନିଜ ପଦପ୍ରତିଷ୍ଠା ଭୁଲି ଚୋରି ପରି ଗର୍ହିତ କାର୍ଯ୍ୟ କରିବାକୁ ମଧ୍ୟ ଇନ୍ଦ୍ର ପଶ୍ଚାତ୍ପଦ ହେଲେନାହିଁ । ତାଙ୍କର ଏପରି ନିର୍ଲଜ କାମ ଦେଖି ଅତ୍ରି ଇନ୍ଦ୍ରଙ୍କ ଉପରେ ରାଗିଗଲେ । ମହାରାଜ ପୃଥୁ ତ ଦୀକ୍ଷା ନେଇ ବସିଥାନ୍ତି । ସେ ଆସନରୁ ଉଠିବା କଥା ନୁହେଁ କି କ୍ରୋଧପ୍ରକାଶ କରିବା ଉଚିତ ନୁହେଁ । ଭଗବାନ ଅତ୍ରିଙ୍କ ପାଖରେ ମହାରାଜ ପୃଥୁଙ୍କ ବଡ଼ ପୁଅ ବସିଥିଲା । ଋଷି ତାକୁ କହିଲେ—

ଦେଖ, ଦେଖ, ବଡ଼ ଅସୁବିଧା ହେଲା । ତୋ ବାପର ଯଜ୍ଞ ଅଶ୍ୱକୁ ଇନ୍ଦ୍ର ଚୋରିକରି ନେଇଯାଉଛନ୍ତି । ତୁ ଶୀଘ୍ର ଯାଇ ଇନ୍ଦ୍ର ପାଖରୁ ଘୋଡ଼ାକୁ ଛଡ଼େଇ ଆଣ ।

ଏକଥା ଶୁଣିବା ମାତ୍ରେ ରାଜକୁମାର ଧନୁଶର ଧରି ଇନ୍ଦ୍ରଙ୍କ ପଛରେ ଦୌଡ଼ିଲେ । ଯଜ୍ଞ ଅଶ୍ୱକୁ ନେଇ ଇନ୍ଦ୍ର ଆକାଶ ମାର୍ଗରେ ଦ୍ରୁତଗତିରେ ଯାଉଥିଲେ । ରାଜକୁମାର ଦୂରରୁ ଚିତ୍କାର କରି ଡାକିଲେ—ଆରେ ନୀଚ, କିଏ ତୁ । ଠିଆ ହୁଅ । ମୋ' ବାପାଙ୍କ ଘୋଡ଼ାକୁ ନେଇଯାଉଛୁ କାହିଁକି ?

ରାଜାର ମନ ଦୁର୍ବଳ । ଇନ୍ଦ୍ର ଠିଆ ହୋଇଗଲେ । ତାଙ୍କ ଜଟା, ଦାଢ଼ି, ତ୍ରିପୁଣ୍ଡ୍ର, ରୁଦ୍ରାକ୍ଷ ମାଳା ଦେଖି ରାଜକୁମାର ଭାବିଲେ ଏ ଯେ ସ୍ୱୟଂ ଶିବ । ଧର୍ମାତ୍ମା ପୃଥୁ କୁମାର ତାଙ୍କୁ ପ୍ରଣାମ ଜଣାଇଲେ । ସେ ଭାବିଲେ—ଭଗବାନ ଅତ୍ରି ମୋତେ କହିଲେ ଅଶ୍ୱକୁ ଇନ୍ଦ୍ର ନେଇଯାଉଛି ବୋଲି । ଏ ମହାଶୟ ତ ଜଣେ ଧାର୍ମିକ ଯୋଗୀ । ତାଙ୍କୁ ବାଣ ବିଦ୍ଧ କରି ପାପଭାଗୀ ହେବି କାହିଁକି ? ତେଣୁ ସେ ସେଠାରୁ ଫେରିବାକୁ ସ୍ଥିର କଲେ । ତଳେ ଥାଇ ମହର୍ଷି ଅତ୍ରି ଏ ସବୁ ଲକ୍ଷ୍ୟ କରୁଥିଲେ । ସେ ବଡ଼ପାଟିରେ ସେଇଠୁ କହିଲେ—ରାଜକୁମାର ! ତୁ ଇନ୍ଦ୍ରର ବେଶ ଦେଖି ଭୁଲି ଯାଆନା । ସେ ନୀଚ କପଟ ବେଶ ଧାରଣ କରିଛି । ଠକେଇବା ପାଇଁ ସେ ସାଧୁ ବେଶ ଧରିଛି । ସେ ହିଁ ଈର୍ଷ୍ୟାପରାୟଣ ସୁରାଧମ ଇନ୍ଦ୍ର । ତା' ପ୍ରତି ଦୟା କରନା । ଆଜି ତାକୁ ସେଇଠି ଶେଷ କରିଦେ । ସମସ୍ତଙ୍କର ତପସ୍ୟା ଓ ଯଜ୍ଞରେ ସେ ନାନା ବିଘ୍ନ ସୃଷ୍ଟି କରୁଛି । ତାକୁ ଜୀବନରେ ଛାଡ଼ିଦେବା ଉଚିତ ହେବ ନାହିଁ ।

ମହର୍ଷି ଅତ୍ରିଙ୍କ ଉପଦେଶ ଶୁଣି ରାଜକୁମାର ପୁଣି ଇନ୍ଦ୍ରଙ୍କୁ ଅନୁସରଣ କଲେ ଏବଂ ଶର ନିକ୍ଷେପ କଲେ; କିନ୍ତୁ ଧାର୍ମିକ ଲୋକେ ସାଧୁ ବେଶକୁ ମଧ୍ୟ ସମ୍ମାନ ଦିଅନ୍ତି । ସେ ଭାବିଲେ—ଯାହାହେଲେ ବି ଇନ୍ଦ୍ର ଧାର୍ମିକ ବେଶ ଧାରଣ କରିଛନ୍ତି । ମୁଁ ତାଙ୍କୁ ଶରବିଦ୍ଧ କରିବି ନାହିଁ । ଏହି ସମୟରେ ଇନ୍ଦ୍ର ଘୋଡ଼ାଟି ଛାଡ଼ି, ନିଜ ବେଶ ପରିତ୍ୟାଗ କରି ପଳାଇଗଲେ । ରାଜକୁମାର ଘୋଡ଼ାକୁ ନେଇ ପିତାଙ୍କ ଯଜ୍ଞ କ୍ଷେତ୍ରରେ ପହଞ୍ଚିଲେ । ଋଷି, ମୁନିଗଣ ରାଜକୁମାରଙ୍କ ବୀରତ୍ୱ ଦେଖି ସ୍ତମ୍ଭୀଭୂତ ହୋଇଗଲେ ଏବଂ କୁମାରଙ୍କୁ ଭୂରି ଭୂରି ପ୍ରଶଂସା କଲେ । ଇନ୍ଦ୍ରଙ୍କୁ ଜୟ କରି ଅଶ୍ୱଟି ଫେରାଇ ଆଣିଥିବାରୁ ରାଜକୁମାର 'ବିଜିତାଶ୍ୱ' ଉପାଧିରେ ଭୂଷିତ ହେଲେ ।

ମୈତ୍ରେୟ ମୁନି କହିଲେ—ଅଶ୍ୱଟି ଅଣାଯିବା ପରେ ଯଜ୍ଞ କାର୍ଯ୍ୟ ଯଥାବିଧି ଚାଲିଲା; କିନ୍ତୁ ଏଥିରେ ଇନ୍ଦ୍ର ଭୀଷଣ ଅସନ୍ତୁଷ୍ଟ ହେଲେ । କାରଣ, ସେ ସିଦ୍ଧାନ୍ତ କରିଥିଲେ ଯେ କୌଣସି ଉପାୟରେ ହେଉ ପଛେ ଅନ୍ତିମ ଯଜ୍ଞକୁ ପୂର୍ଣ୍ଣ କରିବାକୁ ଦିଆଯିବ ନାହିଁ । ଇନ୍ଦ୍ର ସ୍ୱାର୍ଥବଶତଃ ବିଚାରଶୂନ୍ୟ ହୋଇ ପଡ଼ିଥିଲେ । ତେଣୁ ଯଜ୍ଞରେ ବିଘ୍ନ ସୃଷ୍ଟି ପାଇଁ ସେ ଅନ୍ୟ ଉପାୟ ଚିନ୍ତା କରିବାକୁ ଲାଗିଲେ ।

## ଛପ୍ପୟ

"ଚୌର ଇନ୍ଦ୍ରକୁଁ ଅଗ୍ନି ଦେଖାଓ ପୃଥୁ କୁମାରକୁଁ ।
ବତ୍ସ ! ବେଗି ଜା ପକର ପୁରନ୍ଦର ଚୌର ଜାରକୁଁ ॥
ସୁନତ ରାଜସୁତ ଶୀଘ୍ର ଶକ୍ର କୀ ଓର ସିଧାର୍ୟୋ ।
ସାଧୁ ସମଝି କେ ସହୃହୁ କୁମର ଫିର ନହିଁ ସର୍ ମାରୟୋ ॥
ଅଶ୍ୱ ବିଜୟ କରି ଇନ୍ଦ୍ରତେଁ, ଲାୟୋ ସୁଖ ସବକୁ ଭୟୋ ।
ଋଷି, ମୁନି ମିଲି ବିଜିତାଶ୍ୱ ବର, ନାମ କୁଁ ବରକୁଁ ଭବ ଦୟୋ ॥"



# ଯଜ୍ଞ ଭଙ୍ଗ ପାଇଁ ଇନ୍ଦ୍ରଙ୍କ ଉଦ୍ୟମ

"ଉପସୃତ୍ୟ ତମସ୍ତ୍ରାତ୍ରଂ ଜହାରାଶ୍ୱଂ ପୁନର୍ହରିଃ ।
ଚଷାଳଯୂପତଶ୍ଛନ୍ନୋ ହିରଣ୍ୟରଶନଂ ବିଭୁଃ ।।"

(ଭାଗବତ-୪ର୍ଥ ସ୍କନ୍ଧ-୧୯ ଅଧ୍ୟାୟ-ଶ୍ଳୋକ-୧୯)

## ଛପ୍ପୟ

"ଇନ୍ଦ୍ର ହୃଦୟ ମହିଁ ମଚୀ କୁଳବୁଲୀ ବିଗରେ ମଖ କସ ।
ଅବକେ ଚୁପ୍‌କେ ଜାଇ ଅଶ୍ୱ ଲଉଁ ସୋଚ୍ୟୋ ଅସ ।।
ଅନ୍ଧକାର କରି ପକରି ଅଶ୍ୱକୂଁ ସୁରପତି ସଟଗ୍ୟୋ ।
ଅତ୍ରି କୀନ୍ହ ସଙ୍କେତ କୁମର ଫିରି ପୀଛେ ଲଗ୍ୟୋ ।।
ସାଧୁ ବେଷ ଲଖି ଫିରି କୁମର, ହିଚକ୍ୟୋ ମୁନି ମାରେ କହ୍ୟୋ ।
ଛୋଡ୍ୟୋ ଶର ବିଜିତାଶ୍ୱତବ, ଅନ୍ତର୍ହିତ ଶତକ୍ରତୁ ଭୟୋ ।।"

ସ୍ୱାର୍ଥ ବଶୀଭୂତ ହୋଇ ମଣିଷ ମାନ, ପ୍ରତିଷ୍ଠା, ଲଜ୍ଜା, ସଙ୍କୋଚ ସବୁକିଛି ପରିତ୍ୟାଗ କରେ । ନିଜର ସ୍ୱାର୍ଥରକ୍ଷା ଓ ନିଜର ହିତ ପାଇଁ ସେ ସବୁବେଳେ ଚିନ୍ତିତ ରହେ । ନିଜ କର୍ତ୍ତବ୍ୟ ଭୁଲିଯିବା ସଙ୍ଗେ ସଙ୍ଗେ ସ୍ୱାର୍ଥାନ୍ଧ ମଣିଷ ନିଜେ ବିଚାର ଓ ବିବେକକୁ ବଳି ଦେଇଦିଏ । ସଂସାର ସୁଖ ଚିରଦିନ କାହାର ରହେ ନାହିଁ । ପାର୍ଥିବ ସୁଖ ନଶ୍ୱର ଓ ପରିବର୍ତ୍ତନଶୀଳ ଏବଂ ପରିଣାମ ଦୁଃଖଦାୟକ । ତଥାପି ମଣିଷ ସେଥିପାଇଁ ପ୍ରାଣପଣେ ଚେଷ୍ଟା କରେ । ସ୍ୱାର୍ଥବଶୀଭୂତ ମଣିଷ ଧର୍ମାଧର୍ମ ବିଚାର କରେ ନାହିଁ । ଏସବୁ ଭଗବାନଙ୍କ ମାୟା ଛଡ଼ା ଆଉ କିଛି ନୁହେଁ । ଭଗବାନଙ୍କର ଯାହା ପ୍ରତି ଦୟା ହେବ ସେ ହିଁ କେବଳ ବିଷୟା ଦୁଃଖରୁ ମୁକ୍ତ ହୁଏ ।

ମୈତ୍ରେୟ ମୁନି କହିଲେ—ହେ ବିଦୁର ! ପୃଥୁ କୁମାର ବିଜିତାଶ୍ୱ ଯେତେବେଳେ ଯଜ୍ଞୀୟ ଅଶ୍ୱକୁ ଫେରାଇ ଆଣିଲେ ସେତେବେଳେ ଇନ୍ଦ୍ର ଡରିଗଲେ । ଯଜ୍ଞ ଭଙ୍ଗ କରିବା ପାଇଁ ସେ ଏକ କାପାଳିକବେଶ ଧାରଣ କଲେ । ସାରା ଦେହରେ ଭସ୍ମ ବୋଳି ହୋଇ ଜଟା ଖୋଲି, ଆଖି ଲାଲ୍ କରି ହାତରେ କପାଳ ଓ ଖଟ୍ୱାଙ୍ଗ ଧରି ଇନ୍ଦ୍ର ଯଜ୍ଞ କ୍ଷେତ୍ରରେ ଆସି ପହଞ୍ଚିଲେ । ତାଙ୍କ ମାୟାରେ ଚାରିଆଡ଼େ ଅନ୍ଧାର ଘୋଟିଗଲା ।

ଯଜ୍ଞ ବେଦୀରେ ଏକ ଖମ୍ବ ଥାଏ, ତାହାକୁ ଯୂପ କହନ୍ତି । ଯଜ୍ଞୀୟ ପଶୁ ସେହି ଯୂପ ସ୍ତମ୍ଭରେ ବନ୍ଧାଯାଏ । ତା' ଆଗରେ ବଳୟ ଆକାରର ଏକ କାଠ ଥାଏ, ତାକୁ 'ଚଷାଳ' କହନ୍ତି । ଚଷାଳଯୁକ୍ତ ଯଜ୍ଞସ୍ତମ୍ଭରେ ଏକ ସୁବର୍ଣ୍ଣ ଶିକୁଳିରେ ମହାରାଜ ପୃଥୁଙ୍କ ଯଜ୍ଞ ଅଶ୍ୱ ବନ୍ଧା ହୋଇଥିଲା । ଦିଗ୍‌ବିଜୟ ପରେ ଅଶ୍ୱଟି ଫେରି ଆସିଥିଲା । ସେହି ଅଶ୍ୱ ବିନା ଅଶ୍ୱମେଧ ଯଜ୍ଞ ପୂର୍ଣ୍ଣାଙ୍ଗ ହୋଇପାରିବ ନାହିଁ ।

ଇନ୍ଦ୍ରଙ୍କ ମାୟାରେ ଚାରିଆଡ଼ ଅନ୍ଧାର ହୋଇଯିବାରୁ କିଛି ଦେଖାଯାଉ ନ ଥିଲା । ସେହି ଅନ୍ଧାର ମଧ୍ୟରେ ଇନ୍ଦ୍ର ଘୋଡ଼ାକୁ ଯୂପରୁ ଫିଟାଇ ନେଇ ଆକାଶ ମାର୍ଗରେ ପଳାଇଲେ । କିନ୍ତୁ ଏକଥା ଅତ୍ରି ମୁନିଙ୍କୁ ଅଜ୍ଞାତ ରହିଲା ନାହିଁ । ନିଜର ଦିବ୍ୟ ଦୃଷ୍ଟିରେ ସେ ଇନ୍ଦ୍ରଙ୍କୁ ଘୋଡ଼ା ନେଇ ପଳାଉଥିବାର ଦେଖି ବିଜିତାଶ୍ୱଙ୍କୁ କହିଲେ— ବାବୁ ! ଶୀଘ୍ର, ଶୀଘ୍ର ଯା । ଇନ୍ଦ୍ର ପୁଣି ଅଶ୍ୱ ନେଇ ପଳାଉଛି, ବାରମ୍ବାର ବିଘ୍ନ ସୃଷ୍ଟି କରୁଛି । ତୁ ଶୀଘ୍ର ଯାଇ ଅଶ୍ୱକୁ ମୁକ୍ତ କରି ଆଣ ଏବଂ ଇନ୍ଦ୍ରକୁ ମଧ୍ୟ ଶେଷ କରିଦେ ।

ଏହା ଶୁଣି ବିଜିତାଶ୍ୱ ଧନୁଶର ଧରି ଇନ୍ଦ୍ରଙ୍କ ପଛେ ପଛେ ଗୋଡ଼ାଇଲେ । କିନ୍ତୁ ଇନ୍ଦ୍ରଙ୍କୁ ଜଟାମୁକୁଟ ମଣ୍ଡିତ, କପାଳ ଖଟ୍ୱାଙ୍ଗଶୋଭିତ ଭସ୍ମ ବିଲେପିତ ହୋଇଥିବାର ଦେଖି ଧର୍ମଧାରୀ ରାଜକୁମାର କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ । ଏହା ଲକ୍ଷ୍ୟ କରି ମହର୍ଷି ଅତ୍ରି ଆଦେଶ ଦେଲେ— ପୁଅ, ବେଶ ପୋଷାକ ମୋହରେ ଭୁଲିଯାଅନା । ସେ ଏକ ପାଷାଣ୍ଡ ବେଶ । ଏହା ଶୁଣି ବିଜିତାଶ୍ୱ ଶର ନିକ୍ଷେପ କରିବା ମାତ୍ରେ ଇନ୍ଦ୍ର ଛଦ୍ମବେଶ ତ୍ୟାଗକରି ସେଇଠୁ ଅନ୍ତର୍ଦ୍ଧାନ ହୋଇଗଲେ । ରାଜକୁମାର ଘୋଡ଼ାଟି ଧରି ଫେରିଆସିଲେ ।

'ତ୍ରୈଲୋକ୍ୟ ପୂଜିତ ଦେବରାଜ ଇନ୍ଦ୍ର ଏପରି ହୀନକାର୍ଯ୍ୟ କରିବାର କାରଣ କଣ' ବୋଲି ଶୌନକ ପଚାରିବାରୁ ମହର୍ଷି ସୂତ କହିଲେ—ସେ ବିଷୟରେ ଆଉ କଣ କହିବା, ସବୁ କିଛି ଭଗବାନଙ୍କ ମାୟା ବୋଲି ଜାଣ । ମାୟାଧରି ଯାହାଦ୍ୱାରା

ଯାହା କରିବା ପାଇଁ ଗୃହାନ୍ତି ତାହାର ସେତେବେଳେ ସେହିପରି ବୁଦ୍ଧି ଜାତ ହୁଏ । ଶ୍ରୀକୃଷ୍ଣ ସ୍ୱୟଂ ପରଂବ୍ରହ୍ମ ବୋଲି ଇନ୍ଦ୍ର କଣ ଜାଣି ନ ଥିଲେ ? ସେ ଯେତେବେଳେ କଳ୍ପବୃକ୍ଷକୁ ଉପାଡ଼ି ନେଇଯାଉଥିଲେ ସେତେବେଳେ ତାଙ୍କୁ ମଣିଷ ବୋଲି ଭାବି ଇନ୍ଦ୍ର ତାଙ୍କ ସହିତ ଯୁଦ୍ଧ କରିଥିଲେ । ଶ୍ରୀକୃଷ୍ଣ ଇନ୍ଦ୍ର ଯଜ୍ଞକୁ ବନ୍ଦ କରି-ଦେବା ପରେ ଇନ୍ଦ୍ର ବ୍ରଜପୁରକୁ ଜଳମଗ୍ନ କରିବା ପାଇଁ ମେଘମାନଙ୍କୁ ଆଦେଶ ଦେଇଥିଲେ । ଏସବୁ ସେହି ମାୟାଧରଙ୍କ ମାୟା ।

ଶୌନକ ପଚାରିଲେ ଭଗବାନଙ୍କ ମାୟାରେ ସବୁକିଛି ଘଟୁଛି, ଏହା ଏପରି ଏକ ଉତ୍ତର ଯେ ଏହାପରେ ଆଉ କିଛି ପଚାରି ହେବ ନାହିଁ । ତଥାପି ଯାହାର ପୁତ୍ର, ଦେବରାଜ ଇନ୍ଦ୍ରଙ୍କଠାରୁ ଚାରିମ୍ବାର ଅଶ୍ୱ ଛଡ଼ାଇ ଆଣି ପାରିଲା ତାଙ୍କରି ଯଜ୍ଞରେ ବିଘ୍ନ ସୃଷ୍ଟି କରିବା ଇନ୍ଦ୍ରଙ୍କ ଧୃଷ୍ଟତା ଛଡ଼ା ଆଉ କଣ ହୋଇପାରେ ?

ମହର୍ଷି ସୂତ ଉତ୍ତର ଦେଲେ—ଭଗବନ୍ ! ସ୍ୱାର୍ଥବଶତଃ ଲୋକ ଏପରି ଅନ୍ଧ ହୋଇଯାଏ ଯେ ତା'ର ବିଚାର ଶକ୍ତି ରହେନାହିଁ । ସ୍ୱାର୍ଥପର ହୋଇଗଲା ପରେ ବନ୍ଧୁତା, ଉପକାର, ଜ୍ଞାନ, ମହତ୍ତ୍ୱ, ସବୁକଥା ମଣିଷ ଭୁଲିଯାଏ । ସେ ସବୁଠି କେବଳ ସ୍ୱାର୍ଥକୁ ଦେଖେ । ଏ ଅବସ୍ଥାରେ ସେ ଯେ କୌଣସି ପ୍ରକାର ନିନ୍ଦିତ କାର୍ଯ୍ୟ କରିବାକୁ କୁଣ୍ଠିତ ହୁଏ ନାହିଁ ।

ଶୌନକ କହିଲେ – ଭଗବନ୍ ! ଆପଣ ଯାହା କହିଲେ ତାହା ସତ । ଜଣେ ସାଧାରଣ ଲୋକ ପକ୍ଷରେ ଏସବୁ ଘଟିବା ନିହାତ ସ୍ୱାଭାବିକ । କିନ୍ତୁ ଇନ୍ଦ୍ରଙ୍କ ପକ୍ଷରେ ଏପରି ଆଚରଣ କଣ ଠିକ ହେଲା ? ଇନ୍ଦ୍ରଙ୍କ ଆଚରଣର ପ୍ରଭାବ ସମସ୍ତଙ୍କ ଉପରେ ପଡ଼େ । ତେଣୁ ସେ ଯେପରି ଖରାପ କାମ କରିବେ ସମସ୍ତେ ତାହା ଅନୁକରଣ କରିବେ । ଏହାଦ୍ୱାରା ଅଧର୍ମ ବୃଦ୍ଧି ହେବ । ଏହା ତ ଠିକ୍ ମନେ ହେଉନି ।

ମହର୍ଷି ସୂତ ଉତ୍ତର ଦେଲେ—ହଁ, ଠିକ୍ ହେଉଛି ବୋଲି କିଏ କହୁଛି ? ତଥାପି ଧର୍ମ ଓ ଅଧର୍ମ ଦୁଇଟି କଥା ଆମେ ମହାପୁରୁଷମାନଙ୍କଠାରୁ ଶିକ୍ଷା କରି-ଥାଉଁ । ଧର୍ମଧ୍ୱଜୀ ଲୋକେ ଦେବତା ବା ମହାପୁରୁଷମାନଙ୍କ ଆଚରଣର ଉଦାହରଣ ଦେଇ ନାନା ଅକାର୍ଯ୍ୟ ପ୍ରଚାର କରୁଥିବାର ଦେଖାଯାଏ । ସେମାନଙ୍କ କଥାରେ ହିଁ ଅଧର୍ମ କଳିଯୁଗରେ ନିଜର ଆଧିପତ୍ୟ ବିସ୍ତାର କରୁଛି ।

ଇନ୍ଦ୍ର ଅଶ୍ୱମେଧ ଯଜ୍ଞରେ ବିଘ୍ନ ଘଟାଇବା ପାଇଁ ଯେଉଁ ବେଶ ଧାରଣ କରିଥିଲେ ତାହାକୁ ଦୁଷ୍ଟମାନେ ପ୍ରମାଣ ରୂପେ ଗ୍ରହଣ କଲେ । ବେଶ ରଚନା

ଧର୍ମର ପ୍ରଧାନ ସୋପାନ ବୋଲି ସେମାନେ ପ୍ରଚାର କଲେ । ତେଣୁ ଧର୍ମ ରହିଲା ବାହ୍ୟ ଚିହ୍ନରେ । ଜ୍ଞାନ ଥାଉ ନ ଥାଉ ଦିଗମ୍ବର ହୋଇଯାଅ, ଏପରି ପ୍ରଚାର କରିବା ମୂର୍ଖତା । ମାଳା, ତିଳକ, ଗେରୁଆ ବସ୍ତ୍ର ଧାରଣ, ଧର୍ମର ମୁଖ୍ୟ କାରଣ ରୂପେ ଗ୍ରହଣ କରିବାଦ୍ୱାରା ଧର୍ମର ନୁହେଁ ଅଧର୍ମର ହିଁ ପ୍ରସାର ଘଟିଛି । ଯୋଗୀ ବେଶଧାରୀ ଭଣ୍ଡଙ୍କ କଥାରେ ସାଧାରଣ ଲୋକେ ମୋହିତ ହୋଇଯାଉଛନ୍ତି । ଫଳରେ ଲୋକେ ଅଧିକରୁ ଅଧିକ ତାମସିକ ମନୋଭାବାପନ୍ନ ହୋଇ ପଡ଼ୁଛନ୍ତି ।

ମୈତ୍ରେୟ କହିଲେ—ହେ ବିଦୁର ! ଇନ୍ଦ୍ର ବାରମ୍ବାର ଯଜ୍ଞରେ ବିଘ୍ନ ସୃଷ୍ଟି କରୁଥିବାରୁ ପୃଥୁ ଶୁଣିବାକୁ ପାଇଲେ ଓ ଦୁଃଖିତ ହେଲେ । କଣ କରିବାକୁ ହେବ ସେ ବିଷୟରେ ଚିନ୍ତା କରିବାକୁ ଲାଗିଲେ ।

## ଛପ୍ପୟ

"ମଖ ବିଧ୍ୱଂସନ ହେତୁ ଇନ୍ଦ୍ର କୋ ବେଶବନାୟେ ।
ତେ ପାଖଣ୍ଡିନ ଚିହ୍ନ ଉପରୀ ପରମ ସୁହାୟେ ॥
ଜଟାଜୂଟ ବନି ନଗ୍ନ ଲାଲ ଅରୁ ଶ୍ୱେତ ପହିନ ପଟ ।
ୟହୀ ମୋକ୍ଷ କୋ ମାର୍ଗ ନିତ କରହିଁ ସତତ ହଟ ॥
ତମ ପ୍ରଧାନ ବିଦ୍ୟା ରହିତ, ମାନେ ଧର୍ମ ଅଧର୍ମ କୁଁ ।
ଲିଙ୍ଗ ଧର୍ମ କାରନ ନହୀଁ, ସମଝେ ନହିଁ ଜା ମର୍ମ କୁଁ ॥"



# ମହାରାଜ ପୃଥୁଙ୍କ କ୍ରୋଧ

"ତମୃତ୍ୱିଜଃ ଶକ୍ରବଧାଭିସଂଧିତଂ,
ବିଚକ୍ଷ୍ୟ ଦୁଷ୍ପ୍ରେକ୍ଷ୍ୟମସହ୍ୟ ରଂହସମ୍ ।
ନିବାରୟାମାସୁରହୋ ମହାମତେ
ନ ଯୁଜ୍ୟତେଽତ୍ରାନ୍ୟବଧଃ ପ୍ରଚୋଦିତାତ୍ ।।"

(ଭାଗବତ-୪ର୍ଥ ସ୍କନ୍ଦ-୧୯ ଅଧ୍ୟାୟ-୨୭ ଶ୍ଳୋକ)

## ଛପ୍ପୟ

"ସମ୍ମୁଖି ଶକ୍ର କୁଟୀଳ କ୍ରୋଧ ନୃପ ପୃଥୁ କୁଁ ଆୟୋ ।
ଇନ୍ଦ୍ର ମାରିବେ ହେତୁ ଧନୁଷ ଅରୁ ବାଣ ଉଠାୟୋ ।।
ଋତ୍ୱିଜ ବୋଲେ ବଚେ ! ବହୁତବଧ ଅବନହୁଁ ତୁମକୂଁ ।
ହମସବ କଛୁ କର ସକେଂ ଦେହୁଁ ଆୟସୁ ଯଦ ହମକୂଁ ।।
ମନ୍ତ୍ରଶକ୍ତି ତେଂ ଶକ୍ରକୁଁ, ଅବଇ ୟୁହା ବୁଲଇଂଗେ ।
ସ୍ୱାହା କର କେଂ ଅଗ୍ନି ମେଁ, ଯମପୁର ତାହି ପଠାଇଂଗେ ।।"

ଚନ୍ଦନ ସ୍ୱଭାବତଃ ଶୀତଳ; କିନ୍ତୁ ତାକୁ ଜୋରରେ ଘର୍ଷିଲେ ସେଥିରୁ ମଧ୍ୟ ଅଗ୍ନି ଉତ୍ପନ୍ନ ହୁଏ । ଜଳ ସ୍ୱଭାବତଃ ଶୀତଳ; କିନ୍ତୁ ପାତ୍ରରେ ରଖି ତଳେ ଅଗ୍ନି ଜାଳିଲେ ତାହା ଟକ୍‌ମକ୍ ହୋଇ ଫୁଟେ । ସେହିପରି ସଜ୍ଜନମାନେ କ୍ରୋଧହୀନ ଓ ଓ ଶାନ୍ତସ୍ୱଭାବ ସମ୍ପନ୍ନ ହୋଇଥାନ୍ତି । କିନ୍ତୁ ତାଙ୍କୁ ଅତି ବିରକ୍ତ କଲେ, ଦୁଃଖ ଦେଲେ ସେମାନେ କେବେ କେବେ କ୍ରୋଧାନ୍ୱିତ ହୁଅନ୍ତି । କ୍ରୋଧ ଜାତ ହେଲେ ସେମାନେ ନ କରିବା କାମ କରିବାକୁ ଉଦ୍ୟତ ହୁଅନ୍ତି ।

ମୈତ୍ରେୟ ମୁନି କହିଲେ—ହେ ବିଦୁର ! ଇନ୍ଦ୍ର ବାରମ୍ବାର ପାଷଣ୍ଡ ବେଶରେ ଆସି ଯଜ୍ଞ ଅଶ୍ୱ ଚୋରାଇ ନେବାରୁ ମହାରାଜ ପୃଥୁଙ୍କ ମନରେ ଭୀଷଣ କ୍ରୋଧ ଜାତ ହେଲା । ସେ ଭାବିଲେ—ଇନ୍ଦ୍ରଦେବତାଙ୍କୁ କେଡ଼େ ଶ୍ରଦ୍ଧାରେ ମୁଁ ଯଜ୍ଞରେ ଆବାହନ କରୁଛି, ଯଜ୍ଞଭାଗ ସମର୍ପଣ କରୁଛି; କିନ୍ତୁ ଈର୍ଷାବଶତଃ ସେ ବାରମ୍ବାର ଯଜ୍ଞ କାର୍ଯ୍ୟରେ ବିଘ୍ନ ସୃଷ୍ଟି କରୁଛନ୍ତି । ମୁଁ ତାଙ୍କର କି କ୍ଷତି କରିଛି, କିଛି କରିନାହିଁ ତ । ହଉ, ଠିକ୍ ଅଛି । ଆଜି ମୁଁ ତାଙ୍କର ଇନ୍ଦ୍ରପଣିଆ ଛଡ଼େଇ ଦେଉଛି । ଆଜି ଯମପୁରକୁ ପଠାଇ ମୁଁ ତାଙ୍କୁ ଅମର ପଦରୁ ମର୍ତ୍ତ୍ୟପଦକୁ ନେଇ ଆସିବି । ଏହା ଭାବି ମହାରାଜ ପୃଥୁ ଇନ୍ଦ୍ରଙ୍କୁ ହତ୍ୟା କରିବା ନିମିତ୍ତ ଧନୁଶର ଉଠାଇବାର ଦେଖି ଯଜ୍ଞକାର୍ଯ୍ୟ କରୁଥିବା ବ୍ରାହ୍ମଣମାନେ କହିଲେ—ମହାରାଜ ! ଆପଣ କଣ କରୁଛନ୍ତି ? ଯଜ୍ଞରେ ଦୀକ୍ଷିତ ଯଜମାନ ଯେ କୌଣସି ଅବସ୍ଥାରେ ମଧ୍ୟ କାହାର ପ୍ରତି ହିଂସା ଆଚରଣ କରିପାରିବେ ନାହିଁ । ଦୀକ୍ଷିତ ପୁରୁଷ ପକ୍ଷରେ ହିଂସା, କ୍ରୋଧ ବର୍ଜନୀୟ । ଆପଣ ନିଜ ହାତରେ ନିଜ ଶରୀରକୁ ମଧ୍ୟ ଛୁଇଁ ପାରିବେ ନାହିଁ । ସେଥିପାଇଁ ଦୀକ୍ଷିତ ପୁରୁଷ ହାତରେ ଧରିଥିବା ହରିଣ ଶିଙ୍ଗରେ ଦେହର କଣ୍ଡୁ ନିବାରଣ କରନ୍ତି ।

ମହାରାଜ ପୃଥୁ ପଚାରିଲେ—ହେ ଋଷିଗଣ ! ଆପଣମାନଙ୍କ କଥା ମୁଁ ବୁଝିପାରିଲି ନାହିଁ । ଆପଣମାନେ କହୁଛନ୍ତି କୌଣସି ପରିସ୍ଥିତିରେ ମଧ୍ୟ ଯଜ୍ଞରେ ଦୀକ୍ଷିତ ହୋଇଥିବା ଲୋକ କ୍ରୋଧ ବା ହିଂସା ଆଚରଣ କରିପାରିବ ନାହିଁ । ଯଦି ଯଜ୍ଞରେ କେହି ବାରମ୍ବାର ବିଘ୍ନ ସୃଷ୍ଟି କରିବ, ସେତେବେଳେ ତା'ର ପ୍ରତିକାର କରିବା ଆବଶ୍ୟକ ନୁହେଁ କି ? ସେଥିପାଇଁ ଯେତିକି ଦରକାର ସେତିକି ହିଂସା କରିବାକୁ ପଡ଼ିବ । ତା' ନହେଲେ ଯଜ୍ଞୀୟ ପଶୁକୁ କିପରି ବଳି ଦିଆଯିବ ? ଏହା ତ ଏକ ହିଂସାତ୍ମକ କାର୍ଯ୍ୟ ଏବଂ ସେହି କାର୍ଯ୍ୟ ଯଜମାନ ଦ୍ୱାରା ହିଁ କରାଯାଇଥାଏ ।

ରାଜାଙ୍କ କଥା ଶୁଣି ବ୍ରାହ୍ମଣମାନେ କହିଲେ—ମହାରାଜ ! ଶାସ୍ତ୍ରବିହିତ ବିଧି ବ୍ୟତୀତ ଅଧିକ ହିଂସାତ୍ମକ କାର୍ଯ୍ୟ ଆଚରଣ କରିବା ଅନୁଚିତ । ଯଜ୍ଞୀୟ ବଳି ଯଜ୍ଞର ଅଙ୍ଗବିଶେଷ । ଏହା ବୈଦିକ ବିଧିସମ୍ମତ । ତେଣୁ ପଶୁବଳି ହିଂସାସୂଚକ ହେଲେ ମଧ୍ୟ ତାହାକୁ ହିଂସା କୁହାଯାଏ ନାହିଁ । ବଳିଦାନ ବ୍ୟବସ୍ଥା ଯଜ୍ଞର ଆବଶ୍ୟକ ବିଧିବିଧାନର ଅନ୍ତର୍ଗତ ହୋଇଛି । ଆପଣ ଦୀକ୍ଷିତ ହୋଇଥିବାରୁ କ୍ରୋଧ ପ୍ରକାଶ କରନ୍ତୁ ନାହିଁ । କ'ଣ କରିବାକୁ ହେବ ତାହା ଆପଣ ଆମକୁ କହନ୍ତୁ ।

ମହାରାଜ ପୃଥୁ କହିଲେ—ଆପଣମାନେ ଦେଖୁଛନ୍ତି, ତ୍ରିଲୋକପୂଜିତ ଦେବରାଜ ଇନ୍ଦ୍ର ବାରମ୍ବାର କପରି ବିଘ୍ନ ସୃଷ୍ଟି କରୁଛନ୍ତି । ଏହାର ପ୍ରତିକାର କରିବା ଉଚିତ । ଏହା ଶୁଣି ଋତ୍ୱିକ କହିଲେ—ମହାରାଜ ! ଆପଣଙ୍କ ଭଗବତ୍ ବିସ୍ତୃତ ଯଶରେ ଇନ୍ଦ୍ର ମୃତପ୍ରାୟ ହୋଇ ପଡ଼ିଛନ୍ତି ଏବଂ ଅତ୍ୟଧିକ ଈର୍ଷାନ୍ୱିତ ହୋଇଥିବାରୁ ତେଜୋହୀନ ହୋଇଛନ୍ତି । ମାତ୍ର ଟିଏକୁ ମାରିବାପାଇଁ ବ୍ରହ୍ମାସ୍ତ୍ର ନିକ୍ଷେପ କରାଯାଏ ନାହିଁ । ମୃତପ୍ରାୟ ବ୍ୟକ୍ତିକୁ ମାରିବା ପାଇଁ ବୀରମାନେ ଅଯଥା ବଳ-ପ୍ରୟୋଗ କରନ୍ତି ନାହିଁ । ଆପଣ ଆଦେଶ ଦେଲେ ଆମେ ଏହି ଯଜ୍ଞକୁଣ୍ଡରେ ଇନ୍ଦ୍ରଙ୍କୁ ସ୍ୱାହା କରିଦେବୁ ।

'କିନ୍ତୁ ଆପଣଙ୍କ ଅଭିପ୍ରାୟ ଜାଣିପାରି ଆବାହନ କଲେ ମଧ୍ୟ ଯଦି ଇନ୍ଦ୍ର ନ ଆସିବେ, ତେବେ ଆପଣମାନେ କ'ଣ କରିବେ' ବୋଲି ମହାରାଜ ପ୍ରଶ୍ନ କରିବାରୁ ବ୍ରାହ୍ମଣମାନେ କହିଲେ—ମହାରାଜ ! ଆମେ ଆବାହନ କଲେ ଇନ୍ଦ୍ର ନ ଆସି ରହିପାରିବେ ନାହିଁ । ଆମର ମନ୍ତ୍ର କେବେ ନିଷ୍ଫଳ ହେବ ନାହିଁ । ଆମେ ଯଥାବିଧି ମନ୍ତ୍ରସାଧନା କରିଛୁ । ମନ୍ତ୍ରଗୁଡ଼ିକ ମୂର୍ତ୍ତିମନ୍ତ ହୋଇ ଆମ ପାଖରେ ଅଛନ୍ତି । ଆମ ମନ୍ତ୍ରଶକ୍ତି ବଳରେ ଇନ୍ଦ୍ର ଦଉଡ଼ିରେ ବନ୍ଧାଥିବା ପଶୁ ପରି ଆସିବା ପାଇଁ ବାଧ୍ୟ ହେବେ; କିନ୍ତୁ ସେଥିପାଇଁ ଆପଣଙ୍କ ଆଦେଶ ଆବଶ୍ୟକ । ଆପଣ ଆଦେଶ ଦେବାମାତ୍ରେ ଆମେ ଇନ୍ଦ୍ରଙ୍କୁ ଡାକି ଆଣି ଆପଣଙ୍କ ଆଗରେ ଅଗ୍ନି କୁଣ୍ଡରେ ଭସ୍ମ କରିଦେବୁ । ସବୁଦିନ ପାଇଁ ତପସ୍ୱୀ ଓ ଯଜ୍ଞକର୍ତ୍ତାମାନେ ନିଶ୍ଚିନ୍ତ ହୋଇଯିବେ ।

ମହାରାଜ ପୃଥୁ ଇନ୍ଦ୍ରଙ୍କ ବ୍ୟବହାରରେ ଚିଡ଼ି ଯାଇଥିଲେ । ତେଣୁ ସେ କହିଲେ—ମୁନିଗଣ ! ବିନା ଦ୍ୱିଧାରେ ଆପଣମାନେ ଅମୋଘ ମନ୍ତ୍ରର ପ୍ରୟୋଗ କରନ୍ତୁ । ଯଜ୍ଞରେ ବିଘ୍ନ କରୁଥିବା ଇନ୍ଦ୍ରଙ୍କୁ ଆପଣମାନେ ଶେଷ କରିଦିଅନ୍ତୁ । ସାରା ସଂସାର ଦେଖୁ ପୃଥୁଙ୍କ କାର୍ଯ୍ୟରେ ବ୍ୟାଘାତ ସୃଷ୍ଟି କଲେ ସ୍ୱୟଂ ଶଚିପତି ଇନ୍ଦ୍ର ମଧ୍ୟ ଜୀବିତ ରହିପାରିବେ ନାହିଁ । ଆପଣମାନେ ଏ ବିଷୟରେ ଅଧିକ ବିଚାର ତଥା କାଳକ୍ଷେପ କରନ୍ତୁ ନାହିଁ । ଅମରପତିର ଆଜି ହିଁ ସମାପ୍ତି ଘଟିବା ଉଚିତ ।

ମହାରାଜାଙ୍କ ସମ୍ମତି ଓ ଅନୁମତି ପାଇ ବ୍ରାହ୍ମଣମାନେ ମନ୍ତ୍ର ପ୍ରୟୋଗ କଲେ । ଆବାହନ କରିବା ମାତ୍ରେ ଇନ୍ଦ୍ରଙ୍କ ଆସନ ଟଳମଳ ହେଲା । ଇନ୍ଦ୍ର ନିଜର ଆସନ କମ୍ପିବାର କାରଣ ବୁଝିପାରିଲେ ନାହିଁ । ଇନ୍ଦ୍ର ସିଂହାସନକୁ ଜାବୁଡ଼ି

ଧଣବା ମାନେ ତାହା ସୁଧର୍ମା ସଭାରୁ ବିଚ୍ୟୁତ ହୋଇ ତଳକୁ ଗଡ଼ କଲା । ସେ ଚକ୍ରାର କରି ଡାକଲେ ମଧ୍ୟ କେହି ଶୁଣିଲେ ନାହିଁ । ଈର୍ଷ୍ୟାପରାୟଣ, ପରଶ୍ରୀକାତର ବ୍ୟକ୍ତିକୁ ଅଧଃପତନରୁ କିଏ ରକ୍ଷା କରିପାରିବ ? ଇନ୍ଦ୍ର ଆକାଶରୁ ମୁଣ୍ଡ ତଳକୁ କରି ଯଜ୍ଞକୁଣ୍ଡ ଆଡ଼କୁ ଖସିବାକୁ ଲାଗିଲେ । ଋତ୍ୱିଜ, ବ୍ରାହ୍ମଣ ଓ ଦର୍ଶକବର୍ଗ ସେହି ଆଡ଼କୁ ଚାହିଁଥାନ୍ତି । ସମସ୍ତେ ବ୍ରାହ୍ମଣମାନଙ୍କ ଅମୋଘ ମନ୍ତ୍ରଶକ୍ତିର ପ୍ରଶଂସା କରିବାକୁ ଲାଗିଲେ ।

ମହର୍ଷି ଅତ୍ରି କହିଲେ—ଦେଖ, ଦେଖ, ଆମର ଆହୁତିଯୋଗ୍ୟ ଆକାଶରୁ ତଳକୁ ଖସୁଛନ୍ତି । ସେ ପୃଥିବୀରେ ପଡ଼ିବା ପୂର୍ବରୁ ତାଙ୍କୁ ସ୍ରୁବର ଅଗ୍ରଭାଗରେ ଧାରଣ କର । ସ୍ରୁବ ଗୁଡ଼ିକୁ ଦୃଢ଼ କରି ଧର । ଅଗ୍ନିକୁ ପ୍ରଜ୍ୱଳିତ କର । ଯେତେବେଳେ ସେ ସ୍ରୁବାଗ୍ରରେ ପଡ଼ିବେ ସେତେବେଳେ ତାଙ୍କୁ ଯଜ୍ଞ କୁଣ୍ଡରେ ପକାଇ ଦିଅ ।

ଯଜ୍ଞବେଦୀରେ ଉପସ୍ଥିତ ଋତ୍ୱିଜ, ସଭାପତି, ସଭାସଦ୍‌ବର୍ଗ ଓ ଦର୍ଶକମାନେ ଉତ୍ସୁକ, ଉଦ୍‌ଗ୍ରୀବ ଉତ୍ସାହ ଓ ସମ୍ଭ୍ରମର ସହିତ ପରିସ୍ଥିତି ଲକ୍ଷ୍ୟ କରୁଥାନ୍ତି । ସମସ୍ତଙ୍କ ଆଖି ଆଶ୍ଚର୍ଯ୍ୟ ଚକିତ ହୋଇ ଖୋଲା ରହିଥାଏ । ପୃଥୁଙ୍କ ଯଜ୍ଞରେ ଆଜି ଅଭୂତପୂର୍ବ ଘଟଣା ଘଟିବାକୁ ଯାଉଛି । ଯେଉଁ ଇନ୍ଦ୍ରଙ୍କୁ ସମ୍ମାନର ସହିତ ଯଜ୍ଞରେ ଆବାହନ ଓ ପୂଜା କରାଯାଏ ତାଙ୍କୁ ଆଜି ଅଗ୍ନିରେ ଆହୁତି ଦିଆଯାଉଛି । ଏହି ସମସ୍ତ ମଧ୍ୟରେ ଇନ୍ଦ୍ର ତଳକୁ ଆସିଗଲେ । ଋତ୍ୱିଜଗଣ ସ୍ରୁବାଗ୍ରରେ ଇନ୍ଦ୍ରଙ୍କୁ ଧରି ଅଗ୍ନିରେ ଆହୁତି ଦେବାକୁ ଯିବାବେଳେ ଅତି ଦ୍ରୁତବେଗରେ ହଂସବାହନ ବ୍ରହ୍ମା ଆସି ସେଠାରେ ଉପସ୍ଥିତ ହେଲେ ଏବଂ ବ୍ରାହ୍ମଣମାନଙ୍କୁ ଉଚ୍ଚ ସ୍ୱରରେ ସମ୍ବୋଧନ କରି କହିଲେ—ଆରେ ଆରେ, ତୁମେମାନେ ଏ କଣ କରୁଛ । ସାବଧାନ, ସାବଧାନ ହୁଅ । ଏପରି ଅନ୍ୟାୟ କର ନାହିଁ । ମନ୍ତ୍ରଶକ୍ତିର ଏପରି ଦୁରୁପଯୋଗ କରିବା ଉଚିତ ନୁହେଁ । ଏପରି ଦୁଃସାହସ ଭୁଲ୍‌ରେ ବି କରିବା ଉଚିତ ନୁହେଁ । ସମସ୍ତେ ମୋ କଥା ଶୁଣ ।

ମୈତ୍ରେୟ ମୁନି କହିଲେ—ପିତାମହ ବ୍ରହ୍ମାଙ୍କ ନିଷେଧ ବାକ୍ୟ ଶୁଣି ସମସ୍ତେ ଲଜ୍ଜିତ ହେଲେ । ସବୁ କିଛି ପଣ୍ଡ ହୋଇଗଲା । ଇନ୍ଦ୍ରଙ୍କୁ ବଳି ଦେବା କାର୍ଯ୍ୟରୁ ନିବୃତ୍ତ ହୋଇ ସମସ୍ତେ ବ୍ରହ୍ମାଙ୍କ ସ୍ୱାଗତ ସତ୍କାରରେ ଲାଗିପଡ଼ିଲେ ।

ଛପ୍‌ପୟ

"କ୍ରୋଧିତ ହୋଇ, ପୃଥୁ କହେଁ, ଅବସି ଦେବେନ୍ଦ୍ର ଜରାଓ ।
ପଢ଼େ ବପ୍ରବର ମନ୍ତ୍ର, ଅମରପତି ଆଓ ଆଓ ॥
ଗିରେ ସ୍ୱର୍ଗତେଂ ଇନ୍ଦ୍ର, କଲାମୁଣ୍ଡୀ ସୀ ଖାବତ ।
ଦେଖେ ସବ୍‌ନେ ଶକ୍ର ଖିଂଚେ ପଶୁ ସମ ମଖ ଆଓତ ॥
ଦୌରେ ଆୟେ ପିତାମହ, ଅରେ ଅରେ, କା କରତ ହୋ ।
ଯଜ୍ଞ ରୂପ ଇନ ଇନ୍ଦ୍ର କେ, ବ୍ୟର୍ଥ ପ୍ରାନ କୌଂ ହରତ ହୋ ॥"



# ପୃଥୁଙ୍କ ଯଜ୍ଞ ସମାପ୍ତି

"ମାସ୍ମିନ୍ମହାରାଜ କୃଥାଃ ସ୍ମ ଚିନ୍ତାଂ,
ନିଶାମୟାସ୍ମଦ୍‌ବଚ ଆଦୃତାତ୍ମା ।।
ଯଦ୍ଧ୍ୟାୟତୋ ଦୈବହତଂ ନୁ କର୍ତ୍ତୁଂ
ମନୋଽତିରୁଷ୍ଟଂ ବିଶତେ ତମୋଽନ୍ଧମ୍ ।।"

(ଭାଗବତ-୪ର୍ଥ ସ୍କନ୍ଧ-୧୯ ଅଧ୍ୟାୟ-୩୪ ଶ୍ଳୋକ)

## ଛପ୍‌ପୟ

"ଭୈୟା, ଶ୍ରଦ୍ଧାସହିତ କିନ୍ହେଂ ମଖ ମାହିଁ ବୁଲାଓ ।
କାହେ ତିନକୁଁ ବିପ୍ର ! ଅଗ୍ନି ମହିଁ ଆଜୁ ଜରାଓ ।।
ରାଜନ୍ ଛୋଡ଼ୋ ବୈର ବ୍ୟଥ ମତ ବାତ ବଢ଼ାଓ ।
ଅବ ହଠ କର ପାଖଣ୍ଡ ଜଗତ ମହିଁ ମତ ଫୈଲାଓ ।।
ସୌ ମଖ କର କା କରେଗେ, ମୋକ୍ଷ ମାର୍ଗ କେ ପଥିକ ତୁମ ।
ଇଚ୍ଛା ରଖୋ ଇନ୍ଦ୍ର କୀ, ସବ କେ ହିତ କୀ କହହିଂ ହମ ।।"

ଏ ସଂସାରରେ ଯଦି ବୁଢ଼ାଲୋକମାନେ ନ ଥାନ୍ତେ ତେବେ କ୍ରୋଧରେ ବଶୀଭୂତ ହୋଇ ଯୁବକମାନେ କଣ ଯେ କରନ୍ତେ, ତାହା କହିହେବ ନାହିଁ । ସମାନ ଶକ୍ତିସମ୍ପନ୍ନ ଦୁଇଜଣ ଯେତେବେଳେ କୌଣସି ଏକ ବିଷୟରେ ଆଗ୍ରହୀ-ହୋଇ ନିଜ ନିଜର ଦାବୀ ଉପରେ ଅଡ଼ି ବସନ୍ତି ସେତେବେଳେ ସଂଘର୍ଷ ଲାଗିଯାଏ । ଏହି ସଂଘର୍ଷ ମଝିରେ ପଶି ବୁଢ଼ାମାନେ ଯଦି ଉଭୟଙ୍କୁ ବୁଝାଇ ନିବୃତ୍ତ ନ କରନ୍ତି ତେବେ ନିଶ୍ଚୟ ରକ୍ତପାତ ହୋଇଯାଆନ୍ତା । ବୃଦ୍ଧଲୋକମାନେ ନିଜ ଜ୍ଞାନ, ଅଭିଜ୍ଞତା ଓ ସହିଷ୍ଣୁତା ଦ୍ୱାରା ଉଭୟ ପକ୍ଷକୁ ଶାନ୍ତ କରନ୍ତି ଏବଂ କଳଗୋଳ ମେଣ୍ଟାଇ

ହୁଅନ୍ତି । ସେଥିପାଇଁ ସଭା ସମିତିରେ ବୟସ୍କମାନଙ୍କର ଆବଶ୍ୟକତା ରହୁଛି । ଯେଉଁ ସଭାରେ ବୃଦ୍ଧାଲୋକ ନାହାନ୍ତି ତାହା ସଭା ନୁହେଁ ଏବଂ ଯେଉଁ ବୃଦ୍ଧ ଲୋକହିତ-କର ପରାମର୍ଶ ନ ନେଇ ପକ୍ଷପାତ ବିଚାର କରେ ତାହାକୁ ବୃଦ୍ଧ କୁହାଯାଏ ନାହିଁ ।

ମୈତ୍ରେୟ ମୁନି କହିଲେ—ହେ ବିଦୁର ! ବ୍ରାହ୍ମଣମାନେ ମନ୍ତ୍ର ଶକ୍ତିବଳରେ ଦେବରାଜ ଇନ୍ଦ୍ରଙ୍କୁ ଯେତେବେଳେ ଅଗ୍ନିରେ ପକାଇ ଦେବାକୁ ଉଦ୍ୟତ ହେଲେ ସେତେବେଳେ ପିତାମହ ବ୍ରହ୍ମା ଯଜ୍ଞ ସ୍ଥଳରେ ପହଞ୍ଚି ବ୍ରାହ୍ମଣମାନଙ୍କୁ ଏ ପ୍ରକାର ଅକାର୍ଯ୍ୟରୁ ନିବୃତ୍ତ କଲେ । ବ୍ରହ୍ମା ସେମାନଙ୍କୁ ଗାଳି ଦେଲେ । ବ୍ରହ୍ମାଙ୍କ କ୍ରୋଧ ଦେଖି ସମସ୍ତେ ନୀରବ ହୋଇଗଲେ, କାରଣ ଯଜ୍ଞ କାର୍ଯ୍ୟ କରୁଥିବା ବ୍ରାହ୍ମଣମାନଙ୍କ ମଧ୍ୟରେ ଅଧିକାଂଶ ଥିଲେ ବ୍ରହ୍ମାଙ୍କ ପୁଅ, ନାତି ଓ ଅଣନାତି । ଯାହାହେଲେ ବି ଗୁରୁଜନମାନଙ୍କ ଆଗରେ ସ୍ୱାଭାବିକ ସଙ୍କୋଚ ଆସିଥାଏ । ସେତେବେଳେ ତ୍ରେତା ଯୁଗର ଆରମ୍ଭ ସମୟ । ଯଦି ଆଜିକାର ସମୟ ହୋଇଥାନ୍ତା ତେବେ ପିତାମହଙ୍କ ଅବସ୍ଥା ଶୋଚନୀୟ ହୋଇପଡ଼ିଥାନ୍ତା । ବ୍ରହ୍ମା ନିଜର ମୁରବିପଣିଆ ଦେଖାଇ ସମସ୍ତଙ୍କୁ ବହୁ ଗାଳିଦେଇ କହିଲେ—ହଇରେ ତୁମେମାନେ ଏସବୁ କି କାମ କରୁଛ ? ଇନ୍ଦ୍ର କଣ ଅଗ୍ନିରେ ଆହୁତି ଦେବା ବସ୍ତୁ ? ହାୟ, ହାୟ, ତୁମ ବୁଦ୍ଧି ବୃଦ୍ଧି ସବୁ କଣ ନଷ୍ଟ ହୋଇଗଲା । ଇନ୍ଦ୍ର ହେଉଛନ୍ତି ସାକ୍ଷାତ୍ ବିଷ୍ଣୁ ସ୍ୱରୂପ । ଯଜ୍ଞରେ ତୁମେ ତାଙ୍କର ଆରାଧନା କରୁଛ । ଭକ୍ତି ସହକାରେ ତାଙ୍କୁ ଯଜ୍ଞଭାଗ ସମର୍ପଣ କରୁଛ । ଇନ୍ଦ୍ରଙ୍କ ସହିତ ଦେବଗଣ ଯଜ୍ଞପୁରୁଷଙ୍କ ଏକ ଏକ ଅଂଶ । ତେଣୁ ତୁମେ ସବୁ ଏପରି ଅକାର୍ଯ୍ୟ କରିବା ଉଚିତ ନୁହେଁ । ନିଜ ମନ୍ତ୍ରଶକ୍ତିର ଏପରି ଦୁରୁପଯୋଗ ହେବା ଅବାଞ୍ଛନୀୟ ।

ଋତ୍ୱିକଗଣ ପଚାରିଲେ—ଭଗବନ୍ ! ଆମେ କଣ କରିବା ? ଆମେ ତ ଯଜମାନର ଅଧୀନ । ଯଜମାନର ଅଭିଳାଷ ପୂର୍ତ୍ତି କରିବା ଆମର କର୍ତ୍ତବ୍ୟ । ଆପଣ ଇନ୍ଦ୍ରଙ୍କୁ କିଛି ନ କହି ଆମମାନଙ୍କୁ କାହିଁକି ଗାଳି ଦେଉଛନ୍ତି ?

ବ୍ରହ୍ମା କହିଲେ—ଇନ୍ଦ୍ର ତ ଜିଦ୍‌ଖୋର ପ୍ରକୃତିର । ତାଙ୍କୁ କଣ ବୁଝାଇବି ? କିନ୍ତୁ, ତୁମେମାନେ ଏତେ ବଡ଼ ବଡ଼ ଜ୍ଞାନୀ ଧ୍ୟାନୀ ହୋଇ ଅଯଥା କଥା ବଢ଼ାଉଛ । ଇନ୍ଦ୍ରଙ୍କ କଥା ରହୁ, ତୁମେ ସବୁ ତାଙ୍କର କଥା ମାନିଯାଅ ।

ଋତ୍ୱିକଗଣ କହିଲେ—ଭଗବନ୍ ! ଆମର କୌଣସି ବିଷୟରେ ଆଗ୍ରହ ନାହିଁ । ଆମକୁ ଆପଣ ଉଚିତ ହେଉ ବା ଅନୁଚିତ ହେଉ ଯାହା ଆଦେଶ ଦେବେ ତାହା ପାଳନ କରିବୁ ।

ବ୍ରହ୍ମା କହିଲେ—ପୃଥୁଙ୍କ ସର୍ବଶେଷ ଯଜ୍ଞରେ ଇନ୍ଦ୍ର ଅଯଥା କାର୍ଯ୍ୟ କଲେ । ଛଦ୍ମବେଶ ଧରି ଯେପରି କାର୍ଯ୍ୟ କଲେ ତାହାର ପରିଣାମ କଣ ହେବ ତୁମେ ସବୁ କଣ ବୁଝି ପାରୁ ନାହଁ । ସଂସାରରେ ସମସ୍ତେ ତାଙ୍କର ସେହି ଛଦ୍ମବେଶର ଅନୁକରଣ କରିବେ । ଜଗତରେ ଦୁଷ୍ଟମାନଙ୍କ ଦୌରାତ୍ମ୍ୟ ବଢିଯିବ । ବର୍ତ୍ତମାନ ଯାହା ହେବାର ହୋଇସାରିଛି । ଏବେ ଯଜ୍ଞକାର୍ଯ୍ୟ ବନ୍ଦ କରିଦିଅ ।

ଋତ୍ୱିକମାନେ କହିଲେ—ଭଗବନ୍ ! ଯଜ୍ଞକୁ ବନ୍ଦ କରିବା ଅଧିକାର ଆମର ନାହିଁ । ମହାରାଜ ଆମମାନଙ୍କୁ ବରଣ କରିଛନ୍ତି । ତାଙ୍କ ଯଜ୍ଞ ନିର୍ବିଘ୍ନରେ ଶେଷକରିବା ପାଇଁ ଆମେ ପ୍ରତିଜ୍ଞା କରିଛୁ । ତେଣୁ ଯଜମାନ ଯେ ପର୍ଯ୍ୟନ୍ତ ଧର୍ମ-ମାର୍ଗରେ ଅଛି, ବେଦର ବିରୁଦ୍ଧାଚରଣ କରୁନାହିଁ, ଆମମାନଙ୍କୁ ଶ୍ରଦ୍ଧା କରୁଛି ଓ ଆମର ଆଦେଶ ପାଳନ କରୁଛି ସେ ପର୍ଯ୍ୟନ୍ତ ଆମେ ଯଜ୍ଞ କାର୍ଯ୍ୟ ବନ୍ଦ କରି ପାରିବା ନାହିଁ । ଯଦି ଯଜମାନ ନିଜେ ଯଜ୍ଞରୁ ନିବୃତ୍ତ ହେବ ବା ଯଜ୍ଞ କରିବାକୁ ଆଗ୍ରହୀ ନ ହେବ ତେବେ ଯାହା କିଛି କରିହେବ । ଆମେ ରାଜାଙ୍କୁ ମଧ୍ୟ ଦୋଷ ଦେଇ ପାରିବା ନାହିଁ । ରାଜା ଦୀକ୍ଷା ନେଇ ବସିଥିବାଯାଏ ଓ ଯଜ୍ଞକାର୍ଯ୍ୟ କରିବା ପାଇଁ ସମର୍ଥ ଥିବା ପର୍ଯ୍ୟନ୍ତ ଆମେ ନିଜ ଇଚ୍ଛାରେ ଯଜ୍ଞ ବନ୍ଦ କରିବା ନାହିଁ ।

ବ୍ରାହ୍ମଣମାନଙ୍କ କଥା ଶୁଣି ପିତାମହ ବ୍ରହ୍ମା ନମ୍ରସ୍ୱରରେ ମହାରାଜ ପୃଥୁଙ୍କୁ ବୁଝାଇଲେ—ରାଜନ୍ ! ଆପଣ ଇନ୍ଦ୍ରଙ୍କ ଉପରେ କ୍ରୋଧାନ୍ୱିତ ହୋଇଛନ୍ତି କାହିଁକି ?

'ବାରମ୍ବାର ଯଜ୍ଞରେ ବିଘ୍ନ ସୃଷ୍ଟି କରୁଥିବା ବ୍ୟକ୍ତି ପ୍ରତି କ୍ରୋଧ ହେବା କଥା' ବୋଲି ମହାରାଜ କହିବାରୁ ବ୍ରହ୍ମା ପଚାରିଲେ—ଆପଣ ଯଜ୍ଞ କରି କେଉଁ ପଦ ଲାଭ ପାଇଁ ଇଚ୍ଛା କରୁଛନ୍ତି ?

'ମୋର କୌଣସି ପଦ ପ୍ରତି ଅଭିଳାଷ ନାହିଁ । ମୁଁ ନିଷ୍କାମ ଭାବେ ଭଗବାନଙ୍କ ଉପାସନା କରୁଛି'—ରାଜା ଉତ୍ତର ଦେଲେ ।

ବ୍ରହ୍ମା ପଚାରିଲେ—ତେବେ ଶତ ଅଶ୍ୱମେଧ ଯଜ୍ଞ କରିବାର ଆବଶ୍ୟକତା କଣ ? ଶହେ ଯଜ୍ଞ କରିବା ଯାହା ଅନେଶତ ଯଜ୍ଞ କରିବା ଠିକ୍ ସେଇଆ । ଏଇ ଛୋଟିଆ କଥାରେ ଆପଣ କ୍ରୋଧାନ୍ୱିତ ହୋଇ ନିଜର ତେଜକୁ ନଷ୍ଟ କରୁଛନ୍ତି କାହିଁକି ?

ମହାରାଜ ପୃଥୁ କହିଲେ—ଭଗବନ୍ ! ଏ କଥା ଆପଣ ଇନ୍ଦ୍ରଙ୍କୁ କୁହନ୍ତୁ । ଆମେ ତାଙ୍କର କି କ୍ଷତି କଲୁ ଯେ, ସେ ଯଜ୍ଞରେ ବାରମ୍ବାର ବାଧା ସୃଷ୍ଟି କରୁଛନ୍ତି ।

ବ୍ରହ୍ମା ସ୍ନେହର ସହିତ କହିଲେ—ତୁମେ ଦୁହେଁ ନିଜ ନିଜ କଥାରେ ଜିଦ୍ କଲେ ସମାଧାନ କିପରି ହେବ ? ତୁମ ଜିଦ୍‌ର ପରିଣତି ସଂସାରରେ ଅନର୍ଥ ସୃଷ୍ଟି କରିବ । ତେଣୁ ଉଭୟ ପରସ୍ପର ପ୍ରତି ସହାନୁଭୂତିଶୀଳ ହୁଅ । ଇନ୍ଦ୍ର ଓ ତୁମେ ଉଭୟ ଭଗବାନଙ୍କ ଅଂଶାବତାର । ଆଉ କଥାକୁ ବଢ଼ାଅ ନାହିଁ । ଶତ ଯଜ୍ଞ ପୂର୍ଣ୍ଣ ନ ହେଉ, ଏହା ଇନ୍ଦ୍ରଙ୍କ ଇଚ୍ଛା । ତୁମର ଶହେ ଯଜ୍ଞ ପୂର୍ଣ୍ଣ କରିବାରେ ଲାଭ କଣ ହେବ ? ତୁମେ ତ ମୋକ୍ଷଧର୍ମାବଲମ୍ବୀ ।

ମହାରାଜ ପୃଥୁ କହିଲେ—ଶହେ, ହଜାରେ, ଦଶ, ପାଞ୍ଚ ସଂଖ୍ୟାରେ ମୋର କିଛି ଯାଏ ଆସେ ନାହିଁ । କିନ୍ତୁ ମୁଁ ମୋର ପ୍ରତିଜ୍ଞା ପୂରଣ ନ କଲେ ସଂସାରରେ ନିନ୍ଦିତ ହେବି । ମୁଁ ଶତ ଅଶ୍ୱମେଧ ଯଜ୍ଞ କରିବା ନିମିତ୍ତ ସଂକଳ୍ପ କରିଛି । ଏହା ପୂରଣ ନ କଲେ ଲୋକେ ମୋତେ ନିନ୍ଦା କରିବେ ।

ବ୍ରହ୍ମା କହିଲେ—ଆପଣ ନିଶ୍ଚିନ୍ତ ରହନ୍ତୁ । ଏହାଦ୍ୱାରା ଆପଣଙ୍କ ନିନ୍ଦା ପରିବର୍ତ୍ତେ ସମ୍ମାନ ବଢ଼ିବ । ଗ୍ରହଣ କରିବା ଲୋକଠାରୁ ତ୍ୟାଗ କରୁଥିବା ଲୋକ ସମ୍ମାନନୀୟ । ସମ୍ମାନ ପାଇବା ଅପେକ୍ଷା ସମ୍ମାନ ଦେବା, ଅନ୍ୟକୁ ନମ୍ର କରିବା ଅପେକ୍ଷା ନିଜେ ନମ୍ର ହେବା ଶ୍ରେୟସ୍କର । ଆପଣ ଅନେକଶତ ଯଜ୍ଞଦ୍ୱାରା ଶତ ଯଜ୍ଞକାରୀର ସମ୍ମାନ ପାଇବେ । ଦେଖନ୍ତୁ, ଯେଉଁ କାର୍ଯ୍ୟରେ ଦେବଗଣ ପ୍ରତିକୂଳ ହେବେ, ସେପରି କାର୍ଯ୍ୟରେ ଆଗ୍ରହୀ ହୋଇ ଲଢ଼ିବା ଉଚିତ ନୁହେଁ । ଏହାଦ୍ୱାରା ତାମସିକ ଗୁଣ ବଢ଼େ, ଲକ୍ଷ୍ୟ ଭ୍ରଷ୍ଟ ହୋଇଯାଏ ଓ ଉଚ୍ଚସ୍ଥାନରୁ ପତନ ଘଟେ । ଏ ଅବସ୍ଥାରେ ବୃଦ୍ଧମାନଙ୍କ ପରାମର୍ଶ ଗ୍ରହଣ କରିବା ଉଚିତ । ମୁଁ ଯାହା କହିଲି ମୋ କଥା ମାନନ୍ତୁ, ଏଥିରେ ନିଜର ତଥା ପ୍ରଜାକୁଳର ମଙ୍ଗଳ ହେବ ।

'ମୁଁ ଆପଣଙ୍କ ଉପଦେଶ ମାନୁଛି, କିନ୍ତୁ ଏହା ମୋର ଅନ୍ତିମ ଯଜ୍ଞ' ବୋଲି ମହାରାଜ ପୃଥୁ କହିବାରୁ ବ୍ରହ୍ମା ବୁଝାଇଲେ—ଦେଖ, ପୁଣି ସେକଥା ଉଠାଅ ନାହିଁ । ଦେବତାମାନେ ବଡ଼ ଜିଦ୍‌ଖୋର । ଇନ୍ଦ୍ର କେବେହେଲେ ତୁମ ଯଜ୍ଞ ପୂର୍ଣ୍ଣ କରିବାକୁ ଦେବ ନାହିଁ । ସେ ନିଶ୍ଚୟ ବିରୋଧ କରିବ । ତୁମେ ଯଜ୍ଞ ପୂର୍ଣ୍ଣ କରିବା ପାଇଁ ଲଢ଼ିବ । ଫଳରେ ଧର୍ମ ହ୍ରାସ ହେବ ଓ ଅଧର୍ମ ବଢ଼ିବ । ତୁମେ ଯଜ୍ଞ ବନ୍ଦ କଲେ ସବୁ ଅନର୍ଥ ତୁଟିଯିବ । ଧର୍ମ ପ୍ରସାର କରିବା ତୁମର କର୍ତ୍ତବ୍ୟ । ବେନଙ୍କ ସମୟରେ ଧର୍ମ, କର୍ମ, ଯାଗ, ଯଜ୍ଞ ସବୁ ଲୋପ ପାଇଯାଉଥିଲା । ତୁମେ ସେ ସବୁର ପୁନରୁଦ୍ଧାର କଲ । ପୁଣି କାହିଁକି ଅଧର୍ମ ପ୍ରସାର କରିବାକୁ ସୁବିଧା ଦେବ । ଯଜ୍ଞ ବନ୍ଦ କରିଦିଅ । ଭୃଗୁ ଆଦି ଋଷିଗଣ ଧର୍ମମାର୍ଗରେ ପ୍ରଜାବୃଦ୍ଧି କରୁଛନ୍ତି । ସେମାନଙ୍କୁ ସାହାଯ୍ୟ କର । ସେହି ଋଷିମାନେ ଧର୍ମବୃଦ୍ଧି ପାଇଁ ବେନଙ୍କ ମୃତ-

ଶରୀରରୁ ତୁମକୁ ପ୍ରକାଶ କରାଇଥିଲେ । ଇନ୍ଦ୍ରଙ୍କ ଦ୍ୱାରା ପ୍ରବର୍ତ୍ତିତ ପାଷଣ୍ଡ ବୃତ୍ତିର ମୂଳୋଚ୍ଛେଦ କର । ସବୁ କିଛି ଦେବତାଙ୍କର ଇଚ୍ଛା ବୋଲି ଭାବି ମନର ଆବିଳତାକୁ ଦୂର କରିଦିଅ ।

ମହାରାଜ ପୃଥୁ କହିଲେ—ଭଗବନ୍ ! ଆପଣଙ୍କ ଆଦେଶ ଅନୁସାରେ ଯଜ୍ଞ ପୂର୍ତ୍ତି କରିବାର ଅଭିଳାଷ ତ୍ୟାଗ କଲି । ମନରୁ ସମସ୍ତ ଦ୍ୱିଧା ପରିହାର କଲି । ଇନ୍ଦ୍ର ଓ ମୁଁ ଉଭୟ ଆପଣଙ୍କ ପୁଅ । ଭାଇମାନଙ୍କ ମଧ୍ୟରେ ମତଭେଦ ବେଳେ-ବେଳେ ହୋଇଯାଏ । ଏବେ ମନରୁ ମୋର ସବୁ କଥା ପୋଛି ପକାଇଛି । ଏହା କହି ମହାରାଜ ଯଜ୍ଞ ବନ୍ଦ କରିବା ନିମିତ୍ତ ବ୍ରାହ୍ମଣମାନଙ୍କୁ ପ୍ରାର୍ଥନା କଲେ ।

ବ୍ରାହ୍ମଣମାନେ ଯଜ୍ଞରେ ପୂର୍ଣ୍ଣାହୁତି ଦେଲେ । ରାଜା ଗଙ୍ଗାରେ ଅବଭୃଥ ସ୍ନାନ ସାରି ଆସିବା ପରେ ଉପସ୍ଥିତ ଦେବତା, ମୁନି, ଋଷି ଓ ବ୍ରାହ୍ମଣମାନେ ତାଙ୍କ ଅଭୀଷ୍ଟ ବର ପ୍ରଦାନ କଲେ । ବ୍ରାହ୍ମଣମାନେ ଯଥୋଚିତ ଦକ୍ଷିଣା ପାଇ ଆଶୀର୍ବାଦ ଜଣାଇ ବିଦାୟ ନେଲେ । ମହାରାଜ ଶ୍ରଦ୍ଧାର ସହିତ ସମସ୍ତଙ୍କୁ ଯଥୋଚିତ ଦାନ ଓ ସମ୍ମାନ ଜଣାଇଲେ । ମହାରାଜ ପୃଥୁଙ୍କ ଯଶ ଗାନ କରି ସମସ୍ତେ ନିଜ ନିଜ ସ୍ଥାନକୁ ଫେରିଗଲେ ।

## ଛପ୍ପୟ

"ବିଧି ଆଜ୍ଞା ସିର ଧାରି ଯଜ୍ଞ ଯଜ୍ଞ ପୃଥୁ ବନ୍ଦ କରାୟୋ ।
ଗୁରୁ ଗୌରବ କୁଁ ମାନି ବାତ ଆଗେ ନ ବଢ଼ାୟୋ ॥
ଜୋ ଜୋ ମଖ ମହଁ ଦେବ ବିପ୍ର ଋଷି ମୁନିବର ଆୟେ ।
ସବ କୋ କରି ସତ୍କାର, ବିବିଧ ବିଧି ଦାନ ଦିବାୟେ ॥
ପାଇ ଦାନ ସମ୍ମାନ ବହୁ, ବିପ୍ର ତୁଷ୍ଟ ଅତିଶୟ ଭୟେ ।
ଦେ ଆଶିଷ ଅତି ମୁଦିତ ହ୍ୱୈ, ଅପନେ ଅପନେ ଘରଗୟେ ॥"



## ବୈକୁଣ୍ଠନାଥଙ୍କ ଆବିର୍ଭାବ

"ଭଗବାନପି ବୈକୁଣ୍ଠଃ ସାକଂ ମଘବତା ବିଭୁଃ ।
ଯଜ୍ଞୈର୍ଯଜ୍ଞପତିସ୍ତୁଷ୍ଟୋ ଯଜ୍ଞଭୁକ୍ ତମଭାଷତ ॥
ଏଷ ତେଽକାରଷୀଦ୍ ଭଙ୍ଗଂ ହୟମେଧଶତସ୍ୟ ହ ।
କ୍ଷମାପୟତ ଆତ୍ମାନମମୁଷ୍ୟ କ୍ଷନ୍ତୁମର୍ହସି ॥"

(ଭାଗବତ-୪ର୍ଥ ସ୍କନ୍ଦ-୨୦ ଅଧ୍ୟାୟ-୧୨ ଶ୍ଳୋକ)

### ଛପ୍ପୟ

"ପୃଥୁ ଯଜ୍ଞନ ତେଂ ତୁଷ୍ଟ ଭୟେ ଶ୍ରୀମଧୁସୂଦନ ଆଈ ।
ଭୟେ ଯଜ୍ଞ ମହଁ ପ୍ରକଟ ଶକ୍ର ଲୈ ସଙ୍ଗ ଯଜ୍ଞପତି ॥
ପୃଥୁ ତେଂ ପୂଜିତ ଭୟେ ଫେର ବୋଲେ ମୃଦୁବାନୀ ।
ରାଜନ୍ ! ସବହୁଁ କୁଶଳ ଶତକ୍ରତୁ ହୀ ହମ୍ ଜାନୀ ॥
ହୌଁ ପ୍ରସନ୍ନ ତୁମ ପୈ ଭୟୋ, ସିଦ୍ଧ ହୋହୁଁ ତବ କାଜ ସବ ।
ଅତି ଲଜ୍ଜିତ ହୃଦୟ ଇନ୍ଦ୍ର, ହୈ ଜାହୁ କ୍ଷମା କର ଦେହୁ ଅବ ॥"

ସମସ୍ତ କାର୍ଯ୍ୟର ଏକମାତ୍ର ଲକ୍ଷ୍ୟ ହେଉଛି ପ୍ରଭୁ ପ୍ରୀତି । ଯେ ଏହି ଉଦ୍ଦେଶ୍ୟକୁ ଭୁଲି କେବଳ କର୍ମରେ ଲିପ୍ତ ହୋଇଯାଆନ୍ତି ସେ ସଂସାରଭୋଗ ପ୍ରତି ଆସକ୍ତ ହୋଇପଡ଼ନ୍ତି । ରାଜଦର୍ଶନ ପାଇଁ ଯାଉଥିବା ପଥିକ ଯେପରି ରାଜମାର୍ଗର ସୌନ୍ଦର୍ଯ୍ୟ ଦେଖି ମୋହିତ ହୁଏ ଓ ନିଜ ଲକ୍ଷ୍ୟକୁ ଭୁଲିଯାଏ, ସେହିପରି କର୍ମରେ ଲିପ୍ତ ଥିବା ଲୋକ ନିଜର ପ୍ରକୃତ ଉଦ୍ଦେଶ୍ୟକୁ ଭୁଲିଯାଏ । ଯଜ୍ଞାଦି କାର୍ଯ୍ୟ ସାଧ୍ୟ ନୁହେଁ ସାଧନ । ଯଜ୍ଞ କରି ତାହା ଶ୍ରୀକୃଷ୍ଣଙ୍କୁ ସମର୍ପଣ କରିଦେବା ବାଞ୍ଛନୀୟ; କିନ୍ତୁ ଯେ ଯଜ୍ଞକୁ ସାଧ୍ୟ ମନେକରି ପରନିନ୍ଦା, ଦ୍ୱେଷ, କଳହ, ଶତ୍ରୁତା ଆଦି କରେ ସେ ପରେ ଖୁବ୍ ଅନୁତପ୍ତ ହୁଏ । ସାଧ୍ୟ ଓ ସାଧନା, ଉଭୟରୁ ସେ ବିଚ୍ୟୁତ

ହୋଇପଡ଼େ । ଆମର ଯେଉଁ କାର୍ଯ୍ୟଦ୍ୱାରା ଭଗବାନ ସନ୍ତୁଷ୍ଟ ହେବେ, ତାହା ହିଁ ଶ୍ରେଷ୍ଠ କାର୍ଯ୍ୟ । ପ୍ରଭୁ ପ୍ରସନ୍ନ ଥିଲା କାମ ବି ପୂର୍ଣ୍ଣ ହୋଇଯାଏ, ଆଉ ଯଦି ପ୍ରଭୁ ପ୍ରସନ୍ନ ନ ହେଲେ ତେବେ ପୂର୍ଣ୍ଣ କାମ ବି ଅପୂର୍ଣ୍ଣ ମନେହୁଏ ।

ମୈତ୍ରେୟ ମୁନି କହିଲେ—ହେ ବିଦୁର ! ବ୍ରହ୍ମାଙ୍କ ଅନୁରୋଧରେ ମହାରାଜ ପୃଥୁ ଶତ ଅଶ୍ୱମେଧ ଯଜ୍ଞ ପୂର୍ଣ୍ଣ କରିବାର ଅଭିଳାଷ ତ୍ୟାଗ ଯେତେବେଳେ ଅବଭୃଥ ସ୍ନାନ ଶେଷ କଲେ, ସେତେବେଳେ ଯଜ୍ଞପତି ଭଗବାନ ତାଙ୍କର ଏଇ ନମ୍ରତାରେ ଅତ୍ୟନ୍ତ ପ୍ରୀତ ହେଲେ । ନିଜର ଅଂଶଭୂତ ମହାରାଜ ପୃଥୁଙ୍କୁ କୃତାର୍ଥ କରିବା ପାଇଁ ଏବଂ ଯଜ୍ଞର ବାସ୍ତବ ଫଳ ପ୍ରଦାନ ପାଇଁ ଭଗବାନ ବାସୁଦେବ ସେଠାରେ ଉପସ୍ଥିତ ହେଲେ । ଭଗବାନ ଗରୁଡ଼ ପୃଷ୍ଠରେ ବସି ଆସିଥିଲେ । ତାଙ୍କ ସହିତ ଦେବରାଜ ଇନ୍ଦ୍ର ବି ଉପସ୍ଥିତ ଥିଲେ । ଗନ୍ଧର୍ବ ଓ ମୁନି ଋଷିଗଣ ସ୍ତୁତିଗାନ କରୁଥିଲେ । ହଠାତ୍ ଶ୍ରୀହରିଙ୍କ ସାକ୍ଷାତ୍ ଆବିର୍ଭାବ ହେବାର ଦେଖି ମହାରାଜ ପୃଥୁ ଆଶ୍ଚର୍ଯ୍ୟ ହୋଇଗଲେ । କଣ ସେ କରିବେ କିଛି ସ୍ଥିର କରି ନ ପାରି କିଂକର୍ତ୍ତବ୍ୟବିମୂଢ଼ ହୋଇ ରହିଗଲେ ! ଏହି ସମୟରେ ଭଗବାନ୍ ହସିହସି କହିଲେ —ରାଜନ୍ ! ତୁମେ ଦୁଃଖିତ ହୋଇ ନାହଁ ତ ? ଇନ୍ଦ୍ରଙ୍କ ଉପରେ ତୁମର କ୍ରୋଧ ନାହିଁ ତ ? ଏହା ଶୁଣି ମହାରାଜ ପୃଥୁ କିଛି କହି ପାରିଲେ ନାହିଁ । ସେ ହାତ ଯୋଡ଼ି ଠିଆହୋଇଥିଲେ । ତାଙ୍କ ଆଖିରେ ପ୍ରେମାଶ୍ରୁ ବହିଯାଉଥିଲା ।

ଭଗବାନ୍ ବାସୁଦେବ କହିଲେ—ମୁଁ ବର୍ତ୍ତମାନ ଇନ୍ଦ୍ରଙ୍କୁ ଧରି ତୁମ ପାଖକୁ ନେଇ ଆସିଛି । ସେ ତୁମଠାରେ ଅପରାଧ କରିଛନ୍ତି । ତୁମ ଯଜ୍ଞକୁ ସେ ଭାଙ୍ଗି-ଦେଇଛନ୍ତି । ନିଜର କୁକାର୍ଯ୍ୟ ପାଇଁ ସେ ଏବେ ଅନୁତପ୍ତ ତୁମଠାରୁ କ୍ଷମାପ୍ରାର୍ଥନା କରିବା ପାଇଁ ଆସିଛନ୍ତି । ଦେଖ, ବଡ଼ଲୋକମାନେ ସାନମାନଙ୍କର ଦୋଷ ଦେଖନ୍ତି ନାହିଁ । ସେଥିରେ ତାଙ୍କର ବଡ଼ପଣିଆ ପ୍ରକାଶ ପାଏ । ତାଙ୍କର ସମସ୍ତ ଅପରାଧ କ୍ଷମା କରିଦିଅନ୍ତୁ ।

ମହାରାଜ ପୃଥୁ ଆଖିରୁ ଲୁହ ପୋଛି ଗଦ୍‌ଗଦ କଣ୍ଠରେ କହିଲେ—ପ୍ରଭୋ ! ଆପଣ ଏ କଣ ସବୁ କହୁଛନ୍ତି । ଏତିକି ସେ ଆଉ କିଛି କହିପାରିଲେ ନାହିଁ । ଭଗବାନଙ୍କ ଭକ୍ତବାତ୍ସଲ୍ୟ ସ୍ମରଣ କରି ସେ କାନ୍ଦି ପକାଇଲେ ।

ଭଗବାନ୍ ସ୍ନେହର ସହିତ କହିଲେ—ରାଜନ୍ ! ଶରୀର ଓ ଶରୀରୀ, ଦେହ, ଦେହୀ, ଆତ୍ମା ଓ ଅଧିଷ୍ଠାନ ପରସ୍ପରଠାରୁ ଭିନ୍ନ । ମୂର୍ଖମାନେ ଶରୀରକୁ ଆତ୍ମା ବୋଲି ଭାବନ୍ତି । 'ମୁଁ' କହିବାଦ୍ୱାରା ସେମାନେ ଶରୀରକୁ ବୁଝନ୍ତି । ବାସ୍ତବରେ ଦୃଶ୍ୟମାନ ଶରୀର ଆତ୍ମା ନୁହେଁ । ଆତ୍ମା ଶରୀରଠାରୁ ପୃଥକ୍ । ରାଗ, ଦ୍ୱେଷ, ଅହଙ୍କାର ଆଦି ଏହି

ଶରୀରକୁ କେନ୍ଦ୍ର କରି ସୃଷ୍ଟି ହୁଏ । ତେଣୁ ସାଧୁଲୋକମାନେ କାହାରିଠାରେ ଦ୍ରୋହ ଆଚରଣ କରନ୍ତି ନାହିଁ । ଏକ ଆତ୍ମା ନାନାରୂପରେ ଦେଖାଯାଏ । ଏସବୁ ଦୈବୀ ମାୟାଜନିତ ଭ୍ରମ । ଯେଉଁମାନେ ଶ୍ରଦ୍ଧାର ସହିତ ଦୀର୍ଘକାଳ ଧରି ଗୁରୁଜନମାନଙ୍କ ସେବା କରି ନାହାନ୍ତି ସେହି ଅଜ୍ଞାନ ପୁରୁଷମାନେ ଏହି ମାୟା ଜାଲରେ ପଡ଼ି ଛଟପଟ ହୁଅନ୍ତି । ତୁମପରି ବୁଦ୍ଧିମାନ୍ ପୁରୁଷ ଯଦି ମାୟା ମୋହିତ ହେବ ତେବେ ଶୁଶ୍ରୂଷା, ଆସ୍ତିକତା, ଧର୍ମାଚରଣ ସବୁ କିଛି ନିରର୍ଥକ ବୋଲି ପ୍ରମାଣିତ ହେବ । ମମତା ହେଉଛି ଦୁଃଖର କାରଣ । ମୋ' ଘର, ମୋ' ଜମି, ମୋ' ବ୍ୟବସାୟ, ମୋ' ସ୍ତ୍ରୀ, ପୁଅ, ଝିଅ, ଏମାନେ ମମତାର କେନ୍ଦ୍ର । ଏମାନଙ୍କ ମମତାରେ ପଡ଼ି ଅଜ୍ଞାନ ପୁରୁଷ, ରାଗ, ଦ୍ୱେଷ, ହିଂସା ଆଚରଣ କରେ । କିନ୍ତୁ ଜ୍ଞାନୀ ଲୋକ ଏହି ଶରୀରକୁ ଅବିଦ୍ୟା, ବାସନା ଓ ପୂର୍ବକର୍ମାର୍ଜିତ ବୋଲି ମନେ କରି ଅନାସକ୍ତ ଭାବେ ସମୟ ଅତିବାହିତ କରନ୍ତି ।

'ଆତ୍ମା କଣ' ବୋଲି ମହାରାଜ ପୃଥୁ ପ୍ରଶ୍ନ କରିବାରୁ ଭଗବାନ୍ ବାସୁଦେବ କହିଲେ—ରାଜନ ! ଆପଣଙ୍କୁ ଅଜଣା କଣ ଅଛି ? ଆପଣ ସର୍ବଜ୍ଞ । ଆପଣ ମୋ' ଠାରୁ ଭିନ୍ନ ହେଲେ ମଧ୍ୟ ମୋ'ର ଅଂଶ ହୋଇ ଅଛନ୍ତି । ଅଂଶ ଓ ଅଂଶୀ ମଧ୍ୟରେ କୌଣସି ଭେଦ ନାହିଁ । ତଥାପି ଆପଣ ପଚାରୁ ଥିବାରୁ ମୁଁ କହୁଛି । ଆତ୍ମା ହେଉଛି ଶୁଦ୍ଧ, ସ୍ୱୟଂ ଜ୍ୟୋତିଶୀଳ, ନିର୍ଗୁଣ ଓ ଗୁଣାଶ୍ରୟ, ସର୍ବବ୍ୟାପକ ଓ ଆବରଣରହିତ । ଆତ୍ମା ସମସ୍ତଙ୍କର ସାକ୍ଷୀ, ଅନନ୍ୟାତ୍ମା, ସର୍ବଶ୍ରେଷ୍ଠ । ସେ ସମସ୍ତଙ୍କ ଭିତରେ ଓ ବାହାରେ ବିଦ୍ୟମାନ । ଆତ୍ମଜ୍ଞାନୀ ଶରୀରଧାରୀ ହୋଇ ମଧ୍ୟ ସର୍ବଦା ମୁକ୍ତ ଭାବରେ ରହେ । ପଦ୍ମପତ୍ରରେ ଥିବା ଜଳ ପରି ଆତ୍ମଜ୍ଞାନୀ ବିକାର ମଧ୍ୟରେ ଥାଇ ମଧ୍ୟ ବିକାର ଗ୍ରସ୍ତ ହୁଏ ନାହିଁ ।

'କିନ୍ତୁ, କେଉଁ ଉପାୟରେ କୈବଲ୍ୟ ପ୍ରାପ୍ତି ହୁଏ, ତାହା ମୋତେ ବୁଝାଇ-ଦିଅନ୍ତୁ' ବୋଲି ମହାରାଜ ପୃଥୁ ଅନୁରୋଧ କରିବାରୁ ପ୍ରଭୁ କହିବାକୁ ଲାଗିଲେ—ରାଜନ୍ ! ନିଷ୍କାମ କର୍ମଯୋଗ ହିଁ କୈବଲ୍ୟ ପ୍ରାପ୍ତିର ଶ୍ରେଷ୍ଠ ଉପାୟ । ଯାହା କିଛି କରୁଛ ସେ ସବୁ ମୋତେ ଅର୍ପଣକର ଓ ମୋର ପ୍ରୀତିବର୍ଦ୍ଧନ ପାଇଁ କର୍ମରତ ହୁଅ । କୌଣସି ପ୍ରକାର କାମନା ପୋଷଣ ନ କରି ଯେ ଶ୍ରଦ୍ଧାର ସହିତ ବର୍ଣ୍ଣାଶ୍ରମଧର୍ମୋଚିତ କାର୍ଯ୍ୟ ମୋର ଆନନ୍ଦ ପାଇଁ କରିଯାଏ, ଅତିଶୀଘ୍ର ତା'ର ହୃଦୟ ପବିତ୍ର ହୋଇ-ଯାଏ । ପବିତ୍ର ଅନ୍ତକରଣରେ ବିବେକ, ସ୍ୱୟଂ ବିକାଶ ଲାଭକରେ । ବିବେକ ଉଦୟ ହେଲେ ଦେହୀ ଭାବେ ମୁଁ ଦେହ ନୁହେଁ । ଏ ପ୍ରକାର ପ୍ରତ୍ୟଗ୍‌ଦର୍ଶୀ, ଶୁଦ୍ଧଚିତ୍ତ ପୁରୁଷ ସର୍ବଦା ମୋ' ମଧ୍ୟରେ ସ୍ଥିର ରହେ । ମୋର ରୂପ ହେଉଛି ଶାନ୍ତି । ତେଣୁ

ସ୍ଥିର ଓ ଶାନ୍ତ ପୁରୁଷ ମୋ' ପଦର ଅଧିକାରୀ ହୁଏ । ଯେ, ଦ୍ରବ୍ୟ, ଜ୍ଞାନ, କ୍ରିୟା ଓ ମନର ସାକ୍ଷୀଭୂତ, ଉଦାସୀନ, ନିର୍ବିକାର, ଆତ୍ମସ୍ୱରୂପ ମୋତେ ଜାଣିପାରେ ସେ ପ୍ରକୃତ କୈବଲ୍ୟ ଲାଭ କରେ ।

ମହାରାଜ ପୃଥୁ ପଚାରିଲେ—ପ୍ରଭୋ ! ଅନୁକୂଳ ଓ ପ୍ରତିକୂଳ ଘଟଣାବଳୀ-ଦ୍ୱାରା ଯେଉଁ କ୍ରିୟା ସମ୍ପାଦିତ ହେଉଛି ତାହା କିପରି ଘଟୁଛି ଏବଂ ସେଥିରୁ ସୁଖ ଓ ଦୁଃଖର ଅନୁଭୂତି କାହିଁକି ଆସୁଛି ?

ଭଗବାନ୍ ବାସୁଦେବ ଉତ୍ତର ଦେଲେ—ରାଜନ୍ ! ଦେଖନ୍ତୁ ଏ ଶରୀରରେ ପୃଥିବୀ ଜଳ, ତେଜ, ବାୟୁ ଓ ଆକାଶ ନାମରେ ପଞ୍ଚ ମହାଭୂତ ରହିଛି । ମନ ସହିତ ଏକାଦଶ ଇନ୍ଦ୍ରିୟ ଅଛନ୍ତି । ଏମାନେ ସମସ୍ତେ ଅଭିମାନୀ ଦେବତା । ତଦ୍‌ବ୍ୟତୀତ ଚେତନାଶକ୍ତି ଅଛି । ଉକ୍ତ ବିଶିଷ୍ଟ ଅଙ୍ଗ ଓ ଚିହ୍ନ ଚହ୍ନିତ ଶରୀରରେ ସାତ୍ତ୍ୱିକ, ରାଜସ ଓ ତାମସ ତିନୋଟି ଗୁଣ ଅଛି ଓ ତ୍ରିଗୁଣରେ କ୍ରିୟା ବି ଅଛି । ଆତ୍ମା ନିର୍ବିକାର ନିର୍ଲିପ୍ତ ସାକ୍ଷୀମାତ୍ର ହୋଇ ରହିଛି । ଏସବୁ ତତ୍ତ୍ୱ ଭଲଭାବରେ ବୁଝି ପାରିଲେ ମୋଠାରେ ଅନନ୍ୟ ପ୍ରେମଭକ୍ତି ଜାତ ହୁଏ । ମୋର ଅନନ୍ୟ ଭକ୍ତକୁ କେବେହେଲେ ସୁଖ ଦୁଃଖ ଜନିତ ବିକାର ଭାବ ସ୍ପର୍ଶ କରେ ନାହିଁ । ଦୁଃଖ ସୁଖ ତା ପାଖରେ ସମାନ । ସେ ଜାଣିପାରେ ଗୁଣହିଁ ଗୁଣରେ ଥାଏ । ଆତ୍ମା ଏସବୁ ପ୍ରାକୃତ ଗୁଣରେ ଊର୍ଦ୍ଧ୍ୱରେ । ସଂସାରର ସୁଖ ଦୁଃଖରେ ସେ ମୁହ୍ୟମାନ ହୁଏ ନାହିଁ । ସେ ସର୍ବଦା ତୃପ୍ତ ଓ ଆନନ୍ଦ ସ୍ୱରୂପ ହୋଇଯାଏ ।

ମହାରାଜ ପୃଥୁ ପଚାରିଲେ—ଭଗବନ୍ ! ଆପଣ ବ୍ରହ୍ମଜ୍ଞାନର ଗୂଢ଼ ତତ୍ତ୍ୱ କହିଲେ । କିନ୍ତୁ ମୋ' ପରି ସାଧାରଣ ଲୋକର କର୍ତ୍ତବ୍ୟ ବିଷୟରେ ଦୟାକରି ଉପଦେଶ ଦିଅନ୍ତୁ ।

ଭଗବାନ୍ କହିଲେ—ଦେଖ, ସଂସାରରେ ଉତ୍ତମ, ମଧ୍ୟମ ଓ ଅଧମ ଏବଂ ମିତ୍ର, ଶତ୍ରୁ ଓ ଉଦାସୀନ ଏପରି ତିନିପ୍ରକାର ପୁରୁଷ ଅଛନ୍ତି । ଉତ୍ତମ ପୁରୁଷ ସମସ୍ତଙ୍କ ସହିତ ମିତ୍ରତା କରନ୍ତି । ମଧ୍ୟମ ପୁରୁଷ ନିଜର ସମ୍ପର୍କୀୟମାନଙ୍କ ସହିତ ବନ୍ଧୁତା ରକ୍ଷା କରନ୍ତି । ଯେ ସବୁବେଳେ ତୋର, ମୋର କରେ, ଅନ୍ୟ ପ୍ରତି ଈର୍ଷାପରାୟଣ ହୁଏ ତାକୁ ଅଧମ କହନ୍ତି । ଯେ ସର୍ବଦା ମଙ୍ଗଳ କାମନା କରେ ତାକୁ ମିତ୍ର କୁହାଯାଏ । ଯେ ହିତ ବା ଅହିତ କିଛି ଇଚ୍ଛା କରେ ନାହିଁ ତାକୁ ଉଦାସୀନ କହନ୍ତି । ସର୍ବଦା ଯେ ଅହିତ କାମନା କରେ ସେ ହେଉଛି ଶତ୍ରୁ । ବୁଦ୍ଧିମାନ୍ ଲୋକ ଏହି ତିନିଜଣଙ୍କ ସମଭାବନା ପୋଷଣ କରନ୍ତି । କାହାରି ପ୍ରତି ପୃଥକ୍ ଭାବ ପୋଷଣ କରନ୍ତି ନାହିଁ କି କ୍ରୋଧ ବା ଈର୍ଷା କରନ୍ତି ନାହିଁ । ସମସ୍ତଙ୍କୁ

ବୈଷ୍ଣବମାୟାର ବଶୀଭୂତ ବୋଲି ଭାବି ହୃଦୟ ଦେଇ ଭଲ ପାଆନ୍ତି । ତୁମେ ବୁଦ୍ଧିମାନ୍ ବ୍ୟକ୍ତିର ଆଚରଣ କର । ମନ ସହିତ ଇନ୍ଦ୍ରିୟଗଣଙ୍କୁ ଜୟ କରି ମୋର ସେବା ବୋଲି ଭାବି ସମସ୍ତଙ୍କୁ ସାହାଯ୍ୟ କର ଏବଂ ପ୍ରଜାମାନଙ୍କୁ ଲାଳନ ପାଳନ କର । ମନ୍ତ୍ରୀମାନଙ୍କୁ ତୁମେ ସାହାଯ୍ୟକାରୀ ବୋଲି ଭାବ ।

ମହାରାଜ ପୃଥୁ କହିଲେ—ପ୍ରଭୋ ! ମୋତେ ଆଉ ପ୍ରଜାପାଳନ ରୂପକ କାଦୁଅରେ ପକାନ୍ତୁ ନାହିଁ । ଏହାର ଦାୟିତ୍ୱ ଅନ୍ୟ କାହାକୁ ଦିଅନ୍ତୁ । ମୁଁ କଲ୍ୟାଣ-ମାର୍ଗର ପଥିକ ହେବା ପାଇଁ ଚାହୁଁଛି । ସର୍ବାତ୍ମାଭାବରେ ଆପଣଙ୍କ ଆରାଧନାରେ ନିମଜ୍ଜିତ ରହିବାକୁ ଇଚ୍ଛା କରୁଛି ।

ଭଗବାନ୍ କହିଲେ—ନାଁ । ନାଁ, ରାଜନ ! ପ୍ରଜାମାନଙ୍କୁ ସ୍ନେହରେ ପୁଅପରି ପାଳନ କରିବା ରାଜାଙ୍କ ପକ୍ଷରେ କଲ୍ୟାଣର ମାର୍ଗବୋଲି ବିବେଚିତ ହୁଏ । ପ୍ରଜାଗଣ ଯେଉଁ ପୁଣ୍ୟ ଅର୍ଜନ କରନ୍ତି ତା'ର ଷଷ୍ଠାଂଶ ପରଲୋକରେ ରାଜାମାନଙ୍କୁ ମିଳିଥାଏ । ସେହିପରି ପାପର ଷଷ୍ଠାଂଶ ମଧ୍ୟ ରାଜାମାନେ ପାଇଥାନ୍ତି । ପ୍ରମାଦ-ବଶତଃ ଯେ ସ୍ୱଧର୍ମ ତ୍ୟାଗ କରି ଅନ୍ୟ କାର୍ଯ୍ୟ କରେ ସେ ପତିତ ହୋଇଯାଏ । ଶ୍ରେଷ୍ଠ ବେଦଜ୍ଞ ବ୍ରାହ୍ମଣମାନଙ୍କ ଉପଦିଷ୍ଟ ମାର୍ଗରେ ତାଙ୍କରି ପରାମର୍ଶ ଓ ଆଦେଶ ଅନୁସାରେ ପ୍ରଜାମାନଙ୍କୁ ପାଳନ କର । ତାହାହିଁ ଆପଣଙ୍କର ପ୍ରଧାନ ସାଧନା ।

ମହାରାଜ ପୃଥୁ ପୁଣି ପଚାରିଲେ - ପ୍ରଭୋ ! ଆପଣଙ୍କ ଆଦେଶ ମୋତେ ପାଳନ କରିବାକୁ ପଡ଼ିବ । କିନ୍ତୁ ଗୃହସ୍ଥ ଭାବେ ଥିବାରୁ ମୁଁ ସଜ୍ଜନସଙ୍ଗଠାରୁ ବଞ୍ଚିତ ହୋଇଯାଇଛି । ରାଜକାର୍ଯ୍ୟରେ ବ୍ୟସ୍ତ ରହିଥିବାରୁ ସାଧୁମାନଙ୍କ ସହିତ ସାକ୍ଷାତ କରିପାରୁ ନାହିଁ । ସତ୍ସଙ୍ଗତ ନ ହେବା ପର୍ଯ୍ୟନ୍ତ ପରମାର୍ଥ ମାର୍ଗରେ ଉନ୍ନତି କରି-ହେବ ନାହିଁ । ରାଜ୍ୟ ଦାୟିତ୍ୱ ବହନରେ ଏହା ହିଁ ବଡ଼ ଅସୁବିଧା ।

ଭଗବାନ କହିଲେ—ରାଜନ୍ ! ଆପଣ ବ୍ୟସ୍ତ ହେଉଛନ୍ତି କାହିଁକି । ଭଗବତ୍ ସେବା ଭାବି ଯେ ନିଷ୍କାମ ଚିତ୍ତରେ ନିଜର କର୍ତ୍ତବ୍ୟ କରିଯାଏ ତା' ସହିତ ମିଶିବା ପାଇଁ ସିଦ୍ଧଗଣ ସ୍ୱତଃ ଆସି ପହଞ୍ଚି ଯାଆନ୍ତି । ସିଦ୍ଧପୁରୁଷମାନଙ୍କ ପାଖରେ କାହାରି ମନୋଭାବ ଲୁଚି ରହେ ନାହିଁ । ସେମାନେ ସବୁବେଳେ ଅଧିକାରୀକୁ ଖୋଜି ବୁଲନ୍ତି । ସାଧକ ଅପେକ୍ଷା ଯୋଗ୍ୟ ଅଧିକାରୀକୁ ଉପଦେଶ ଦେବା ପାଇଁ ସେମାନେ ଆଗ୍ରହ ପ୍ରକାଶ କରନ୍ତି । ଆପଣ ଘରେ ବସି ସନକାଦି ମହାସିଦ୍ଧମାନଙ୍କ ଉପଦେଶ ଗ୍ରହଣ କରି ପାରିବେ ।

ଭଗବାନ୍ ବାସୁଦେବଙ୍କ ମଧୁର ବଚନ ଶୁଣି ମହାରାଜ ପୃଥୁ ଆନନ୍ଦିତ ହେଲେ । ଭଗବାନଙ୍କ କୃପାଭାରକୁ ସହି ନ ପାରି ସେ ନମ୍ର ହୋଇଗଲେ । ଏହା-

ଦେଖି ଭଗବାନ୍ ପ୍ରସନ୍ନ ହୋଇ କହିଲେ--ରାଜନ୍ ! ମୁଁ ଆପଣଙ୍କର ଶୀଳ, ସ୍ୱଭାବ, ସଦାଚାର ଓ ସରଳତା ଦେଖି ଖୁସି ହେଲି । ଆପଣ ବର୍ତ୍ତମାନ ନିଜ ଇଚ୍ଛା ଅନୁସାରେ ବର ପ୍ରାର୍ଥନା କରନ୍ତୁ ।

ମୈତ୍ରେୟ ମୁନି କହିଲେ—ଭଗବାନଙ୍କଠାରୁ ବର ମାଗିବାର ଆଦେଶ ପାଇଁ ମହାରାଜ ପୃଥୁ ଲଜ୍ଜିତ ହୋଇ ପଡ଼ିଲେ । ଲଜ୍ଜାବଶତଃ ସେ କିଛି କହି-ପାରିଲେ ନାହିଁ । ତଳକୁ ମୁହଁ କରି ସେ ଠିଆହୋଇ ରହିଲେ ।

## ଛପ୍‌ପୟ

"ରାଜନ୍ ଯହ ତନୁ ନାଶବାନ୍ କ୍ଷଣ ଭଙ୍ଗୁର ଗୁଣମୟ ।
ଆତ୍ମା ନିର୍ଗୁଣ ଶୁଦ୍ଧ ହବଂଗତ ସାକ୍ଷୀ ଆଶ୍ରୟ ।।
କରହିଁ ଦାନ ତପ ଧର୍ମ ବିବଧ ବଧି ଯଜ୍ଞ ରଚାଓଁ ।
କରକେଁ ଅରପେଁ ମୋହି ପରମ ପଦ ତେ ନର ପାଓଁ ।।
ପୃଥୁ ପୃଥିବୀ ପାଳନ କରୋ, ମେରୀ ସେବା ଜାନିକେଁ ।
କରହୁ ପ୍ରେମ ସବ ଜନନି ତେଁ, ସବ ମହଁ ମୋକୂଁ ମାନିକେଁ ।।"



# ମହାରାଜ ପୃଥୁଙ୍କ ପ୍ରେମ

"ସ ଆଦିରାଜୋ ରଚିତାଞ୍ଜଳିର୍ହରିଂ,
ବିଲୋକିତୁଂ ନାଶକଦଶ୍ରୁଲୋଚନଃ ।
ନ କିଞ୍ଚନୋବାଚ ସ ବାଷ୍ପବିକ୍ଳବୋ
ହୃଦୋପଗୁହ୍ୟାମୁମଧାଦବସ୍ଥିତଃ ॥"
(ଭାଗବତ-୪ର୍ଥ ସ୍କନ୍ଧ-୨୦ ଅଧ୍ୟାୟ-୨୧ ଶ୍ଳୋକ)

## ଛପ୍‌ପୟ

"ହରି ଆୟସୁ ସିର ଧାରି ଚରନ ମହଁ ଶୀଶ ନବାୟୋ ।
ପର୍‌ୟୋ ପୈର ପେ ଶକ୍ର ଉଠାୟୋ ହିୟେ ଲଗାୟୋ ॥
ପୁନ ବିଧିବତ ଅତି ପ୍ରେମ ସହିତ ପ୍ରଭୁ ପୂଜା କୀହ୍ନୀଂ ॥
ଅତି ପ୍ରସନ୍ନ ହରି ଭୟେ ପ୍ରେମ କୀ ଆଶିଷ ଦୀହ୍ନୀଂ ॥
ହରି ଦରଶନ ନହିଁ କରି ସକେଂ, ପ୍ରେମ ଅଶ୍ରୁ ନୟନନ ଭରେ ।
କଣ୍ଠ ରୁଦ୍ଧ ନିଃଶବ୍ଦ ହରି, ହିୟ ତେଂ ଆଲିଙ୍ଗନ କରେ ॥"

କଠୋର ତପସ୍ୟା ବଳରେ ଭଗବାନଙ୍କୁ ପ୍ରସନ୍ନ କରିବା ସମ୍ଭବ ନୁହେଁ । ତପସ୍ୟାଦ୍ୱାରା ପୁଣ୍ୟ ସଞ୍ଚୟ ହୁଏ ଏବଂ ପୁଣ୍ୟଦ୍ୱାରା ସାଂସାରିକ ସୁଖଭୋଗ ମିଳେ । ଯଜ୍ଞ ଅନୁଷ୍ଠାନଦ୍ୱାରା ଶ୍ରୀହରିଙ୍କୁ ସନ୍ତୁଷ୍ଟ କରିବାର ଧାରଣା ଭ୍ରମାତ୍ମକ । ଅଶ୍ୱମେଧାଦି ଯଜ୍ଞଦ୍ୱାରା ସ୍ୱର୍ଗଲୋକ ପ୍ରାପ୍ତି ହୁଏ; କିନ୍ତୁ ଯଜ୍ଞଫଳ କ୍ଷୟିଷ୍ଣୁ, ନାଶବାନ୍ ଓ ଅତିଶୟ ଦୋଷଯୁକ୍ତ । ସର୍ବତ୍ର ସମଭାବାପନ୍ନ ଲୋକ ହିଁ ଭଗବାନଙ୍କୁ ସହଜରେ ପ୍ରସନ୍ନ କରିପାରେ । ଅପକାରୀ ଲୋକ ପ୍ରତି ମଧ୍ୟ ଯେ ଅସୂୟାଭାବ ପୋଷଣ ନ କରେ, ତାହାକୁ ସମଭାବାପନ୍ନ ବ୍ୟକ୍ତି କୁହାଯାଏ । ସେ ହିଁ ପ୍ରକୃତ ପଣ୍ଡିତ, ଜ୍ଞାନୀ ଓ ତତ୍ତ୍ୱଦର୍ଶୀ ବୋଲି ବିବେଚିତ ହୁଏ ।

ଗୋଟିଏ ମଠରେ ଅନେକ ଭଗବଦ୍‌ଭକ୍ତ ସାଧକ ରହୁଥିଲେ । ଘର ଘର ବୁଲି ସେମାନେ ଭିକ୍ଷା ମାଗୁଥିଲେ ଏବଂ ଅନବରତ ନାମ ସଂକୀର୍ତ୍ତନ କରୁଥିଲେ । ସେମାନଙ୍କ ମଧ୍ୟରେ ଜଣେ ଖୁବ୍ ଉଚ୍ଚକୋଟୀର ସାଧୁ ଥିଲେ । ତାଙ୍କର କାହାରି ପ୍ରତି ରାଗ କି ଦ୍ୱେଷ ନ ଥିଲା । ସେ ସବୁଠାରେ ସର୍ବାନ୍ତର୍ଯାମୀ ପ୍ରଭୁଙ୍କର ସତ୍ତା ଅନୁଭବ କରୁଥିଲେ । ଦୁଷ୍ଟଲୋକେ ସାଧୁମାନଙ୍କୁ ହଇରାଣ କରିବା, ନାନାଭାବରେ ନିର୍ଯାତନ ଦେବାକୁ ଭଲ ପାଆନ୍ତି । ଅକାରଣ କଷ୍ଟ ଅନ୍ୟଙ୍କୁ ଦେବା ଖଳମାନଙ୍କର ସ୍ୱଭାବ । ଜଣେ ଦୁଷ୍ଟ ପ୍ରକୃତିର ଲୋକ ସେହି ସାଧୁଙ୍କ ପ୍ରତି ଅଯଥା ଈର୍ଷା କରୁଥିଲା । କିନ୍ତୁ ମହାତ୍ମାଙ୍କୁ ସେ କଥା କିଛି ଜଣା ନ ଥିଲା । ଦିନେ ସେ ଦୁଷ୍ଟ ଲୋକଟି ନିଜ ଭାଇ ସହିତ କଳି କରୁଥିଲା । ଦୁଇ ଭାଇ ଖୁବ୍ ରାଗିଯାଇ ପରସ୍ପରକୁ ପିଟାପିଟି ଆରମ୍ଭ କରି ଦେଇଥିଲେ । ଏହି ସମୟରେ ଭିକ୍ଷା ମାଗିବାକୁ ଯାଇ ସାଧୁ ମହାତ୍ମା ସେଠାରେ ପହଞ୍ଚିଗଲେ । ସେ ସ୍ୱଭାବବଶତଃ ସେ ଦୁହିଁଙ୍କୁ ବୁଝାଇବାକୁ ଯାଇ କହିଲେ—ଆରେ ଭାଇ, ଏପରି ପିଟାପିଟି କାହିଁକି ହେଉଛ ? ଏସବୁ ଭଲ କଥା ନୁହେଁ । ଶାନ୍ତ ହୁଅ, ଶାନ୍ତିରେ ରୁହ । ଏହା କହି ସେ ଦୁଇଭାଇଙ୍କୁ ପରସ୍ପରଠାରୁ ଛଡ଼େଇବାକୁ ଲାଗିଲେ । ଦୁଷ୍ଟ ଲୋକଟି ଆହୁରି ରାଗିଯାଇ କହିଲା—ଏ ସାଧୁ ମୋ କାର୍ଯ୍ୟରେ ବାଧା ସୃଷ୍ଟି କରି ଗୁରୁଙ୍କ ପରି ଶିକ୍ଷା ଦେବାକୁ ବସିଛି । ତେଣୁ ଭାଇକୁ ବାଡ଼େଇବା ଛାଡ଼ି ସେ ମହାତ୍ମାଙ୍କ ମୁଣ୍ଡରେ ଖୁବ୍ ଜୋର୍ ପାହାରେ ପିଟିଦେଲା । ଏକାପାହାରକେ ସାଧୁଙ୍କ ମୁଣ୍ଡ ଫାଟିଗଲା । ସେ ତଳେ ଅଚେତ ହୋଇ ପଡ଼ିଗଲେ ।

ମଠର ଅନ୍ୟ ସାଧୁମାନେ ଏ ଘଟଣା ଦେଖି ଦୌଡ଼ି ଆସିଲେ ଓ ସାଧୁଙ୍କୁ ଉଠେଇ ମଠକୁ ନେଇଗଲେ । ତାଙ୍କୁ ସଚେତ କରାଇ ମୁଣ୍ଡରେ ଔଷଧ ଲଗାଇ ଦେଲେ । ଆଉ ଜଣେ ସାଧୁ ଯାଇ ତାଙ୍କୁ ପଚାରିଲେ – ମହାତ୍ମନ ! ଆପଣ ଆମ-ମାନଙ୍କୁ ଚିହ୍ନିପାରୁଛନ୍ତି ତ ? ଆପଣଙ୍କ ପାଟିରେ କିଏ କ୍ଷୀର ଦେଉଛି ? କ୍ଷୀଣସ୍ୱରରେ ମହାତ୍ମା କହିଲେ—"ଠିକଏ ଆଗରୁ ମୋତେ ଯେ ପିଟିଥିଲା ସେ ମୋତେ କ୍ଷୀର ପିଆଉଛି । ସେହି ପ୍ରଭୁ ମାରନ୍ତି, ତାରନ୍ତି । ସେ ଶିକ୍ଷା ଦିଅନ୍ତି ଓ ବିପଦରୁ ରକ୍ଷା କରନ୍ତି ।" ଅଚେତ ଅବସ୍ଥାରେ ମଧ୍ୟ ସାଧୁଙ୍କର ଏପରି ସମଭାବନା ଦେଖି ଭଗବାନ ସାକ୍ଷାତ୍ ଆବିର୍ଭୂତ ହେଲେ ଏବଂ ତାଙ୍କର ଦର୍ଶନ ପାଇ ସାଧୁ ମହାତ୍ମା ତରିଗଲେ ।

ମୈତ୍ରେୟ ମୁନି କହିଲେ—ହେ ବିଦୁର ! ଭଗବାନଙ୍କ ପାଖରେ ଐଶ୍ୱର୍ଯ୍ୟର ଅଭାବ ନାହିଁ । ସେ ବାହାର ଆଡ଼ମ୍ବରରେ ନୁହେଁ, ଅନ୍ତରର ଭାବରେ ପ୍ରସନ୍ନ ହୁଅନ୍ତି । ମହାରାଜ ପୃଥୁ ଯେତେ ଅନୁପମ ଯଜ୍ଞର ପୂର୍ଣ୍ଣତା ପାଇଁ ଆଗ୍ରହ କରିଥାନ୍ତେ, ତେବେ ଇନ୍ଦ୍ରଦେବତା ନିଷ୍ଟୟ ବିଘ୍ନ କରିବାରେ ଲାଗିଥାନ୍ତେ । ଫଳରେ ଉଭୟଙ୍କ ପକ୍ଷରୁ ସଂଘର୍ଷ ଘଟିଥାନ୍ତା, କ୍ରୋଧ, ଦ୍ୱେଷ, ଅଭିଶାପ ବୃଷ୍ଟି ହୋଇଥାନ୍ତା । ସ୍ନେହ,

ପ୍ରେମ, ଉଦାରଭାବ ପରବର୍ତ୍ତୀ ଯଜ୍ଞଭୂମି ଯୁଦ୍ଧଭୂମିରେ ପରାଜିତ ହୋଇଥାନ୍ତା । ପିତାମହ ବ୍ରହ୍ମା ଅନୁରୋଧରେ ପୃଥୁ ନିଜ ଫଇସଲାରୁ ଓହରି ଗଲେ, ନମ୍ର ହୋଇଗଲେ । ତେଣୁ ପିତାମହ ବ୍ରହ୍ମା ଓ ଜଗନ୍ନାଥ ବିଷ୍ଣୁ ମହାରାଜ ପୃଥୁଙ୍କ ଆଚରଣରେ ସନ୍ତୁଷ୍ଟ ହେଲେ ଏବଂ ଦେବଦୁର୍ଲଭ ସାକ୍ଷାତ୍ ଦର୍ଶନ ଦେଲେ । ଭଗବାନ ସାହା କରନ୍ତି ମଙ୍ଗଳ ପାଇଁ । ଯଜ୍ଞରେ ତାଙ୍କର ପୂଜା ହେଉଥିଲା । ଏହା ସାରି ମହାରାଜ ପୃଥୁ ଶ୍ରୀହରିଙ୍କ ସମ୍ମୁଖରେ ମୁଣ୍ଡ ନୁଆଁଇଦେଲେ ଓ ତାଙ୍କର ଶୁଭ ଅନୁଶାସନ ଗ୍ରହଣ କଲେ ।

ମହାରାଜ ପୃଥୁଙ୍କ ବିନମ୍ର ଭାବ ଦେଖି ଭଗବାନ କ୍ଷମା ପ୍ରାର୍ଥନା ନିମିତ୍ତ ଦେବରାଜ ଇନ୍ଦ୍ରଙ୍କୁ ସଙ୍କେତ ଦେଲେ । ଇନ୍ଦ୍ର ପୃଥୁଙ୍କ ପାଦତଳେ ପଡ଼ିଗଲେ । ଦେବରାଜ ଇନ୍ଦ୍ରଙ୍କୁ ପଦାନତ ହୋଇଥିବାର ଦେଖି ପୃଥୁଙ୍କ ହୃଦୟ ତରଳିଗଲା । ସେ ସ୍ନେହରେ ଇନ୍ଦ୍ରଙ୍କୁ ଉଠାଇ ଆଣି ଗାଢ଼ରେ କାକୁଡ଼ି ଧରି ଆଲିଙ୍ଗନ କଲେ । ଆଖିରୁ ଲୋତକ ପୋଛି ଇନ୍ଦ୍ର କହିଲେ — ମହାରାଜ ! ମୁଁ ଜଣେ ବଡ଼ ଅପରାଧୀ । ନୀଚ ମନୋଭାବ-ବଶତଃ ମୁଁ ଆପଣଙ୍କଠାରେ କୁଟିଳ ବ୍ୟବହାର କରିଛି । ଆପଣ ମୋର ଅପରାଧ ଭୁଲି ମୋତେ କ୍ଷମା ଦିଅନ୍ତୁ ।

ଇନ୍ଦ୍ରଙ୍କ ପିଠିରେ ହାତ ବୁଲାଇ ମହାରାଜ ପୃଥୁ କହିଲେ — ଦେବେନ୍ଦ୍ର ! ଆପଣ ଏପରି କୁହନ୍ତୁ ନାହିଁ । ଯଜ୍ଞ ପୂର୍ତ୍ତି କରିବାର ଅଭିଳାଷ ମୋର ନ ଥିଲା । ଶତ ଅଶ୍ୱମେଧ ଯଜ୍ଞ କରି ମୁଁ କୌଣସି ପଦ ପାଇଁ ଅଭିଳାଷୀ ନ ଥିଲି । ପ୍ରଭୁପ୍ରାପ୍ତି ଥିଲା ମୋର ଏକମାତ୍ର ଲକ୍ଷ୍ୟ । ସର୍ବାନ୍ତର୍ଯାମୀ ଭଗବାନ୍ ପ୍ରସନ୍ନ ହୁଅନ୍ତୁ, ଏହା ଥିଲା ମୋର ଧ୍ୟେୟ । ଯଜ୍ଞ ପୂର୍ତ୍ତି ବିନା ପ୍ରଭୁ ସ୍ୱୟଂ ପ୍ରସନ୍ନ ହେଲେ । ଘରେ ଥାଇ ଯଦି ସବୁ ମିଳିବ ତେବେ ବାହାରକୁ ଯିବାର ଆବଶ୍ୟକତା କଣ ? ଆପଣ ଦୟାକରି ମୋତେ ସମସ୍ତ ଜଞ୍ଜାଳରୁ ମୁକ୍ତି ଦେଇଛନ୍ତି । ଆପଣ ଆଗ୍ରହୀ ହୋଇ ନ ଥିଲେ ଭଗବାନ୍ ଏତେ ଶୀଘ୍ର ଓ ଏତେ ସହଜରେ କଣ ପ୍ରସନ୍ନ ହୋଇଥାନ୍ତେ ? ଆପଣ ଆଦୌ ଭାବନ୍ତୁ ନାହିଁ । ଆପଣଙ୍କ ପ୍ରତି ମେ ମନରେ କୌଣସି ଭୁଲ ଧାରଣା ନାହିଁ ।

ମହାରାଜ ପୃଥୁଙ୍କ ଚେତନା ଫେରି ଆସିଲା । ସେ ଏପର୍ଯ୍ୟନ୍ତ ଭଗବାନଙ୍କୁ ପୂଜା କରି ନାହାନ୍ତି । ସଙ୍ଗେ ସଙ୍ଗେ ନାନାବିଧ ବହୁମୂଲ୍ୟ ଦ୍ରବ୍ୟ ମଗାଇ ଆଣି ମହାରାଜ ପୃଥୁ ବିଧି ପୂର୍ବକ ଭଗବାନଙ୍କୁ ପୂଜା କଲେ । ପ୍ରଭୁଙ୍କ ପାଦପଦ୍ମରେ ପ୍ରଣାମ ଜଣାଇଲେ । ମହାରାଜ ପୃଥୁଙ୍କ ହୃଦୟ କ୍ଷଣେ କ୍ଷଣେ ଅଧିକରୁ ଅଧିକ ଦ୍ରବୀଭୂତ ହେଉଥିଲା । ଭଗବାନଙ୍କ ପଦ୍ମପାଦର ସ୍ପର୍ଶରେ ତାଙ୍କର ତୃପ୍ତି ଆସୁ ନ ଥିଲା । ଭଗବାନ୍ ଶ୍ରୀହରି ମହାରାଜଙ୍କୁ ଚାହିଁ ରହିଥାନ୍ତି । ଭକ୍ତର ସ୍ନେହ ବନ୍ଧନରେ

ଆବଦ୍ଧ ହୋଇ ଭଗବାନ ଯିବା ପାଇଁ ଉଦ୍ୟତ ହୋଇଥିଲେ ମଧ୍ୟ ଠିଆହୋଇ ରହି-ଗଲେ । ଦେବଗଣ ପୃଥିବୀ ସ୍ପର୍ଶ କରନ୍ତି ନାହିଁ, କିନ୍ତୁ ପ୍ରଭୁ ଶ୍ରୀହରି ନିଜକୁ ଭୁଲି ଭକ୍ତର ଭକ୍ତିଭାବରେ ବିହ୍ୱଳ ହୋଇଥିବାରୁ କିଛି ଜାଣି ପାରିଲେ ନାହିଁ । ତାଙ୍କର କୋମଳ ଚରଣ ପୃଥିବୀ ପୃଷ୍ଠଦେଶକୁ ସ୍ପର୍ଶ କରୁଥିଲା । ଭକ୍ତ ଓ ଭଗବାନ ଉଭୟ ସମଦଶାପନ୍ନ ହୋଇ ରହିଥିଲେ । ପୃଥୁଙ୍କ ଆଖିରୁ ଅଶ୍ରୁଧାରା ବହିଯାଉଥିଲା । କଣ୍ଠ ବାଷ୍ପରୁଦ୍ଧ ହୋଇଯାଉଥିଲା । ପ୍ରଭୁଙ୍କ ପାଦପଦ୍ମକୁ ମହାରାଜ ହୃଦୟରେ ଲଗାଇ ଜାବୁଡ଼ି ଧରିଥିଲେ । ନେତ୍ର ଲୋତକାପ୍ଲୁତ ଓ କଣ୍ଠ ବାଷ୍ପରୁଦ୍ଧ ହୋଇଥିବାରୁ ସେ ଭଲଭାବରେ ପ୍ରଭୁଙ୍କୁ ଦେଖି ପାରିଲେ ନାହିଁ କି କିଛି କହିପାରିଲେ ନାହିଁ । ଭକ୍ତ ଛାଡ଼ିପାରୁ ନ ଥିଲେ କି ଭଗବାନ ଯାଇପାରୁ ନ ଥିଲେ ।

ମୈତ୍ରେୟ ମୁନି କହିଲେ—ଆଦାନ ପ୍ରଦାନରେ ପ୍ରେମ ପରିପୁଷ୍ଟ ହୁଏ । ସେହି ପ୍ରେମ ଅଭିବ୍ୟକ୍ତିର ମୂଳ ଉତ୍ସ । ତେଣୁ ଭଗବାନ ରାଜାଙ୍କୁ କହିଲେ—ରାଜନ୍ ! ଆପଣ ଯାହା ମାଗିବେ ଦେବି । ଆପଣ ଅଭୀଷ୍ଟ ବର ପ୍ରାର୍ଥନା କରନ୍ତୁ । ଏହା ଶୁଣି ମହାରାଜ ପୃଥୁ ନିର୍ନିମେଷ ନୟନରେ ଭଗବାନଙ୍କ ଶ୍ରୀମୁଖକୁ ଚାହିଁ ରହିଗଲେ ।

## ଛପ୍‌ପୟ

"ପୃଥୁ ପକରେ ପ୍ରଭୁ ପାଦ ପଦ୍ମ ପାବନ ଅତି ମନହର ।
ସ୍ତବେ ସଦା ମଧୁମତ୍ତ ହୋଇଁ ପୀ ଭକ୍ତ ଭମରବର ।।
ପଲକନ ପୌଁଛି ଟରଗ ନୟନ ପୟତେଂ ପୁନ ଧୋୟେ ।
ନଖ ଦ୍ୟୁତି କେ ଆଲୋକ ମାଂହି ପ୍ରିୟ ପୁନ ପୁନ ଜୋୟେ ।।
ପ୍ରଭୁ ପ୍ରଭୁପନ କୁଁ ଭୂଲିକେଁ, ପଗ ଭୂଥିବୀ ପରସତ ଭୟେ ।
ଭକ୍ତ ଔର ଭଗବାନ୍ ଉ, ଦୋନେଁ ବେସୁଧି ବନ ଗୟେ ।।"



## ବିଚିତ୍ର ବରଦାନ

"ନ କାମୟେ ନାଥ ତଦପ୍ୟହଂ କ୍ୱଚିତ୍,
ନ ଯତ୍ର ଯୁଷ୍ମଚ୍ଚରଣାମ୍ବୁଜାସବଃ ।
ମହତ୍ତମାନ୍ତର୍ହୃଦୟାନ୍ମୁଖଚ୍ୟୁତୋ,
ବିଧତ୍ସ୍ୱ କର୍ଣ୍ଣାୟୁତମେଷ ମେ ବରଃ ॥"
(ଭାଗବତ-୪ର୍ଥ ସ୍କନ୍ଦ- ୨୦ ଅଧ୍ୟାୟ-୨୪ ଶ୍ଳୋକ )

### ଛପ୍‌ପୟ

"ଭକତବଛଳ ଭଗବାନ୍ କହେଁ ନୃପବର ବର ମାଁଗୋ ।
ମୋଇ କୃତାରଥ କରେବ ନସ୍ପୃହା ଐସୀ ତ୍ୟାଗୋ ॥
ଅଶ୍ରୁ ପୋଁଛ ପୃଥୁ କହେ ପ୍ରଭୋ ! ଅବ ୟହ ବର ଦୀଜେ ।
ହୋଇଁ ସହସ୍ର ଦଶ କାନ, ପ୍ରତଜ୍ଞା ପୂରୀ କୀଜେ ॥
ଘର ବୈଠେ ସବ ଠୌର ତେଁ, ସୁଯଶ, ତୁମ୍‌ହାର ସୁନେୟା କରୁଁ ।
ସୁନତ ଶ୍ରବନ ଗୁନ ଅକତ ନହିଁ, ହୋଇଁ ହୃଦୟେ ତବ ଛବ ଧରୁଁ ।"

ଯେଉଁ ମଦରୁ ଅତି ଉତ୍କଟ ଦୁର୍ଗନ୍ଧ ଆସେ, ତାକୁ ପିଇବାରେ କି ସୁଖ ମିଳେ, ତାହା କେବଳ ସେହି ମଦ୍ୟପ ଜାଣିପାରେ । ମଦୁଆ ବ୍ୟତୀତ ମଦ ପିଇବାର ସୁଖ ଅନ୍ୟ କେହି ଜାଣିପାରନ୍ତି ନାହିଁ । ଯାହା ଦେଖିବା ମାତ୍ରେ ବାନ୍ତି ଲାଗେ, ଯାହାର କଥା ମନେପଡ଼ିବା ମାତ୍ରେ ଦେହ ଶୀହରି ଉଠେ, ସେହି ମାଂସର ସ୍ୱାଦ ମାଂସାସୀ ବ୍ୟତୀତ ଅନ୍ୟ କେହି ଜାଣିବା ପାଇଁ ସମର୍ଥ ନୁହେଁ । ଯେଉଁ ଅଙ୍ଗରୁ ଦୁର୍ଗନ୍ଧ ମଳ, ମୂତ୍ର ଆଦି ଅଶୁଚି ପଦାର୍ଥ ସର୍ବଦା ସ୍ରବିତ ହୁଏ, ସେ ସବୁର ସ୍ପର୍ଶାଦି-ଦ୍ୱାରା କି ସୁଖ ମିଳେ ତାହା ଯଥାର୍ଥ, କାମୁକ ବ୍ୟକ୍ତି ବିନା କିଏ ଆଉ ବୁଝିପାରିବ ?

ସେହିପରି ପ୍ରତିଦିନ ଭଗବାନ୍ଙ୍କ କଥା ଶ୍ରବଣରେ ଯେ ସୁଖ ମିଳେ ତାହା ଭକ୍ତ ବ୍ୟତୀତ ଅନ୍ୟ କେହି ଅନୁଭବ କରିପାରିବେ ନାହିଁ । ଅନେକ ପରିଚିନ୍ତ ହିରଣାକ୍ଷ୍ୟ ଓ ହିରଣ୍ୟ କଶିପୁଙ୍କୁ ମାରି ସେ ଶୂକର ଓ ନୃସିଂହ ହୋଇଥିଲେ । ପୁଣି ରାବଣ, ବିଭୀଷଣ ପାଇଁ ରାମ ଲକ୍ଷ୍ମଣ ହେଲେ ଏବଂ କଂସ, ଶିଶୁପାଳ ପାଇଁ ରାମକୃଷ୍ଣ ହେଲେ । ସେହି କଥାକୁ ବାରମ୍ବାର ଶୁଣି ଲାଭ କଣ ? ଥରେ, ଦୁଇଥର, ଦଶଥର ଶୁଣା ଯାଇପାରେ; କିନ୍ତୁ ଦିନ ରାତି ସେହି କଥା ଶୁଣିବାରେ ତୁମର ତୃପ୍ତି ଆସୁନାହିଁ କାହିଁକି ? ଏହାର ସହଜ ଉତ୍ତର ହେଉଛି ଯାହାକୁ ଯେଉଁ ଖାଦ୍ୟ ଭଲ ଲାଗେ ତାହା ବାରମ୍ବାର ଖାଇଲେ ମଧ୍ୟ ତା'ର ତୃପ୍ତି ଆସେନାହିଁ । ଏହା ଅଭ୍ୟାସର କଥା । ଖାଇବାରେ କାହାର କଣ ସ୍ଥାୟୀ ତୃପ୍ତି ଆସେ ? ସକାଳେ ଖାଇଥିଲେ ବି ସନ୍ଧ୍ୟାବେଳକୁ ପୁଣି ଖାଇବା ଦରକାର ପଡ଼େ । ଅଫିମା ଲୋକ ଦିନକୁ ଟିକିଏ ଅଫିମ ନ ପାଇଲେ ବ୍ୟାକୁଳ ହୋଇପଡ଼େ । ଗଞ୍ଜୁଆ, ଭାଙ୍ଗୁଆ, ମଦୁଆମାନେ ଗଞ୍ଜେଇ, ଭାଙ୍ଗ, ମଦ ବିନା ସଂସାରକୁ ଶୂନ୍ୟ ମନେକରନ୍ତି । ନିଜର ପ୍ରିୟ ବସ୍ତୁରେ ଯଦି ତୃପ୍ତି ମିଳିଗଲା, ତେବେ ତାହା ପ୍ରିୟବସ୍ତୁ ନୁହେଁ ବୋଲି ବୁଝିବାକୁ ହେବ ।

ଅର୍ଥ ଉପାର୍ଜନ କରୁଥିବା ଲୋକର କେବେହେଲେ ତୃପ୍ତି ଆସେନାହିଁ । ତା' ପାଖରେ ସୁନା, ରୂପା, ତମ୍ବା, ନୋଟରୁ ଦଶ, ପଚିଶ, ହଜାରେ, ଲକ୍ଷେ ବା ଆହୁରି ଅଧିକ ରହିଥିଲେ ବି ସେ ତୃପ୍ତି ପାଏ ନାହିଁ । ସହସ୍ରପତି ଲକ୍ଷପତି ହେବାକୁ ଚାହେଁ, ଲକ୍ଷପତି କୋଟିପତି ହେବାକୁ ଚାହେଁ ଏବଂ କୋଟିପତି ପଦ୍ମପତି ହେବାକୁ ଇଚ୍ଛା କରେ । ଏହା ଏକପ୍ରକାର ବିଳାସ । ସାରକଥା ହେଉଛି, ସବୁବେଳେ ଖାଉଥିଲେ ବି ଖାଇବାରେ ତୃପ୍ତି ଆସେନାହିଁ । ଏ ପ୍ରକାର ଅତୃପ୍ତିର ଅନ୍ୟ ନାମ ହେଲା ବିଳାସ । ସଂସାରରେ ସବୁଠି ବିଳାସୀ ଲୋକେ ଦେଖାଯାନ୍ତି; କିନ୍ତୁ ଭଗବାନ୍ଙ୍କ ନାମ ଶ୍ରବଣ, କୀର୍ତ୍ତନ ବିଳାସୀ ଲୋକ ସଂସାରରେ ଦୁର୍ଲଭ । ସଂସାରି ବିଷୟ ବାସନା କଥା ଛାଡ଼ି ଭାଗବତ କଥା ଶୁଣିବାକୁ ଇଚ୍ଛା କରୁଥିବା ଲୋକ ବିରଳ ବୋଲି କୁହାଯାଇପାରେ । ଭାଗବତ କଥା ଶ୍ରୋତାର ଆନ୍ତରିକ ଇଚ୍ଛା ଅଛି । ସେ ଚାହେଁ ସର୍ବତ୍ର ଏହି କଥାର ପ୍ରଚାର, ପ୍ରସାର ହେଉ । ହରିନାମ ସଂକୀର୍ତ୍ତନର ମଧୁର ଧ୍ୱନିରେ ଚତୁର୍ଦ୍ଦିଗ ମୁଖରିତ ହୋଇଉଠୁ । ପ୍ରତି ମୁହୂର୍ତ୍ତ କୃଷ୍ଣକଥା ଅମୃତପାନରେ କଟିଯାଉ । ସମସ୍ତେ ଭଗବାନ ବାସୁଦେବଙ୍କ କଥା ଆଲୋଚନା କରନ୍ତୁ । ସମସ୍ତେ କଥା କୀର୍ତ୍ତନର ପ୍ରଚାର ପ୍ରସାରରେ ଆଗ୍ରହୀ ହୁଅନ୍ତୁ । ଏହା ହିଁ ଭାଗବତ କଥା ଶୁଣିବା ଲୋକର ଆନ୍ତରିକ ଅଭିଳାଷ ।

ମୈତ୍ରେୟ ମୁନି କହିଲେ—ହେ ବିଦୁର ! ଭକ୍ତ ଓ ଭଗବାନଙ୍କ ମିଳନରେ ଏକ ଅପୂର୍ବ ସୁଖଜାତ ହୁଏ । ସେ ସୁଖର ତୁଳନା ନାହିଁ । ଯୁବକ ପତି ଓ ଯୁବତୀ

ପତ୍ନୀର ପ୍ରଥମ ମିଳନରେ ଯେଉଁ ସୁଖ ମିଳେ ତା'ଠାରୁ ଲକ୍ଷ କୋଟି ଗୁଣର ସୁଖ ଭକ୍ତ ପାଏ ଯେତେବେଳେ ସେ ଭଗବାନଙ୍କ ସହିତ ମିଳିତ ହୁଏ ।

ଏହା ଶୁଣି ବିଦୁର ପଚାରିଲେ—ଭଗବନ୍ ! ଆପଣ କପରି ଏକ ବେଢ଼ଙ୍ଗିଆ ଉପମା ଦେଲେ ତାହା ମୋତେ ଟିକେ ଅଡୁଆ ଲାଗୁଛି ।

ବିଦୁରଙ୍କ ଲଜ୍ଜାବନତ ମୁଖ ଦେଖି ମୈତ୍ରେୟ ମୁନି ହସି ହସି କହିଲେ— ମୁଁ କଣ ଖରାପ କଥା କହିଲି ? ସଂସାରରେ ଆଉ ସେପରି ସରସ ଉପମା ନାହିଁ । ଦୁଇଟି ମନ, ଦୁଇଟି ହୃଦୟ ଓ ଦୁଇଟି ଦେହ ମିଶି ଏକାକାର ହୋଇଗଲେ ସେହି ମିଳନରୁ ଏକ ଅପୂର୍ବ ଓ ଅବର୍ଣ୍ଣନୀୟ ସୁଖ ଜାତ ହୁଏ । ମହାରାଜ ପୃଥୁ ଭଗବାନଙ୍କୁ ପାଇ ନିଜକୁ ପୂରାପୂରି ଭୁଲିଗଲେ । ଭଗବାନ ମଧ୍ୟ ନିଜର ଭଗବତ୍ତାକୁ ପ୍ରସାର କରି ମର୍ତ୍ତ୍ୟର ସାଧାରଣ ମଣିଷ ପରି ଭୂମିରେ ଠିଆ ହୋଇ ରହିଲେ । ମୁଁ କହୁଛି ଅଦାନ ପ୍ରଦାନରେ ପ୍ରେମ ଉଚ୍ଛୁଳି ଉଠେ । ଉଭୟଙ୍କ ମଧ୍ୟରେ ନିଃସଙ୍କୋଚ ଆତ୍ମନିବେଦନ ଦ୍ୱାରା ଏହା ସମ୍ଭବ ହୁଏ; କିନ୍ତୁ ସଙ୍କୋଚ ଜାତ ହେଲେ ପ୍ରେମର ନ୍ୟୁନତା ପ୍ରକାଶ ପାଏ । ଭଗବାନ ମହାରାଜ ପୃଥୁଙ୍କୁ କହିଲେ, ବର ମାଗ, କିନ୍ତୁ ପୃଥୁ ନୀରବ ରହିଲେ । ଅଭାବ ଥିଲେ ଲୋକ ମାଗେ । ମହାରାଜ ପୃଥୁଙ୍କର କ'ଣ ଅଭାବ ଥିଲା ? ସେ ଭଗବାନଙ୍କୁ ବର ମାଗିଲେ କଣ ମାଗିବେ ? ସେ କିନ୍ତୁ ମାଗିବାକୁ ଚାହୁଁ ନ ଥିଲେ । ତେଣୁ ଭଗବାନ ମଧୁର ସ୍ୱରରେ କହିଲେ— ରାଜନ୍ ! ତୁମେ ମୋତେ ପୂଜା କଲ, ନାନା ଉପହାର ଦେଲ । ତୁମର ଖୁସି ପାଇଁ ମୋର କୌଣସି ବସ୍ତୁ ପ୍ରତି ଇଚ୍ଛା ନ ଥିଲେ ମଧ୍ୟ ସବୁ କିଛି ଗ୍ରହଣ କଲି । ସେହିପରି ମୋର ପ୍ରସନ୍ନତା ପାଇଁ ତୁମେ ମୋ'ଠାରୁ ବର ମାଗ । ଯାହା ତୁମର ଇଚ୍ଛା ହେଉଛି, ତାହା ନିଃସଙ୍କୋଚରେ ପ୍ରକାଶ କର । ଏପରି କୌଣସି ଜିନିଷ ମୋର ନାହିଁ, ଯାହା ତୁମେ ମାଗିଲେ ମୁଁ ଦେଇପାରିବି ନାହିଁ । ତୁମର ଯାହା ଇଚ୍ଛା ତାହା ମାଗ । ତୁମର ଅଭିଳାଷ ପୂରଣ କଲେ ମୁଁ ଖୁସି ହେବି । ଦେବା ନେବା, ଖାଇବା ଖୁଆଇବାକୁ ପ୍ରେମ ପ୍ରଦର୍ଶନର ଉପାୟ ବୋଲି କୁହାଯାଏ ।

ଏହା ଶୁଣି ମହାରାଜ ପୃଥୁ ସଙ୍କୋଚର ସହିତ କହିଲେ—ପ୍ରଭୋ ! ଆପଣ ମୋତେ ବର ମାଗିବା ପାଇଁ କହୁଛନ୍ତି । ଏହା ମୋର ପରମ ସୌଭାଗ୍ୟ । ଆପଣ ବରଦାତାମାନଙ୍କ ମଧ୍ୟରେ ଶ୍ରେଷ୍ଠ । ଆପଣଙ୍କ ପାଖରେ ଅଦେୟ ହୋଇ କିଛି ନାହିଁ । ଆପଣ ଅବିନାଶୀ, ସତ୍ୟସ୍ୱରୂପ, ଅଜ, ନିର୍ଗୁଣ ଓ ଅକ୍ଷର । ଦୟା-ବଶତଃ ଆପଣ ଯାହା ଉପରେ ପ୍ରସନ୍ନ ହୁଅନ୍ତି, ସେ ଯଦି ସଂସାରର ତୁଚ୍ଛ, ନଶ୍ୱର,

ସଂସାରର ବିଷୟଭୋଗକୁ ମାଗିବ, ତେବେ ତା'ଠାରୁ ବଳି ମୂର୍ଖ ଆଉ କିଏ ହୋଇପାରିବ ?

'ନା, ନା, ଇହଲୋକ ନୁହେଁ ସ୍ୱର୍ଗୀୟ ସୁଖ, ଇନ୍ଦ୍ରପଦ, ବ୍ରହ୍ମପଦ, ଶିବଲୋକ, ବିଷ୍ଣୁଲୋକ କାହାର ଆଧିପତ୍ୟ ଚାହୁଁଛ ତାହା କୁହ' ବୋଲି ଭଗବାନ ପ୍ରତିଶ୍ରୁତି ଦେବାରୁ ମହାରାଜ ପୃଥୁ କହିଲେ—ପ୍ରଭୋ ! ଏ ସବୁ ତ ଏକା ଜିନିଷ । ମାଟି ଓ ସୁନା ମଧ୍ୟରେ ପାର୍ଥକ୍ୟ କଣ ଅଛି ? ସୁନା ଚକ୍‌ଚକ୍ କରୁଥିବା ମାଟି ଆଉ ମାଟି ହେଉଛି ଅପରିଷ୍କୃତ ଆବର୍ଜନା ବା ମଳଯୁକ୍ତ ମାଟି । ମର୍ତ୍ତ୍ୟଲୋକ ଯାହା, ସ୍ୱର୍ଗଲୋକ, ବ୍ରହ୍ମଲୋକ ଆଦି ଠିକ୍ ସେଇଆ । ଏଠାରେ ସାଧାରଣ ସ୍ତ୍ରୀଲୋକ ଅଛନ୍ତି ସେଠାରେ ଅପ୍‌ସରାମାନେ ଅଛନ୍ତି । ମର୍ତ୍ତ୍ୟଠାରୁ ବ୍ରହ୍ମଲୋକ ପର୍ଯ୍ୟନ୍ତ ସବୁ ନଶ୍ୱର ଓ କ୍ଷୟଶୀଳ । ସେଥିରେ ମୋର ପ୍ରୟୋଜନ ନାହିଁ ।

ଭଗବାନ କହିଲେ— ତେବେ ମୋକ୍ଷ ପ୍ରାର୍ଥନା କର । ମୋକ୍ଷଲାଭ କଲେ ଆଉ ଜନ୍ମ, ମୃତ୍ୟୁଜନିତ ଆସିବା ଯିବା କରିବାକୁ ପଡ଼ିବ ନାହିଁ । ତେବେ ତୁମର ଯାହା ଇଚ୍ଛା ହେଉଛି ମାଗ ।

ମହାରାଜ ପୃଥୁ କହିଲେ—ପ୍ରଭୋ ! ମୋର ସେ ମୋକ୍ଷ ଦରକାର ନାହିଁ । ମୋକ୍ଷ ପାଇଗଲେ ମୁଁ ଆଉ ଆପଣଙ୍କ କଥା ଶୁଣି ପାରିବି ନାହିଁ । ଏଥର ମୁଁ ମାଗୁଛି । ଅପଣ ବର ଦେବାରେ ଏପାଖ ସେପାଖ କରିବେ ନାହିଁ । ମୁଁ ଆପଣଙ୍କ ଗୁଣାବଳୀ ଶୁଣିବା ପାଇଁ ଆଗ୍ରହୀ । ତେଣୁ ମୋର ଦଶହଜାର କାନ ହୋଇଯାଉ, ଏହି ବର ପ୍ରାର୍ଥନା କରୁଛି ।

ଏହା ଶୁଣି ଭଗବାନ ଜୋର୍‌ରେ ହସି ପକାଇଲେ ଆଉ କହିଲେ—ଏଇ ଏତିକ କଥା ପାଇଁ ତୁମେ ସଙ୍କୋଚ କରି ଠିଆହୋଇଛ । ମୋର କାନ ଅଭାବ ନାହିଁ । ଯୋଗମାୟାକୁ କହିଦେବି, ସେ ଆପଣଙ୍କ କାନ ଉପରେ କାନ, ଆଖିରେ କାନ, ନାକ, କପାଳ, ଗଲା, ବାହୁ, କାଖ, ଛାତି, ପେଟ, ପିଠି, ହାତ, ଗୋଡ଼ ସାରା ଦେହରେ କାନ ଲଗାଇଦେବ ।

ହସି ହସି ମହାରାଜ କହିଲେ—ପ୍ରଭୋ ! ଆପଣ କଣ ମୋତେ କୁରୂପ କରି ଦେବାକୁ ଚାହୁଁଛନ୍ତି ? ଲୋକେ ଦେଖିଲେ ମୋତେ ଘୃଣା କରିବେ ।

ଭଗବାନ୍ କହିଲେ—ବାବୁ ! ତୁମେ ତ ଦଶହଜାର କାନ ମାଗିଲ ।

ମହାରାଜ ପୃଥୁ କହିଲେ—ନା ପ୍ରଭୋ ! ଶୁଣିବାପାଇଁ ତ ଦୁଇଟି କାନ ଅଛି । ମୋର ପ୍ରାର୍ଥନା, ସେ ଦୁଇଟି କାନରେ ଏତିକି ଶକ୍ତି ରହୁ ଯାହାଦ୍ୱାରା

ଦଶ ହଜାର କୋଶ ଦୂରରେ ଆଲୋଚନା କରାଯାଉଥିବା ଆପଣଙ୍କ ଗୁଣାବଳୀକୁ ମୁଁ ଏଠାରେ ବସି ଶୁଣିପାରିବି । ଆପଣଙ୍କ କଥା ନ ଶୁଣି ମୋର କ୍ଷଣେ ମାତ୍ର ସମୟ କଟି ନ ଯାଉ, ଏହା ହିଁ ମୋର ପ୍ରାର୍ଥନା ।

'ମୋ' ଲୀଳା ଓ ଗୁଣାବଳୀ ଶୁଣିବା ଅପେକ୍ଷା ତୁମେ ନିଜେ ପଢ଼ି ଦେଇ ଜାଣିପାରିବ, ଶୁଣିବା ପାଇଁ ଏତେ ବ୍ୟାକୁଳ କାହିଁକି ?' ବୋଲି ଭଗବାନ ପ୍ରଶ୍ନ କରିବାରୁ ମହାରାଜ କହିଲେ—ପ୍ରଭୋ ' ଏକ ବସ୍ତୁ ପାତ୍ରଭେଦରେ ଭଲ ବା ମନ୍ଦ ଗୁଣ ପ୍ରକାଶ କରେ । ବର୍ଷା ଜଳ ଗଙ୍ଗାରେ ପଡ଼ି ଗଙ୍ଗା ଜଳ ହୁଏ, ସେଥିରେ ସମସ୍ତ ପାପ ଦୂର ହୁଏ । ସେହି ଜଳ ନାଳ ନର୍ଦ୍ଦମାରେ ପଡ଼ି ଅସ୍ପୃଶ୍ୟ ହୁଏ ଏବଂ ସମୁଦ୍ରରେ ପଡ଼ି ଲୁଣିଆ ଲାଗେ । ଗାଳିଗୁଲଜ କଥା ଠିକ୍ ସେମିତି । ଅନ୍ୟ କେହି ଗାଳିଦେଲେ ରାଗ ଲାଗେ, କିନ୍ତୁ ଶ୍ୱଶୁର ଘରେ ଶାଳୀ, ଶଳା କେହି ଗାଳିଦେଲେ ତାହା ଏକ ପ୍ରକାର ସରସତା ସୃଷ୍ଟି କରେ । ଖାଦ୍ୟ ପଦାର୍ଥକୁ ବାଢ଼ୁଣିଆ ଦେଲେ ତା'ର ସ୍ୱାଦ ଏକପ୍ରକାର, ନିଜର ପତ୍ନୀ ପରିବେଷଣ କଲେ ତାର ସ୍ୱାଦ ଅନ୍ୟ ପ୍ରକାର ହୁଏ ।

ପ୍ରଭୋ ! ଆପଣଙ୍କ ସରସ ଗୁଣାବଳୀ ମହାତ୍ମାଗଣମାନଙ୍କ ମୁଖାରବିନ୍ଦସ୍ଥିତ ହେଲେ ଅଧିକ ରସମୟ ହୋଇଉଠେ । ଆପଣଙ୍କ ଚରଣକମଳ ପାପତାପନାଶକ, ପତିତଜନ ଉଦ୍ଧାରକ, ଯୋଗଭ୍ରଷ୍ଟ ଯୋଗୀର ପଥପ୍ରଦର୍ଶକ, ପରମାର୍ଥସାଧକ, ସେହି ଚରଣକମଳର ଯଶୋଗାନ ଶ୍ରବଣ ବିନା ମୋର ଅନ୍ୟ କୌଣସି ବର ଆବଶ୍ୟକ ନାହିଁ । ସର୍ବଦା ଆପଣଙ୍କ କଥା ଶୁଣିବା ପାଇଁ ମୋତେ ଶକ୍ତି ଦିଅନ୍ତୁ । ଆପଣଙ୍କ ପ୍ରିୟତମା ପତ୍ନୀ ଲକ୍ଷ୍ମୀଦେବୀ ଧନର ଅଧିଷ୍ଠାତ୍ରୀ । ଯଦି ଧନରେ ସୁଖ ମିଳୁଥାନ୍ତା, ତେବେ ସେ ଆପଣଙ୍କ ଗୁଣ ଶୁଣିବା ପାଇଁ ସର୍ବଦା ଉତ୍ସୁକ ରହନ୍ତେ କାହିଁକି ? କାରଣ ଆପଣଙ୍କ କଥାରେ ଏପରି ରସ ଅଛି, ଯାହା ଥରେ ଶୁଣିଲେ କୌଣସି ସାଧୁ, ସହୃଦୟ, ଗୁଣଜ୍ଞ ରସିକ ପୁରୁଷ କେବେହେଲେ ଭୁଲନ୍ତି ନାହିଁ । ଭାଗବତ କଥା ଶୁଣିବା ପାଇଁ ସର୍ବଦା ସେମାନେ ତତ୍ପର ହୋଇଉଠନ୍ତି । କଥାର ମହତ୍ତ୍ୱ ମୋତେ ନ ପଚାରି ଆପଣ ମାତା ଲକ୍ଷ୍ମୀଦେବୀଙ୍କୁ ପଚାରି ବୁଝିବେ ।

ମୈତ୍ରେୟ ମୁନି କହିଲେ—ମହାରାଜ ପୃଥୁଙ୍କ କଥା ଶୁଣି ଭଗବାନ ଅତି ଆନନ୍ଦିତ ହେଲେ ଏବଂ ସେହି ପ୍ରସଙ୍ଗରେ ମହାରାଜଙ୍କ ସହିତ ଆଲୋଚନା କଲେ ।

## ଛପ୍ପୟ୍

"ସୁଯଶ ସୁଧା ମକରନ୍ଦ ଧରମ କମଳିନୀ ତେଁ ନିସୃତ ।
ସାଧୁ ସଙ୍ଗ କରି ପାନ ହୋଇ ସବରେ ଜଗ ବିସ୍ମୃତ ।।
କମଳା ଜାଙ୍କେ ପାନ ହେତୁ ପଗଲୀ ସୀ ଡୋଲେଁ ।
ସଜ୍ଜନ ପୀୱେଁ ସତତ ଦୁସରୀ ବାତ ନ ବୋଲେଁ ।।
ସାଶ୍ରୁ ନୟନ ଗଦ୍‌ଗଦ୍ ଗିରା, କହେଁ ପରସ୍ପର ସନ୍ତଜନ ।
ଇହ ବିଧି ହରିଗୁନ ଶ୍ରବନ କରି,ଅନତ ଜାଇ ନହିଁ ମୋର ମନ ।



# ମହାରାଜ ପୃଥୁଙ୍କ ହରିପାଦ ସେବା

"ଭଜନ୍ତ୍ୟଥ ତ୍ୱାମତ ଏବ ସାଧବୋ,
ବ୍ୟୁଦସ୍ତମାୟା ଗୁଣବିଭ୍ରମୋଦୟମ୍ ।
ଭବତ୍ପଦାନୁସ୍ମରଣାଦୃତେ ସତାଂ,
ନିମିତ୍ତମନ୍ୟଦ୍ ଭଗବନ୍ନବିଦ୍ମହେ ॥"
(ଭାଗବତ-୪ର୍ଥ ସ୍କନ୍ଧ-୨୦ ଅଧ୍ୟାୟ-ଶ୍ଳୋକ-୨୯)

## ଛପ୍ପୟ

"ପଦ୍ମା ପ୍ରଭୁକେ ପାଦପଦ୍ମ ପ୍ରତିପଲ୍ଲବ ପଲୋଟେଁ ।
ସନ୍ତ ପୁରୁଷ ଉ ସଦା ଧୂରି ପଗ କୀ ମହଁ ଲୋଟେଁ ॥
ଇଚ୍ଛା ମେରୀ ଜିହୀ ପଲୋଟୁଁ ଚରନ ପାଇନ କୂଁ ।
କରୁଣାସାଗର ! କୃଷ୍ଣ ! କୃତାରଥ କରୁଁ କରନ କୂଁ ॥
ଲକ୍ଷ୍ମୀ ମୋତେଁ ଲଡ଼ଁଗୀ, ପ୍ରଭୁ, ଚରନ କୂଁ ସମୁଝାଇଲେଁ ।
ଜଗ ମାତା କୂଁ ଘୁଡକ ଦେଁ, ସୁତକୁଁ ହୃଦୟ ଲଗାଇଲେଁ ॥"

ଶ୍ରବଣ, କୀର୍ତ୍ତନ, ସ୍ମରଣ, ପାଦସେବନ, ଅର୍ଚ୍ଚନ, ବନ୍ଦନ, ଦାସ୍ୟ, ସଖ୍ୟ ଓ ଆତ୍ମନିବେଦନ, ଏପରି ଭକ୍ତିର ଅଙ୍ଗ ନଅ ପ୍ରକାର । ଏଥିରୁ ଯେ କୌଣସି ଗୋଟିକୁ ନିଷ୍ଠାପୂର୍ବକ ପାଳନ କଲେ ପରମପଦ ଲାଭହୁଏ । କିନ୍ତୁ ଏଥିରେ ଶ୍ରବଣ-ଭକ୍ତିକୁ ପ୍ରାଧାନ୍ୟ ଦିଆଯାଇଛି । ଭଗବତ୍ କଥା ଶ୍ରବଣରେ ଅନୁରାଗ ଜାତ ନ ହେବା ପର୍ଯ୍ୟନ୍ତ ଭକ୍ତିଭାବର ଉଦ୍ରେକ ହୁଏନାହିଁ କି ଭକ୍ତିର ଉପଲବ୍ଧି ସହଜ, ସମ୍ଭବ ଓ ସାଧ୍ୟ ହୁଏ ନାହିଁ । ଭଗବତ୍ ଗୁଣାବଳୀ ଶ୍ରବଣ ମଧ୍ୟରେ କୀର୍ତ୍ତନ ଓ ସ୍ମରଣ ସ୍ୱତଃ ସମ୍ପାଦିତ ହୋଇଥାଏ । ସେହିପରି ପାଦସେବନ ଦ୍ୱାରା ଅର୍ଚ୍ଚନଠାରୁ

ଆତ୍ମସମର୍ପଣ ପର୍ଯ୍ୟନ୍ତ କାର୍ଯ୍ୟ ସମାହିତ ହୁଏ । ପାଦପଦ୍ମରେ ଅନୁରାଗ ନ ଆସିବା ଯାଏ ସେବନରେ ସୁଖ ମିଳିବ ନାହିଁ । ସଂସାରରେ ପ୍ରାପ୍ତ ସମସ୍ତଙ୍କର ପାଦ ଅଛି କିନ୍ତୁ ଯାହା ପ୍ରତି ହୃଦୟରେ ଆମର ଭକ୍ତି ଅଛି, ତାହାର ପାଦସେବା କଲେ ଏକପ୍ରକାର ଅପୂର୍ବ ସୁଖ ଅନୁଭୂତ ହୁଏ । ତେଣୁ ଭକ୍ତ ମୁଖ୍ୟତଃ ଗୁଣ ଶ୍ରବଣ ବା ପାଦସେବନ ମଧ୍ୟରୁ ଯେ କୌଣସି ମାର୍ଗ ଅନୁସରଣ କରିପାରିବେ । ଏହାଦ୍ୱାରା ସାଧିତତ୍ତ୍ୱର ଉପଲବ୍ଧି ଘଟେ ଓ ଭକ୍ତ କୃତାର୍ଥ ହୋଇଯାଏ ।

ମୈତ୍ରେୟ ମୁନି କହିଲେ – ହେ ବିଦୁର ! ଯେତେବେଳେ ମହାରାଜ ପୃଥୁ ଭଗବାନ ବାସୁଦେବଙ୍କ ତାଙ୍କ ଗୁଣ ଶ୍ରବଣ ପାଇଁ ଦଶ ହଜାର କର୍ଣ୍ଣରେ ଶ୍ରବଣ ଶକ୍ତି ପ୍ରାର୍ଥନା କଲେ, ସେତେବେଳେ ଭଗବାନ ପଚାରିଲେ—କେବଳ ଏତିକି ନା ଆଉ କିଛି ଇଚ୍ଛା କରୁଛ ?

ମହାରାଜ କହିଲେ—ହଁ ପ୍ରଭୁ ! ଏତିକି ଯଥେଷ୍ଟ, କିନ୍ତୁ ଆଉ ଏକ ଇଚ୍ଛା ଥିଲା; ମାତ୍ର ତାହା ଆପଣ ଦେବା ସମ୍ଭବ ନୁହେଁ ବୋଲି ଭାବୁଛି ।

ଭଗବାନ କହିଲେ—ନା, ନା, ମୋର କୌଣସି ଆପତ୍ତି ନାହିଁ । ତୁମେ ମାଗ, ତୁମକୁ ମୋର ଅଦେୟ ହୋଇ କିଛି ନାହିଁ । ତୁମେ ଯାହା ମାଗିବ ଦେବି ।

ଏହା ଶୁଣି ମହାରାଜ ପୃଥୁ କହିଲେ—ଭଗବନ୍ ! ମୁଁ ଦେଖୁଛି ମା' ଲକ୍ଷ୍ମୀ ନିଜ ଜଙ୍ଘ ଉପରେ ଆପଣଙ୍କ କୋମଳ ଚରଣଦ୍ୱୟ ରଖି ସର୍ବଦା ତାହା ମର୍ଦ୍ଦନ କରୁଛନ୍ତି । ଆପଣଙ୍କ ପାଦପଙ୍କଜରେ କଣ ଏପରି ମାଦକତା ଅଛି, ଯାହାପାଇଁ ମହାଲକ୍ଷ୍ମୀ ଅହରହ ଉତ୍ସୁକ ହୋଇ ରହୁଛନ୍ତି, ମୁଁ ସେହି କଥା ଭାବୁଛି । କ'ଣ ପାଇଁ ଜଗତର ସବୁଠାରୁ ଅଧିକ ଚଞ୍ଚଳା ଲକ୍ଷ୍ମୀ ଆପଣଙ୍କ ପାଦ ସମ୍ବାହନ କାର୍ଯ୍ୟରେ ଲାଗି ରହୁଛନ୍ତି ?

'ତୁମେ କ'ଣ ଲକ୍ଷ୍ମୀଙ୍କ ପରି ସର୍ବଦା ମୋର ପାଦ ମର୍ଦ୍ଦନ କରିବା ପାଇଁ ଇଚ୍ଛା କରୁଛ କି ?' ବୋଲି ଭଗବାନ ପଚାରିବାରୁ ମହାରାଜ ପୃଥୁ କହିଲେ—କେବଳ ଇଚ୍ଛା ନୁହେଁ, ମୋ ମନରେ ଉତ୍ସୁକତା ଅଛି । ପାଦସେବାଜନିତ ରସ ଆସ୍ୱାଦନ ପାଇଁ ମନ ମୋର ବ୍ୟାକୁଳ ହେଉଛି; କିନ୍ତୁ ମା' ଲକ୍ଷ୍ମୀଙ୍କୁ ମୋର ଭୟ ହେଉଛି । ଗୋଟିଏ ଜିନିଷ ପାଇଁ ଦୁଇଜଣ ପ୍ରାର୍ଥୀ ହେଲେ ବିବାଦ ଉପୁଜିବା ସୁନିଶ୍ଚିତ । କାଳେ ଆମ ଦୁଇଜଣଙ୍କ ମଧ୍ୟରେ କଳିଗୋଳ ହେବ, ସେଇଥିପାଇଁ ମୋର ସଙ୍କୋଚ ହେଉଛି, ମନରେ ଆଶଙ୍କା ଆସୁଛି ।

ଭଗବାନ କହିଲେ—ଠିକ୍ ଅଛି । ମୋର ଦୁଇଟି ପାଦକୁ ଦୁଇଜଣ ବାଣ୍ଟି ନେବ । ତେଣୁ ଆଉ କଳି ହେବାର ପ୍ରଶ୍ନ ଉଠିବ ନାହିଁ । ପରସ୍ପର ମଧ୍ୟରେ ରାଜିନାମା କରିନେବ ।

ମହାରାଜ ପୃଥୁ କହିଲେ –ପ୍ରଭୋ ! ତା' କେବେ ହେବ ନାହିଁ । ଆପଣ ମୋତେ ଡ଼ାହାଣ ପାଦଟି ଦେଲେ ଆଉ ମା' ଲକ୍ଷ୍ମୀ ବାମପାଦ ସେବା କଲେ । କିନ୍ତୁ ମୋର ଯେଉଁତେବେଳେ ଇଚ୍ଛା ହେବ ବାମପାଦ ସେବା କରିବା ପାଇଁ ସେତେବେଳେ ଲକ୍ଷ୍ମୀଦେବୀ ମାନିବେ ନାହିଁ । ସେଥିପାଇଁ ଆମର କଳି ଲାଗିଯିବ । ତେଣୁ ଝଗଡ଼ା ଲାଗିବା ସୁନିଶ୍ଚିତ । ତେବେ ଏ ବିଷୟରେ ମୁଁ ନିଶ୍ଚିନ୍ତ; କାରଣ ମୋର ବଳ ବେଶୀ ହେବ ।

'ତୁମର ବଳ ବେଶୀ ହେବ ବୋଲି କିମିତି ଭାବୁଛ ?' ଭଗବାନ୍ ପଚାରିବାରୁ ମହାରାଜ ପୃଥୁ କହିଲେ—ନ୍ୟାୟାଧୀଶ ମୋର ଅନୁକୂଳ ଅଛନ୍ତି । ତେଣୁ ମୋ ପକ୍ଷରେ ସେ ନ୍ୟାୟସିଦ୍ଧାନ୍ତ ଦେବେ । ସେ ମୋର ପକ୍ଷକୁ ସମର୍ଥନ କରିବେ । କାରଣ ଲକ୍ଷ୍ମୀଙ୍କ ସହିତ ମୋର ତୁଳନା ହୋଇ ପାରିବ ନାହିଁ । ସେ ଜଗତର ଜନନୀ, ଜଗଦୀଶ୍ୱରୀ । ତାଙ୍କପରି ଧନସମ୍ପଦ ଐଶ୍ୱର୍ଯ୍ୟ ଆଉ କାହାର ଅଛି ? ସେ ସବୁଠାରୁ ବଡ ଆଉ ମୁଁ ସବୁଠାରୁ ଶ୍ରେଷ୍ଠ । ସେ ତାଙ୍କ ବଡ଼ପଣିଆ ଦେଖାଇ ମୋତେ ଧମକ ଚମକ ଦେଲେ ମୁଁ ଆପଣଙ୍କ ଶରଣ ନେବି ।

ତୁମେ ତାହାହେଲେ ଭାବୁଛ ମୁଁ ମୋ ପତ୍ନୀଙ୍କୁ ଛାଡ଼ି ତୁମକୁ ସମର୍ଥନ କରିବି । ଏହା ତୁମେ ଜାଣିଲ କିପରି ? ଭଗବାନ ପ୍ରଶ୍ନ କଲେ । ମହାରାଜ ପୃଥୁ ଦୃଢ଼ ସ୍ୱରରେ କହିଲେ—ପ୍ରଭୋ ! ମୁଁ କେବଳ ନୁହେଁ ଏକଥା ସାରା ସଂସାରର ସମସ୍ତେ ଜାଣନ୍ତି । ଆପଣ ଅଭିମାନୀ ଧନୀ ଲୋକ ଅପେକ୍ଷା ନିର୍ଦ୍ଧନ ଦୁଃଖୀ ଦରିଦ୍ରଙ୍କୁ ଅଧିକ ସ୍ନେହ କରନ୍ତି । ସେଥିପାଇଁ ସମସ୍ତେ ଆପଣଙ୍କୁ ଦୀନନାଥ, ଅଶରଣଶରଣ, ଦୀନବନ୍ଧୁ ଆଦି ନାମରେ ପ୍ରାର୍ଥନା କରନ୍ତି । ଦରିଦ୍ର ଭକ୍ତ ଆଗରେ ଆପଣ ମାନିନୀ ଲକ୍ଷ୍ମୀଙ୍କୁ ଆଦର କରନ୍ତି ନାହିଁ । ତେଣୁ ମୋର ବିଶ୍ୱାସ ଆମ ଦୁହିଁଙ୍କ କଳିଗୋଳରେ ଆପଣ ମୋତେ ସମର୍ଥନ କରିବେ ଏବଂ ମୋତେ ଅବୋଧ ବାଳକ ମନେ କରି ଜିତେଇ ଦେବେ ।

ଭଗବାନ୍ ହସି ହସି ପଚାରିଲେ—ଆରେ, ତୁମେ ଏ କି ବର ମାଗୁଛ ? ତୁମେ ତ ଆମ ଘରେ କଳହ ଲଗାଇ ଦେବାକୁ ଯାଉଛ । ତୁମେ ଆଉ କିଛି ମାଗ । ପାଦସେବନ ତ ତୁମର ଜନ୍ମସିଦ୍ଧ ଅଧିକାର । ତାହା ଆଉ ମାଗିବ କାହିଁକି ? ନିଜର ଥିବା ଜିନିଷକୁ କିଏ କେଉଁଠି କେବେ ମାଗେ ?

ମହାରାଜ ପୃଥୁ କହିବାକୁ ଲାଗିଲେ—ପ୍ରଭୋ ! ଆଉ କଣ ମାଗିବା ପାଇଁ ରହିଲା ? ମୁଁ ଯେତେବେଳେ ପୁରାପୁରି ଆପଣଙ୍କର ଏବଂ ଆପଣ ଅଖିଳ

ଜଗତର ସ୍ୱାମୀ ସେତେବେଳେ ପିତାର ସମ୍ପତ୍ତି ପୁଅକୁ ମିଳବ ହିଁ ମିଳବ । ସଂସାରରେ ଏପରି କିଛି ନାହିଁ ଯାହାର ପ୍ରଭୁ ଆପଣ ନୁହନ୍ତି । ତେଣୁ ସେ ସବୁ ତ ମୋର । ଆପଣ ବାରମ୍ବାର "ବର ମାଗ, ବର ମାଗ" ବୋଲି କହୁଛନ୍ତି । ଆପଣଙ୍କ କଥା ମୁଁ ସ୍ୱୀକାର କରୁଛି । ସେହି ପ୍ରଲୋଭନରେ ପଡ଼ି ଜୀବ ନିଜକୁ ବେଦ ରୂପ ଦଉଡ଼ିରେ ବାନ୍ଧି ନାନାକର୍ମ କରି ଚାଲିଛି । ସେହି କର୍ମ ପାଇଁ ତାକୁ ବାରମ୍ବାର ଜନ୍ମ ମରଣ ଭୋଗ କରିବାକୁ ପଡୁଛି । ବାରମ୍ବାର ଜନ୍ମ ହେଉଛି ଆଉ ବାରମ୍ବାର ମୃତ୍ୟୁମୁଖରେ ପଡ଼ୁଛି । ଆପଣଙ୍କର ଅଦ୍ଭୁତ ମାୟାଜାଲରେ ପଡ଼ି ଜୀବ ଆତ୍ମସ୍ୱରୂପ ଆପଣଙ୍କୁ ଭୁଲିଯାଇ ଏ ମୋ' ଘର, ଏ ମୋ' ପରିବାର, ମୋ' ସ୍ତ୍ରୀ, ମୋ' ପିଲା, ସେ ତା'ର , ଏହା ତା' ଘର, ସେ ତା' ସ୍ତ୍ରୀ, ତା' ପରିବାର, ତା' ସହିତ ମୋର ସମ୍ବନ୍ଧ ନାହିଁ, ଏହିପରି ତା'ର, ମୋ'ର ହୋଇ ଏପାଖ ସେପାଖ ହେଉଛି । ତେଣୁ ମୁଁ ଆଉ କି ବର ମାଗିବି ? ଅବୋଧ ପୁତ୍ର ପିତାଙ୍କଠାରୁ କିଛି ଯଦି ନ ମାଗେ ତେବେ ପିତା କହନ୍ତି ଏହା ନେ, ତା' ନେ, ଏଟା ଦେ, ସେଟା ଦେ ଇତ୍ୟାଦି । ପିତା ସବୁବେଳେ ସେହି ଅବୋଧ ବାଳକର ଚିନ୍ତାରେ ବୁଡ଼ି ରହନ୍ତି । ସେଇଦୃଷ୍ଟିରୁ ଯାହାଦ୍ୱାରା ମୋର ମଙ୍ଗଳ ହେବ, ଯେଉଁ ବରଦ୍ୱାରା ମୋର ଭଲ ହେବ ସେକଥା ପିତାଭାବେ ଆପଣ ସ୍ଥିର କରନ୍ତୁ ।

ଏହା ଶୁଣି ଭଗବାନ୍ ବାସୁଦେବ ହସି ହସି କହିଲେ—ଆରେ, ମୁଁ ଜାଣିଥିଲି ଭକ୍ତମାନେ ଗାଲୁଆ । କିନ୍ତୁ ତୁମେ ତ ମାଗିବାକୁ ଯାଇ ସବୁକିଛି ମାଗିନେଲ । ହଉ, ତୁମ ଇଚ୍ଛା ଅନୁସାରେ ମୋ'ଠାରେ ତୁମର ଅନପାୟିନୀ, ଅବ୍ୟଭିଚାରିଣୀ ଭକ୍ତି ରହିବ । କିଛି ପ୍ରାର୍ଥନା କରୁ ନ ଥିବା ଭକ୍ତ ବିରଳ । ସେହି ଭକ୍ତ ବ୍ରହ୍ମାଦି ଦେବଗଣଙ୍କ ଦ୍ୱାରା ଦୁଃସାଧ୍ୟ ଦୁରଧିଗମ୍ୟ ବିଷ୍ଣୁମାୟାକୁ ଅତିକ୍ରମ କରିପାରନ୍ତି । ତୁମେ କଥା କଥାରେ ସେହି ମାୟାସାଗରକୁ ପାର ହୋଇଗଲ । ତୁମେ ମୋ'ରି ସେବା ମନେ କରି ନିଷ୍କାମ ଭାବରେ ପ୍ରଜାପାଳନ ରୂପକ ସ୍ୱଧର୍ମ ପାଳନ କର । ତୁମର କଲ୍ୟାଣ ହେଉ । ତୁମେ ସୁଖୀ ହୁଅ । ମୋ' ଆଦେଶ ପାଳନ କରୁଥିବା ବ୍ୟକ୍ତି ସର୍ବସିଦ୍ଧିର ଅଧିକାରୀ ହୁଏ ଏବଂ ସହଜରେ ପରମ ପଦ ଲାଭ କରେ ।

ମୈତ୍ରେୟ ମୁନି କହିଲେ—ମହାରାଜ ପୃଥୁ ଅନେଶତ ଯଜ୍ଞ ପରେ ଅବଭୃଥ ସ୍ନାନ କଲେ । ଯଜ୍ଞକୁ ଆସିଥିବା ଦେବତା, ଋଷି, ମୁନି, ପିତୃଗଣ, ଗନ୍ଧର୍ବ, ସିଦ୍ଧ, ଚାରଣ, ନାଗ, କିନ୍ନର, ଅପ୍ସରା, ମନୁଷ୍ୟ, ପଶୁ, ପକ୍ଷୀ ଯଥୋଚିତ, ଯଥାଯୋଗ୍ୟ ଆତିଥ୍ୟ ଓ ସତ୍କାର ଲାଭ କରି ସ୍ୱ ସ୍ୱ ଧାମକୁ ଫେରିଗଲେ । ଭଗବାନ୍

ମହାରାଜ ପୃଥୁଙ୍କୁ ଉପଦେଶ ଦେଇ ଅନ୍ତର୍ଦ୍ଧାନ ହୋଇଗଲେ । ଯଜ୍ଞର ଋତ୍ୱିକ ମାନଙ୍କ ସହିତ ମହାରାଜ ପୃଥୁ ସ୍ୱପ୍ନୋତ୍ଥିତ ହେଲାପରି ଆଶ୍ଚର୍ଯ୍ୟାନ୍ୱିତ ହୋଇ ଭଗବାନଙ୍କ ପ୍ରତ୍ୟାବର୍ତ୍ତନ ପଥକୁ ଚାହିଁ ରହିଲେ । ପରିଶେଷରେ ଯଜ୍ଞକାର୍ଯ୍ୟରୁ ନିବୃତ୍ତ ହୋଇ ମହାରାଜ ରାଜନଗରକୁ ପ୍ରସ୍ଥାନ କଲେ ।

## ଛପ୍ପୟ

"ନିଜ ବିଷୟୀନ କୁଁ ଛୋଡ଼ି ଭୂମିପତି ବନ କୁଁ ଜାଗେ ।
ତିନକୁଁ ତୁମରେ ଦାସ ଭଲା କ୍ୟୋଁ ତୁମତେ ମାଁଗେ ।।
ଜଗଦୀଶ୍ୱର ତୁମ ଜନକ ତନୟ ହମ ନାଥ ତିହାରେ ।
ତୋ ଫିର ଜଗ କେ ଭୋଗ ଆପୁଇ ଭୟେ ହମାରେ ।।
ହୌଁ ବର ମାଗୁଁ ଜହାଁ ପ୍ରଭୁ ! ତବ ପଦ ପଦ୍ମ ପ୍ରୀତି ହୋ ।
ସତ୍ସଙ୍ଗତି ହରିକଥା ରୁଚି, ଜଗ ଭୋଗନ ତେଁ ଭୀତିହୋ ।।"



# ମହାରାଜ ପୃଥୁଙ୍କ ପୁର ପ୍ରବେଶ

"ଶଙ୍ଖ ଦୁନ୍ଦୁଭି ଘୋଷେଣ ବ୍ରହ୍ମଘୋଷେଣ ଚର୍ତ୍ତ୍ୱିଜାମ୍ ।
ବିବେଶ ଭବନଂ ବୀରଃ ସ୍ତୂୟମାନୋ ଗତସ୍ମୟଃ ॥
ପୂଜିତଃ ପୂଜୟାମାସ ତତ୍ର ତତ୍ର ମହାଯଶାଃ ।
ପୌରଜ୍ଜାନପଦାଂସ୍ତାଂ ସ୍ତାନ୍ ପ୍ରୀତଃ ପ୍ରିୟବର ପ୍ରଦଃ ॥"

(ଭାଗବତ-୪ର୍ଥ ସ୍କନ୍ଧ-୨୧ ଅଧ୍ୟାୟ-୬, ୭-ଶ୍ଳୋକ )

## ଛପ୍ପୟ

"ପୃଥୁଙ୍କୁ ସବ ବର ଦୟେ ଭୟେ ଅନ୍ତର୍ହିତ ଶ୍ରୀପତ ।
କର ସବକୋ ସମ୍ମାନ ଚଲେ ପୁରକୁଁ ପୃଥିବୀ ପତ ॥
ସୁନତ ଆଗମନ ପ୍ରଜା ଗଈ ଲବେକୁଁ ଆଗେ ।
ବୀଣା ବେଣୁ ମୃଦଙ୍ଗ ବାଦ୍ୟ ବହୁ ବାଜନ ଲଗେ ॥
ଧ୍ୱଜା ପତାକା ତେଁ ସଜେ, ନଗର ମାହିଁ ଅୟେ ନୃପତ ।
ନିଜ ପତ ଲଖି ଚିରକାଲ ମହଁ, ଭୟେ ମୁଦିତ ନରନାରୀ ଅତ ॥"

ଜୀବନରେ ବିୟୋଗ ଏକ ନୂତନ ଅନୁଭୂତି ଆଣିଦିଏ । ନିତ୍ୟ ମିଳନରେ ସ୍ନେହ ବାଣ୍ଟିହୋଇ ଯିବାବେଳେ ବିୟୋଗ ଅବସ୍ଥାରେ ତାହା ଜମା ହୋଇ ରହେ । ସଂଯୋଗର ସମ୍ଭାବନା ଦେଖିଲେ ତାହା ଅଜାଡ଼ି ହୋଇପଡ଼େ । ତେଣୁ ଯାହାକୁ ଯେତିକ ଉତ୍କଣ୍ଠାର ସହିତ ପ୍ରତୀକ୍ଷା କରାଯାଏ ତା' ସହିତ ମିଳନ ହେଲେ ସେତିକ ଅଧିକ ଆନନ୍ଦ ମିଳେ । ହୃଦୟ ଆମର ଅଧୀର ହୋଇ ଉଠେ ସଞ୍ଚିତ ସ୍ନେହ ଆଉ ପ୍ରେମକୁ ବ୍ୟକ୍ତ କରିବା ପାଇଁ ଏବଂ ସେଇଥିପାଇଁ ମନ, ବଚନ, କର୍ମରେ ଆମେ ପ୍ରିୟଜନର ସ୍ୱାଗତ ସତ୍କାର କରୁଁ ।

ମୈତ୍ରେୟ ମୁନି କହିଲେ—ହେ ବିଦୁର ! ମହାରାଜ ପୃଥୁ ଯଜ୍ଞର ସମସ୍ତ କାର୍ଯ୍ୟ ଶେଷ କରିବା ପରେ ନିଜ ନଗରକୁ ଫେରିଯିବା ପାଇଁ ପ୍ରସ୍ତୁତ ହେଲେ । ଗୋଟିଏ ସ୍ଥାନରେ ରହି ଗୋଟିଏ ପରେ ଗୋଟିଏ କରି ଅନେକଶତ ଅଶ୍ୱମେଧ ଯଜ୍ଞ ପୂର୍ଣ୍ଣ କଲେ । ଯଜ୍ଞ ଦୀକ୍ଷା ନେଇଥିବାରୁ ସେ ଯଜ୍ଞଭୂମି ଛାଡ଼ି ଅନ୍ୟ ସ୍ଥାନକୁ ଯିବାର ନିୟମ ନ ଥିଲା । ତେଣୁ ରାଜନଗରରୁ ଆସିବାଠାରୁ ଦିନକ ପାଇଁ ମଧ୍ୟ ସେ ରାଜଧାନୀକୁ ଯାଇ ନ ଥିଲେ । ବର୍ତ୍ତମାନ ସେହି ଅବସର ପହଞ୍ଚିଛି । ଏହି ସମ୍ବାଦ ପ୍ରଚାରିତ ହେବାମାତ୍ରେ ଦେଶବାସୀ ଓ ନଗରବାସୀ ନରନାରୀଙ୍କ ମନରେ ଆନନ୍ଦର ଢେଉ ଖେଳିଗଲା । ମହାରାଜ ପୃଥୁ ଯେଉଁ ଯେଉଁ ପଥ ଦେଇ ବିଜୟ କରିବେ ସେ ସବୁ ମାର୍ଗରେ ରାଜାଙ୍କ ସ୍ୱାଗତ ପାଇଁ ପ୍ରସ୍ତୁତ ଚାଲିଲା । ଆଖ ପାଖର ପ୍ରଜାବର୍ଗ ରାଜମାର୍ଗର ଦୁଇ ପାର୍ଶ୍ୱରେ ଠିଆହୋଇଗଲେ । ମାର୍ଗ ପରିଷ୍କାର କରାଗଲା । ସୁଗନ୍ଧିତ ଜଳ ଛିଞ୍ଚାଗଲା । ସ୍ଥାନେ ସ୍ଥାନେ ତୋରଣମାନ ନିର୍ମିତ ହେଲା । ତୋରଣମାନଙ୍କରେ ଭଗବାନ୍ ବାସୁଦେବଙ୍କ ପ୍ରଶସ୍ତି ଓ ମହାରାଜ ପୃଥୁଙ୍କ ଜୟ ଓ ଆଶୀର୍ବାଦ ସୂଚକ ବାକ୍ୟାବଳୀ ଲେଖାଗଲା । ସେହି ସୁସଜ୍ଜିତ ମାର୍ଗରେ ମହାରାଜ ନଗର ଅଭିମୁଖେ ଯାତ୍ରା କଲେ ।

ରାଜମାର୍ଗରେ ଠିଆ ହୋଇଥିବା ନରନାରୀ ଶ୍ରଦ୍ଧାର ସହିତ ମହାରାଜ ପୃଥୁଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଲେ । ସେମାନେ ଦେଉଥିବା ନାନାବିଧ ଉପହାର ମହାରାଜ ଗ୍ରହଣ କରୁଥିଲେ । ସମସ୍ତଙ୍କୁ ଯଥୋଚିତ ସମ୍ମାନ, ଅଭିବାଦନ ଜଣାଇ ସେମାନଙ୍କର ଭଲମନ୍ଦ ପଚାରି ବୁଝୁଥିଲେ । ଏହିଭଳିବରେ ଦୀର୍ଘପଥ ଅତିକ୍ରମ କରି ମହାରାଜ ପୃଥୁ ରାଜଧାନୀରେ ପହଞ୍ଚିଲେ । ରାଜାଙ୍କ ସ୍ୱାଗତ ପାଇଁ ରାଜଧାନୀର ରାଜମାର୍ଗ ନାନା ପ୍ରକାର ଫୁଲ ଓ ନାନାରଙ୍ଗର ବସ୍ତ୍ରରେ ସଜା ହୋଇଥିଲା । ତଦ୍‌ବ୍ୟତୀତ ସାଧାରଣ ପଥ, ବୀଥୀ, ଓ ଶ୍ରେଷ୍ଠ ଶ୍ରେଷ୍ଠ ମାର୍ଗରେ ସୁଗନ୍ଧିତ ଜଳ ସେଚନ କରାଯାଇଥିଲା । ସ୍ଥାନେ ସ୍ଥାନେ ମଙ୍ଗଳ ସୂଚକ ଜଳପୂର୍ଣ୍ଣ କଳସ, ପୁଷ୍ପ, ଅକ୍ଷତ, ଫଳ, ଜବାଙ୍କୁର, ଦୀପ ଆଦି ସଜ୍ଜିତ ହୋଇ ରହିଥିଲା । କଦଳୀତରୁ, ଆମ୍ରପଲ୍ଲବ ଓ ଫଳଯୁକ୍ତ ଅନ୍ୟାନ୍ୟ ବୃକ୍ଷ ବିଭିନ୍ନ ସ୍ଥାନରେ ରୋପଣ କରାଯାଇଥିଲା । ସୁସଜ୍ଜିତା ସୁନ୍ଦରୀ କନ୍ୟାମାନେ, ଚନ୍ଦନ, ପୁଷ୍ପ, ଦୁବ, ଅକ୍ଷତ ଆଦି ମଙ୍ଗଳ ଦ୍ରବ୍ୟ-ମାନ ଧରି ଠିଆ ହୋଇଥିଲେ । ବିବିଧ ବୀଣା, ବେଣୁ ବାଦ୍ୟ ବାଜୁଥିଲା । ବନ୍ଦୀଜନ-ମାନେ ବିରୁଦାବଳୀ ଗାନ କରୁଥିଲେ । ଏହିପରି ଆଡ଼ମ୍ବର ପୂର୍ଣ୍ଣ ସ୍ୱାଗତ ସମ୍ବର୍ଦ୍ଧନାକୁ ସ୍ୱୀକାର କରି ମହାରାଜ ପୃଥୁ ରାଜପୁରରେ ପ୍ରବେଶ କଲେ ।

ରାଜା ରାଜଭବନରେ ପ୍ରବେଶ କରିବା ମାତ୍ରେ ସମସ୍ତ ରାଜପ୍ରସାଦ, ଭବନ, ଗୃହ, ଅଳିନ୍ଦ ଦୀପାଲୋକର ଉଦ୍‌ଭାସିତ ହୋଇ ଉଠିଲା । ଚାରିଆଡ଼େ ଏକ ଅପୂର୍ବ

ଆଭା ଓ ବିଚିତ୍ର କାନ୍ତି ଖେଳିଗଲା । ଅନ୍ତଃପୁରର ମହାରାଣୀ ଓ ଦାସଦାସୀଗଣ ମହାରାଜ ପୃଥୁଙ୍କୁ ଆଦର ତଥା ସଂଭ୍ରମର ସହିତ ସ୍ୱାଗତ କଲେ । ତାଙ୍କ ଚରଣ ତଳେ ସମସ୍ତେ ବିନୀତଭାବେ ଶ୍ରଦ୍ଧାଞ୍ଜଳି ଅର୍ପଣ କଲେ । ଇନ୍ଦ୍ର ଯେପରି ଦେବଗଣ, ମୁନି, ଋଷିଙ୍କ ଗହଣରେ ଅମରାବତୀରେ ରହନ୍ତି ସେହିପରି ମହାରାଜ ପୃଥୁ ମନ୍ତ୍ରୀ, ଅମାତ୍ୟ, ବେଦଜ୍ଞ ବ୍ରାହ୍ମଣ ଓ ପୁରୋହିତଙ୍କ ଗହଣରେ ରାଜକୀୟ ଆଡ଼ମ୍ବର ସହିତ ରାଜଧାନୀରେ ରହି ଆନନ୍ଦ ବିହାର କରିବାକୁ ଲାଗିଲେ ।

ମହାମୁନି ମୈତ୍ରେୟଙ୍କଠାରୁ ଏସବୁ ଶୁଣି ପରମ ଭକ୍ତ ବିଦୁର ଆନନ୍ଦିତ ହୋଇ କହିଲେ — ଭଗବାନ୍ ! ଆପଣ ଆଦି ରାଜା ମହାରାଜା ପୃଥୁଙ୍କ ଚରିତ ଅତି ମନୋରମ ଶୈଳୀରେ ବର୍ଣ୍ଣନା କଲେ । ତାଙ୍କର ପରାକ୍ରମ ବିଷୟରେ କିଛି ଆଲୋଚନା କରିବାର ଅର୍ଥ ସୂର୍ଯ୍ୟଙ୍କୁ ଦୀପ ଦେଖାଇବା ନ୍ୟାୟପରି ହେବ । ବାହୁବଳରେ ଯେ ମେଦିନୀକୁ ପୃଥିବୀର ରୂପ ଦେଇଥିଲେ ଏବଂ ପୃଥିବୀ ଦୋହନ କରି ଜୀବଜଗତକୁ ଅନ୍ନ ଯୋଗାଇଥିଲେ, ଭବିଷ୍ୟତରେ ରାଜାମାନଙ୍କ ନିମିତ୍ତ ଶାସନ ପଥ ନିର୍ମାଣ କରିଥିଲେ ଏବଂ ରାଜକାର୍ଯ୍ୟରେ ଏକ ଆଦର୍ଶ ସ୍ଥାନୀୟ ରାଜକୀୟ ମର୍ଯ୍ୟାଦା ପ୍ରତିଷ୍ଠା କରିଥିଲେ । ତାଙ୍କ ବିଷୟରେ ଆଉ କିଛି ଶୁଣିବା ନିମିତ୍ତ ମନ ବ୍ୟାକୁଳ ହେଉଛି । ଆପଣ ଉଚିତ ମନେକଲେ ମହାରାଜ ପୃଥୁଙ୍କ ଗୁଣାବଳୀ ବିଷୟରେ ଆଉ କିଛି କହନ୍ତୁ । ପବିତ୍ରଯଶା ମହାରାଜ ପୃଥୁଙ୍କ ଚରିତ ଶୁଣିବାରେ ମୋର ତୃପ୍ତି ଆସୁନାହିଁ ।

ବିଦୁରଙ୍କ ଆଗ୍ରହ ଦେଖି ମୈତ୍ରେୟ ମୁନି କହିଲେ—ହେ ବିଦୁର ! ତୁମ ପରି ସଜ୍ଜନଠାରୁ ତାହା ହିଁ ଆଶା କରାଯାଏ । ପିଲାଟିଏ ମିଠା ଆମ୍ବକୁ ଯେପରି ଚୂପି ଚୂପି ଖାଏ, ସେହିପରି ସାଧୁଲୋକ ଭାଗବତ କଥା ଶୁଣି ରସ ଆସ୍ୱାଦନ କରେ । ମହାରାଜ ପୃଥୁଙ୍କ ଚରିତ ଅନନ୍ତ ଓ ଅସୀମ । ସେ ନିଜେ ଅନନ୍ତାବତାର, ତାଙ୍କ ଚରିତ ବର୍ଣ୍ଣନା କିଏ ଶେଷ କରିପାରିବ ?

ଗଙ୍ଗା ଯମୁନାର ମଧ୍ୟବର୍ତ୍ତୀ ଦେଶ ବ୍ରହ୍ମର୍ଷିଗଣ ସେବିତ ବ୍ରହ୍ମାବର୍ତ୍ତରେ ମହାରାଜ ପୃଥୁଙ୍କ ରାଜଧାନୀ ଅବସ୍ଥିତ । ମହାରାଜ ପୃଥୁ ଥିଲେ ସପ୍ତଦ୍ୱୀପା ପୃଥିବୀର ଏକଚ୍ଛତ୍ର ଶାସକ । ଅଚ୍ୟୁତ ଗୋଷ୍ଠୀୟ ବୈଷ୍ଣବ ଓ ବ୍ରାହ୍ମଣମାନଙ୍କୁ ଛାଡ଼ି ଅନ୍ୟମାନେ ତାଙ୍କ ରାଜଶାସନରେ ପରିଚାଳିତ ହେଉଥିଲେ । ସେ ଥିଲେ ସୁଦର୍ଶନ । ଆଜାନୁଲମ୍ବିତ ବାହୁ, ବିଶାଳ ବିକଶିତ ନେତ୍ର, ଶୁକନାସ, ସିଂହାସ୍କନ୍ଧତୁଲ୍ୟ ସ୍କନ୍ଧ, କନ୍ଦର୍ପ ତୁଲ୍ୟ ସୁସ୍ପଷ୍ଟ ସୁନ୍ଦର କଳେବର, ସୁଶୋଭିତ ମୁଖାରବିନ୍ଦ, ଡାଳିମ୍ବ ବୀଜାକାର କୁନ୍ଦସୁନ୍ଦର ଦନ୍ତ, ଶଙ୍ଖଗ୍ରୀବ, ଘନକୃଷ୍ଣକୁଞ୍ଚିତ କୋମଳ କେଶରାଶି, ବିଶାଳ ବକ୍ଷ,

ଗମ୍ଭୀର ନାଭି, ସ୍ଥୂଳକଟି, ଉଜ୍ଜ୍ୱଳ ନଖପଂକ୍ତି ଶୋଭିତ ଉନ୍ନତ ପଦ, ସଦ୍‌ଗୁଣ, ଧର୍ମକର୍ମରେ ଅଦ୍ୱିତୀୟ ମହାରାଜ ପୃଥୁଙ୍କୁ ପାଇ ପ୍ରଜାବର୍ଗ ନିଜକୁ ଭାଗ୍ୟବାନ୍ ମନେ କରୁଥିଲେ ।

ମହାରାଜ ବେନଙ୍କ ରାଜତ୍ୱ କାଳରେ ନାସ୍ତିକମାନଙ୍କର ଆଧିପତ୍ୟ ବିସ୍ତାର-ଲାଭ କରିଥିଲା । ସେମାନେ ଯୁକ୍ତିତର୍କଦ୍ୱାରା ନାସ୍ତିକତାର ପ୍ରଚାର କରୁଥିଲେ । ଲୋକେ ସେହି ନାସ୍ତିକମାନଙ୍କୁ ପଣ୍ଡିତ ବୋଲି ସ୍ୱୀକାର କରୁଥିଲେ । ଅକ୍ଷରଜ୍ଞାନ ଭିତ୍ତାଗ୍ରହୀ କେତେକ ବାକ୍‌ପଟୁ ପଣ୍ଡିତ ସେ ଅଞ୍ଚଳରେ ଥିଲେ, ଯେଉଁମାନଙ୍କର ଧର୍ମ, କର୍ମ ବିଷୟରେ କୌଣସି ନିଶ୍ଚିତ ସିଦ୍ଧାନ୍ତ ନ ଥିଲା । ଗଙ୍ଗା ଗଲେ ଗଙ୍ଗା ଦାସ, ଯମୁନା ଗଲେ ଯମୁନା ଦାସ ନାମ ଗ୍ରହଣ କରୁଥିଲେ । ଯେନକେନ ପ୍ରକାରେଣ ନିଜର ସ୍ୱାର୍ଥସିଦ୍ଧି କରିବା ସେମାନଙ୍କର ଲକ୍ଷ୍ୟ ଥିଲା । ସେମାନେ ଯୁଆଡ଼େ ପବନ ସେ ଆଡ଼କୁ ଛତା ଦେଖାଉଥିଲେ । ଯାହାର ପକ୍ଷ ସବଳ ହେଉଥିଲା, ତାହାର ଗୁଣଗାନ କରୁଥିଲେ । ସେପରି ନାସ୍ତିକମାନଙ୍କର ମୂଳୋତ୍ପାଟନ ହୋଇପାରି ନ ଥିଲା । ପ୍ରଜାମାନଙ୍କର କିଛି କିଛି ନାସ୍ତିକଭାବ ଥିଲା । ତେଣୁ ମହାରାଜ ପୃଥୁ ରାଜଧାନୀରେ ଏକ ବଡ଼ଧରଣର ଯଜ୍ଞର ଆୟୋଜନ କଲେ । ସେଥିରେ ଯାଗ ଯଜ୍ଞ କଥାର କୀର୍ତ୍ତନ ପାଇଁ ଦେଶ ବିଦେଶରୁ ସବୁ ବର୍ଣ୍ଣର ଲୋକଙ୍କୁ ନିମନ୍ତ୍ରଣ କରାଗଲା । ମୁନି ଋଷିଗଣ ନିମନ୍ତ୍ରିତ ହେଲେ । ଏକ ମହାସଭାର ବ୍ୟବସ୍ଥା କରାଗଲା । ମହାରାଜ ସେହି ମହାଯଜ୍ଞରେ ଦୀକ୍ଷା ନେଲେ । ଯଜ୍ଞ ପୂର୍ଣ୍ଣ ହେଲା । ବ୍ରାହ୍ମଣମାନେ ପ୍ରବଚନ ଦେଲେ । ଧର୍ମ ସମ୍ବନ୍ଧରେ ଆଲୋଚନା ହେଲା ।

ଯଜ୍ଞ ଶେଷରେ ମହାରାଜ ପୃଥୁ ଠିଆ ହୋଇ ଏକ ମର୍ମସ୍ପର୍ଶୀ ଭାଷଣ ଦେଲେ । ଭାଷଣ ଦେବା ପାଇଁ ଠିଆ ହେବା ପରେ ମହାରାଜ ପୃଥୁଙ୍କ ଶୋଭା ଦର୍ଶନୀୟ ହୋଇ ଉଠିଥିଲା । ସେ ସିଧା ଠିଆ ହୋଇଥିଲେ । ମୁହଁରେ ଈଷତ୍ ହସ ଖେଳିଯାଉଥିଲା । ନେତ୍ରଦ୍ୱୟ ପ୍ରଶାନ୍ତ, ଗମ୍ଭୀର ଓ ଉଜ୍ଜ୍ୱଳ ଦେଖାଯାଉଥିଲା । ସମସ୍ତଙ୍କ ଆଡ଼କୁ ସେ ସ୍ନେହପୂର୍ଣ୍ଣ ଦୃଷ୍ଟିରେ ଚାହୁଁଥିଲେ । ଯଜ୍ଞ ଦୀକ୍ଷା ନେଇଥିବାରୁ ହଳଦିଆ ଲୁଗା ଖଣ୍ଡିଏ ପିନ୍ଧିଥିଲେ ଓ ଆଉ ଖଣ୍ଡିଏ ଉପରେ ପକାଇ ଥିଲେ । ଖଣ୍ଡିଏ କୃଷ୍ଣମୃଗ ଚର୍ମ ଘୋଡ଼ି ହୋଇଥିଲେ । ହାତରେ କୁଶମୁଠା ଧରିଥିଲେ । ତାଙ୍କ ଦେହରୁ କ୍ଷାତ୍ର ଓ ବ୍ରାହ୍ମ ତେଜର ଆଭା ବିଚ୍ଛୁରିତ ହେଉଥିଲା । ଭାଷଣ ଦେବା-ପାଇଁ ଠିଆହେବା ପରେ ଚାରିଆଡ଼ୁ ତାଙ୍କ ଉପରେ ପୁଷ୍ପ ବୃଷ୍ଟି ହେବାକୁ ଲାଗିଲା । ଉପସ୍ଥିତ ଜନତା ଶାନ୍ତ ହୋଇଗଲେ । ଚାରିଆଡ଼େ ନୀରବତା ଖେଳିଗଲା । ତା' ପରେ ମହାରାଜ ପୃଥୁ ତାଙ୍କର ସ୍ୱାଭାବିକ ଧୀର, ଗମ୍ଭୀର, ମଧୁର ସ୍ୱରରେ ଭାଷଣ ଦେବାକୁ ଆରମ୍ଭ କଲେ ।

ମହର୍ଷି ଶୌନକ ପଗ୍ଭରଲେ—ଭଗବାନ୍ ! ଆପଣ ଯେଉଁ କଥା ବର୍ଣ୍ଣନା କରୁଛନ୍ତି, ତାହା ଏପରି ଭାବରେ କହୁଛନ୍ତି ଯେ ଆମର ଉତ୍ସୁକତା ଅତ୍ୟଧିକ ବଢ଼ି-ଯାଇଛି । ମହାରାଜ ପୃଥୁଙ୍କ ଭାଷଣ ବିଷୟରେ ବହୁ ପ୍ରଶଂସା କଲେ ମଧ୍ୟ ତାଙ୍କ ଭାଷଣରୁ ପଦଟିଏ ବି କହିଲେ ନାହିଁ । ସେ କଣ ଭାଷଣ ଦେଲେ, କି ବିଷୟ ଆଲୋଚନା କଲେ ସେ କଥା ଦୟାକରି କହିବା ପାଇଁ ଅନୁରୋଧ ।

'ତାଙ୍କ ଭାଷଣ ଖୁବ୍ ବଡ଼ । ଯଦି ଭାଷଣ ବିଷୟ କହିବ ତେବେ କଥା ପ୍ରସଙ୍ଗର ଧାରା ପ୍ରତିହତ ହେବ' ବୋଲି ମହର୍ଷି ସୂତ କହିବାରୁ ଶୌନକ କହିଲେ —ମହାଭାଗ ! ଆପଣ ପ୍ରସଙ୍ଗ ଆସିଲେ ଏପରି କହୁଛନ୍ତି । କଥା ପ୍ରସଙ୍ଗ ବନ୍ଦ ନକରି ସଂକ୍ଷେପରେ ମହାରାଜ ପୃଥୁଙ୍କ ଭାଷଣ କୁହନ୍ତୁ ।

## ଛପ୍ପୟ

"ପ୍ରବିଶେ ପୁର ପୃଥୁ କରେ, ପ୍ରଜା ସବକୋ ଯ୍ୟୌଁ ପାଲନ
କେୟାଁ ମାତା ପିତୁ କରେଁ, ନେହ ତେଁ ସୁତ କୋ ଲାଲନ ॥
ମହାସତ୍ର ଇକ ରଚ୍ୟୋ ଧର୍ମ କୀ ବୃଦ୍ଧି କରନ କୂଁ ।
ଫୈଲେ ନାସ୍ତିକଭାବ ଧରାତେ ତିହ୍ନେ ହରନ କୂଁ ॥
ଦେଶ ଦେଶ ତେଁ ସଭ୍ୟଗନ, ଆୟେ କୁର୍‌ୟୋ ସମାଜ ବର ।
ତିନକେ ସମ୍ମୁଖ କହନ କଛୁ, ଉଠେ ଭୂପ କେୟାଁ ଦିବାକର ॥' ୨



# ମହାରାଜ ପୃଥୁଙ୍କ ଅଭିଭାଷଣ

"ସଭ୍ୟାଃ ଶୃଣୁତ ଭଦ୍ରଂ ବଃ ସାଧବୋ ଯ ଇହାଗତାଃ ।
ସତ୍ସୁ ଜିଜ୍ଞାସୁଭିର୍ଧର୍ମମାବେଦ୍ୟଂ ସ୍ୱମନୀଷିତମ୍ ।।"

(ଭାଗବତ-୪ର୍ଥ ସ୍କନ୍ଦ-୨୧ ଅଧ୍ୟାୟ-୨୧ ଶ୍ଳୋକ)

## ଛପ୍ପୟ

"ଅତି ସୁନ୍ଦର ଅତି ମଧୁର ଭ୍ରାନ୍ତି ତେଁ ରହିତ ବଚନ ବର ।
ବୋଲେ ସବହିଁ ସୁନାଇ ଧର୍ମ ସମ୍ମତ ଅତି ହିତକର ।।
ସୁନୋ ଶାସ୍ତ୍ରକୋ ସାର ସନ୍ତମୁଖ ସୂନ ସୁନାଊଁ ।
ସେବା ସୌଁପୀ ସବନ ପରୁଷ କର୍ତ୍ତବ୍ୟ ବତାଊଁ ।।
ବେଦ ବିହିତ ସବ ଯଜ୍ଞ, ତପ, ଦାନ, ଧର୍ମ ମିଲ କରହୁ ଅବ ।
ପିତର ଅତିଥି ଗୁରୁଦେବ ଦ୍ୱିଜ, ପୂଜା ସବକୀ କରହୁ ସବ ।।"

କଥାରେ କହନ୍ତି ଗାଇବା, କାନ୍ଦିବା ସମସ୍ତଙ୍କୁ ଜଣା । ସମସ୍ତେ ଗୁଣୁଗୁଣୁ ହୋଇ କିଛି ନା କିଛି ଗାଆନ୍ତି । ଦରକାର ପଡ଼ିଲେ ସମସ୍ତେ ଆଖିରୁ ଲୁହ ଗଡ଼ାଇ କାନ୍ଦନ୍ତି । କିନ୍ତୁ ଏହି ଉଭୟ ପ୍ରକ୍ରିୟାକୁ କଳାପୂର୍ଣ୍ଣ କରି ପ୍ରକାଶ କରିବା ଲୋକ ଖୁବ୍ କମ୍ । ସେହିପରି ସମସ୍ତେ ସଙ୍କେତ ମାଧ୍ୟମରେ ବା ମୁହଁ ଖୋଲି, କଥାରେ କହି ନିଜ ହୃଦୟର ଭାବ ଅନ୍ୟ ପାଖରେ ବ୍ୟକ୍ତ କରନ୍ତି । କିନ୍ତୁ ସଭାରେ ଭାଷଣ ଦେବା, ବହୁଲୋକଙ୍କୁ ନିଜର ମନୋଭାବ ବୁଝାଇ କହିବା, ଭାଷଣ ଦ୍ୱାରା ସମସ୍ତଙ୍କୁ ପ୍ରଭାବିତ କରିବା ସହଜ କାର୍ଯ୍ୟ ନୁହେଁ । ବକ୍ତୃତା ଦେବା ଏକ ପ୍ରକାର କଳା । କେତେକଙ୍କର ଜନ୍ମରୁ ଏ ପ୍ରକାର ଶକ୍ତି ପ୍ରକାଶ ପାଇଥାଏ । ଆଉ କେତେକ, ଅଭ୍ୟାସ ଦ୍ୱାରା ଭାଷଣ କଳାକୁ ଆୟତ୍ତ କରିଥିବାର ଦେଖାଯାଏ ।

ଭାଷଣ ଦେବା ଲୋକର ପ୍ରଥମେ ମାନସିକ ଦୃଢ଼ତା ଥିବା ଆବଶ୍ୟକ । ଯେ କଥା କଥାକେ ବିଚଳିତ ହୁଅନ୍ତି, ସେମାନଙ୍କୁ ସମ୍ମାନନୀୟ ବକ୍ତାଭାବେ ଗ୍ରହଣ କରାଯାଏନାହିଁ । ଯେଉଁ ବିଷୟରେ କହିବାକୁ ହେବ, ପ୍ରଥମେ ସେ ବିଷୟରେ ଗଭୀର ବିଚାର କରିବା ବାଞ୍ଛନୀୟ । ଉପସ୍ଥିତ ସଜ୍ଜନମଣ୍ଡଳୀକୁ ଯଥାଗିତ ସମ୍ବୋଧନ କରି, ନିଜର ନ୍ୟୂନତା ପ୍ରକାଶପୂର୍ବକ ବିଷୟବସ୍ତୁର ଗାମ୍ଭୀର୍ଯ୍ୟ ବିଷୟରେ ଦିଗ୍‌ଦର୍ଶନ ଦେବା ଆବଶ୍ୟକ । ଏହାପରେ ଶ୍ରୋତାମାନଙ୍କ ଆଗରେ ବିଷୟବସ୍ତୁ ସଂକ୍ଷେପରେ ଉପସ୍ଥାପନା କରିବା ବାଞ୍ଛନୀୟ । ଆଲୋଚ୍ୟ ବିଷୟ ସମ୍ବନ୍ଧରେ ଅନ୍ୟମାନଙ୍କ ବିପକ୍ଷ ଯୁକ୍ତି ଦେଇ କହିବେ ଯେ କେତେକ ଲୋକ ଏ ବିଷୟରେ ଦୋଷ ଦୁର୍ବଳତା ଥିବାର କହନ୍ତି । ପ୍ରଥମେ ସେ ସବୁ ମତ କହିସାରି ପରେ ସେଗୁଡ଼ିକୁ ଯଥାକ୍ରମେ ଖଣ୍ଡନ ବା ମଣ୍ଡନ କରିବେ । କହିବାବେଳେ ଭାଷା ସହଜ, ସରଳ ଓ ସୁନ୍ଦର ହେବା ଆବଶ୍ୟକ । ନିଜ ମତ ପ୍ରତିଷ୍ଠାବେଳେ ଶାସ୍ତ୍ର ବାକ୍ୟ ଓ ଆପ୍ତ ବଚନମାନ ପ୍ରମାଣ ରୂପେ ଉପସ୍ଥାପିତ ହେବା ଉଚିତ । ମଝିରେ ମଝିରେ ପ୍ରସଙ୍ଗ ଅନୁସାରେ ଦୃଷ୍ଟାନ୍ତସ୍ୱରୂପ ଗୋଟିଏ ଗୋଟିଏ ଉପାଖ୍ୟାନ ସଂକ୍ଷେପରେ କହିବା ଉଚିତ । କହିବାବେଳେ ଅତି ଉଚ୍ଚସ୍ୱର ବା ନିମ୍ନସ୍ୱର ଯେପରି ନ ହେବ, ସେଥିପ୍ରତି ବିଶେଷ ସତର୍କତା ଅବଲମ୍ବନ କରିବା ଆବଶ୍ୟକ । ଭାଷଣ ଦେବାବେଳେ ନିମ୍ନଲିଖିତ ସୂଚନା ପ୍ରତି ଧ୍ୟାନ ଦେବା ବାଞ୍ଛନୀୟ ।

(୧) ନିଜ ବିଷୟ ବ୍ୟତୀତ ଅନ୍ୟ ବିଷୟରେ ପଶିଯିବେ ନାହିଁ ।

(୨) ଶ୍ରୋତାଗଣ ଅମନୋଯୋଗୀ ବା ଗମ୍ଭୀର ଅବସ୍ଥାକୁ ଆସିଗଲେ ମନୋରଞ୍ଜକ କଥା କହିବେ ।

(୩) ବିଷୟବସ୍ତୁ ଖୁବ୍ ବଢ଼େଇ ବଢ଼େଇ କହିବେ ନାହିଁ କି ଅତି ସଂକ୍ଷେପ କରିବେ ନାହିଁ । ଲୋକଙ୍କୁ ବୁଝେଇ କହିବାକୁ ଚେଷ୍ଟା କରିବା ଆବଶ୍ୟକ ।

(୪) ଭାଷଣ ଦେବାବେଳେ ମୁହଁ, ଆଖି, ଭ୍ରୂ ନଚେଇବା ବା ସେ ପ୍ରକାର ଅଭିନୟ କରିବା ଦୋଷାବହ । ଏହାଦ୍ୱାରା ଶ୍ରୋତାମାନଙ୍କ ଉପରେ ଖରାପ ପ୍ରଭାବ ପଡ଼େ ।

(୫) ଭାଷଣରେ ନାମ ଧରି କାହାରି ପ୍ରତି ଆକ୍ଷେପ କରାଯିବ ନାହିଁ । ଯଦି ସେପରି କିଛି କହିବା ଦରକାର, ତେବେ ମଧୁରଭାଷାରେ ଶିଷ୍ଟାଚାର ରକ୍ଷାପୂର୍ବକ କହିବା ଆବଶ୍ୟକ ।

(୬) ବ୍ୟାଖ୍ୟାନ ଦେବା ସମୟରେ ନିର୍ଭୟ ହୋଇ କହିବା ଉଚିତ । ମନେ ମନେ ଭାବିବେ ଯେ ସମ୍ମୁଖରେ ଥିବା ଶ୍ରୋତାଗଣ ପିଲା, ସେମାନଙ୍କୁ ବୁଝାଇ କହୁଛି; କିନ୍ତୁ ଏ ପ୍ରକାର ଭାବନା ଭାଷଣରେ ପ୍ରକାଶ ପାଇବା ଉଚିତ ନୁହେଁ ।

(୭) ଭାଷଣ ଦେବାବେଳେ କୌଣସି ଜଣେ ଦୁଇଜଣ ଶ୍ରୋତା ଯେ ଆପଣଙ୍କ ଭାଷଣ ମନଦେଇ ଶୁଣୁଛନ୍ତି ତାଙ୍କୁ ଲକ୍ଷ୍ୟ କରି କହିବେ । ବାରମ୍ବାର ତାଙ୍କର ଆଡ଼କୁ ଚାହିଁ ସେମାନଙ୍କ ଚେଷ୍ଟା ଅନୁଧ୍ୟାନ କରିବେ ।

(୮) ଯେଉଁ ରସର ବର୍ଣ୍ଣନା କରାଯିବ ସେହି ଭାବ ଓ ସେହି ସଙ୍କେତ ପ୍ରଦର୍ଶନ କରିବା ବାଞ୍ଛନୀୟ ।

(୯) ହସ କଥା ପଢ଼ିଲେ ପ୍ରଥମେ ନିଜେ ହସିବେ ନାହିଁ । ଯେତେବେଳେ ସମସ୍ତେ ହସିବେ ସେତେବେଳେ ଟିକିଏ ମୁରୁକି ହସ ହସିବେ ।

(୧୦) କରୁଣରସ ପ୍ରସଙ୍ଗରେ ନିଜର ଭାବ ଓ ଭାଷା କରୁଣ ରସସୂଚକ ହେବା ଆବଶ୍ୟକ । ଏସବୁ ପ୍ରତି ଦୃଷ୍ଟି ରଖି ଭାଷଣ ଦେଲେ ବକ୍ତା ସୁବକ୍ତା ଭାବେ ସମ୍ମାନିତ ହୁଏ । ଭାଷଣ ଅଭିନୟାତ୍ମକ ହେଲେ ତା'ର ପ୍ରଭାବ ଶ୍ରୋତାମାନଙ୍କ ଉପରେ ପଡ଼େ ନାହିଁ, ଏ ବିଷୟରେ ବକ୍ତା ସଚେତନ ହେବା ଉଚିତ ।

ମୈତ୍ରେୟ ମୁନି କହିଲେ—ହେ ବିଦୁର ! ମହାରାଜା ପୃଥୁ ବକ୍ତାମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଥିଲେ । ସେ ଥିଲେ ଚକ୍ରବର୍ତ୍ତୀ ରାଜା, ଧର୍ମାତ୍ମା, ସୁନ୍ଦର, ପ୍ରଜାନୁରଞ୍ଜନକାରୀ, ଭଗବାନଙ୍କ ଅଂଶାବତାର । ତେଣୁ ତାଙ୍କ ଭାଷଣ ଜନତାର ଗଭୀର ହୃଦୟକୁ ପ୍ରଭାବିତ କରିଥିଲା ।

ଏହା ଶୁଣି ବିଦୁର କହିଲେ—ଭଗବନ୍ ! ସେହି ମହାଯଜ୍ଞରେ ମହାରାଜ ପୃଥୁ ଯେଉଁ ଭାଷଣ ଦେଇଥିଲେ, ତାହା ଦୟାକରି ଶୁଣାନ୍ତୁ ।

ମୈତ୍ରେୟ ମୁନି କହିବାକୁ ଲାଗିଲେ—ମୁଁ ଏବେ ମହାରାଜ ପୃଥୁଙ୍କ ଭାଷଣର ସାରାଂଶ କହୁଛି । ମହାରାଜ ପୃଥୁ ଠିଆ ହୋଇ ମୁନି ଋଷିମାନଙ୍କୁ ଯଥାବିଧି ଅଭିବାଦନ ଜଣାଇ କହିଲେ—ସମୁପସ୍ଥିତ ସାଧୁ, ସନ୍ଥ ଓ ସଭ୍ୟ ମହାନୁଭବଗଣ ! ଆପଣମାନେ ବହୁ କଷ୍ଟ ସ୍ୱୀକାରପୂର୍ବକ ଏଠାରେ ଉପସ୍ଥିତ ହୋଇ ମୋତେ ବହୁ ମାତ୍ରାରେ ଅନୁଗୃହୀତ କରାଇଛନ୍ତି । ଆପଣମାନଙ୍କ ସାକ୍ଷାତ ପାଇ ମୁଁ ନିଜେ କୃତାର୍ଥ ହୋଇଛି । ଭଗବାନ ଆପଣମାନଙ୍କର ମଙ୍ଗଳ କରନ୍ତୁ । ଆପଣମାନଙ୍କ ପ୍ରତି ସର୍ବଦା ତାଙ୍କର ସଦୟ ଦୃଷ୍ଟି ରହୁ । ମୁଁ ଆପଣମାନଙ୍କ ଆଗରେ କେତୋଟି କଥା ନିବେଦନ କରିବା ପାଇଁ ଚାହୁଁଛି, ଆପଣମାନେ ଧୀର ସ୍ଥିର ହୋଇ ଅବହିତ ଚିତ୍ତରେ ତାହା ଶୁଣିବାକୁ ଅନୁରୋଧ । ମୁଁ କୌଣସି ବିଷୟରେ ନୂଆ କରି ଶିକ୍ଷା ଦେବାକୁ ଚାହୁଁନାହିଁ । ଶିକ୍ଷା ଦେବାର ଯୋଗ୍ୟତା ମୋର ନାହିଁ କି ଅଧିକାର ନାହିଁ । ଆପଣମାନଙ୍କୁ ଜ୍ଞାନୀ, ଗୁଣୀ, ମୁନି ଋଷିଗଣ ଶିକ୍ଷାଦେଇ ପାରିବେ । ମୁଁ ଏଠାରେ କେବଳ ମୋର ମନୋଭାବ ବ୍ୟକ୍ତ

କରିବାକୁ ଯାଉଛି । କାରଣ, ସାଧୁ ସଜ୍ଜନମାନଙ୍କ ଆଗରେ ଜିଜ୍ଞାସୁ ପୁରୁଷ ନିଜର ମନୋଭାବ ବ୍ୟକ୍ତ କଲେ ତାହା ଶ୍ରୋତା ଓ ବ୍ୟକ୍ତା ଉଭୟଙ୍କର କଲ୍ୟାଣ ସାଧନ କରିବ । କହିବା ଅବସରରେ ମୋର ତ୍ରୁଟି ବିଚ୍ୟୁତି ଘଟିଲେ ତାହା ଆପଣମାନେ ନିଜଗୁଣରେ କ୍ଷମା ଦେବେ । ଯଦି ସେଇ ବିଚାର ବକ୍ତାଙ୍କର ହିତକାରୀ ହୋଇ ପାରିବ ତେବେ ତାକୁ ସମର୍ଥନ ଜଣାଇବା ପାଇଁ ବିନୀତ ଅନୁରୋଧ ।

ଏହି ସସାଗରା ପୃଥିବୀକୁ ପାଳନ କରିବା ନିମିତ୍ତ ମୋ'ଠାରେ ଯୋଗ୍ୟତା ଥିବାରୁ ମୁଁ ଜାଣିପାରୁ ନାହିଁ । କିନ୍ତୁ ସେହିବଶତଃ ହେଉ ବା ମୋର ପୂର୍ବପୁରୁଷ-ମାନଙ୍କ ପୁଣ୍ୟବଶତଃ ହେଉ ମୁନି, ଋଷିମାନେ ମିଳିମିଶି ମୋତେ ରାଜା କରାଇ ଦେଇଛନ୍ତି । କିନ୍ତୁ ସେମାନେ ଯେତେବେଳେ ମୋ' ଉପରେ ଗୁରୁଦାୟିତ୍ୱ ଲଦି ଦେଇଛନ୍ତି ସେତେବେଳେ ମୋର ଉତ୍ତର ଦାୟିତ୍ୱ ବଢ଼ିଗଲା । ରାଜାଙ୍କର ଚାରୋଟି ପ୍ରଧାନ କର୍ତ୍ତବ୍ୟ ରହିଛି । ଯେଉଁମାନେ ଧର୍ମର ମର୍ଯ୍ୟାଦା ପରିତ୍ୟାଗ କରି ଅଧର୍ମ ଆଚରଣ କରୁଛନ୍ତି, ସେମାନଙ୍କୁ ଦଣ୍ଡ ଦେବା ରାଜାଭାବେ ମୋର ପ୍ରଥମ କର୍ତ୍ତବ୍ୟ । ଏପରିକି ନିଜର ଭାଇ ମଧ୍ୟ ରାଜକୀୟ ଆଦେଶର ଅବମାନନା କଲେ ଦଣ୍ଡନୀୟ ହେବ । ତେଣୁ ଶାସନ କ୍ଷେତ୍ରରେ ପ୍ରିୟାପ୍ରୀତି ତୋଷଣ ଯେପରି ନ ହୁଏ, ସେଥିପ୍ରତି ଦୃଷ୍ଟି ଦେବା ମୋର ପ୍ରଥମ ଓ ସର୍ବଶ୍ରେଷ୍ଠ କର୍ତ୍ତବ୍ୟ ।

ରାଜାମାତଙ୍କର ଦ୍ୱିତୀୟ କର୍ତ୍ତବ୍ୟ ହେଉଛି ପ୍ରଜାମାନଙ୍କର ଧନ, ଜୀବନକୁ ସୁରକ୍ଷିତ କରିବା । ଯେ କୌଣସି ଉପାୟରେ ଦେଶବାସୀଙ୍କ ଦୁଃଖ ଦୁର୍ଦ୍ଦଶା ଦୂର କରି ସେମାନଙ୍କ ମନରେ ଶାନ୍ତି, ସନ୍ତୋଷ ଓ ସାହାସର ବାତାବରଣ ସୃଷ୍ଟି କରିବା ମୋର କର୍ତ୍ତବ୍ୟ । ସମସ୍ତଙ୍କର ଜୀବିକା ବ୍ୟବସ୍ଥା ମୋର ତୃତୀୟ କର୍ତ୍ତବ୍ୟ । କୌଣସି ଦେଶରେ ଜଣେ ମାତ୍ର ଲୋକ ଅନାହାର ବା ଅର୍ଦ୍ଧାହାରରେ ରହିଲେ ତାହାଦ୍ୱାରା ରାଜାଙ୍କ ପାପ ଓ ଶାସନକଳର ଅପାରଗତା ପ୍ରମାଣିତ ହେବ । ତେଣୁ ରାଜା ନିଜର ଦେଶ ବାସୀଙ୍କ ପାଇଁ ଜୀବିକା ଓ ଖାଦ୍ୟବ୍ୟବସ୍ଥା ବିଷୟରେ ସଚେତନ ରହିବା ବାଞ୍ଛନୀୟ । ଯୋଗ୍ୟତା ଓ କର୍ମଦକ୍ଷତାକୁ ବିଚାର କରି ଲୋକଙ୍କୁ ପୃଥକ୍ ପୃଥକ୍ କାର୍ଯ୍ୟରେ ନିଯୁକ୍ତ ଦେଇ ଧର୍ମର ମର୍ଯ୍ୟାଦା ପ୍ରତିଷ୍ଠା କରିବା ରାଜାଙ୍କର ଚତୁର୍ଥ କର୍ତ୍ତବ୍ୟ । ଏହି ଚାରୋଟି କର୍ତ୍ତବ୍ୟକୁ ପ୍ରଭୁଙ୍କ ସେବା ମନେକରି ନ୍ୟାୟମାର୍ଗରେ ପ୍ରଜାଙ୍କୁ ଯଦି ପାଳନ କରିପାରିବ ତେବେ ଭଗବାନ୍ ସନ୍ତୁଷ୍ଟ ହେବେ । ଯାହା ପ୍ରତି ଭଗବାନ୍ ପ୍ରସନ୍ନ ତା'ର କର୍ତ୍ତବ୍ୟ ହୋଇ ଆଉ ରହେ ନାହିଁ । ସେ ଅକ୍ଷୟ ପୁଣ୍ୟର ଅଧିକାରୀ ହୁଏ । ପରଲୋକ ପ୍ରତି ଧ୍ୟାନ ଦେଇ ଯଦି ମୁଁ ଧର୍ମତଃ ଆପଣମାନଙ୍କୁ ପାଳନ କରିବି ତେବେ ମହର୍ଷିମାନଙ୍କ କଥିତ ସମସ୍ତ ଦିବ୍ୟଲୋକ ସ୍ୱତଃ ମୋତେ ମିଳିଯିବ ।

ରାଜା ଧର୍ମାତ୍ମା ଓ ଅଧର୍ମାତ୍ମା ରୂପେ ଦୁଇ ପ୍ରକାର । ମୁଁ ଏବେ ଧର୍ମାତ୍ମା ରାଜାଙ୍କ ଗତି ବିଷୟରେ କହିଲି । ଅଧର୍ମାତ୍ମା ରାଜାମାନେ ପ୍ରଜାଙ୍କ ପାଖରୁ ଷଷ୍ଠାଂଶ ବୃତ୍ତି ଗ୍ରହଣ କରୁଥିଲେ ମଧ୍ୟ ସେମାନଙ୍କ ସୁଖ ସୁବିଧା ପ୍ରତି ଦୃଷ୍ଟି ଦିଅନ୍ତି ନାହିଁ । ପ୍ରଜାମାନେ ଅଧାର୍ମିକ ରାଜଶାସନରେ ନାନା ପ୍ରକାର କୁ କାର୍ଯ୍ୟରେ ଲିପ୍ତ ହୁଅନ୍ତି । ଚୌରଆଡ଼େ ଅନ୍ୟାୟ ଦୁର୍ନୀତି ବ୍ୟାପିଯାଏ । ରାଜା ବିଷୟାସକ୍ତ ହେଲେ ଓ ଶାସନରେ ଶିଥିଳତା ଦେଖାଦେଲେ ଦେଶରେ ନାନାପ୍ରକାର ବିଶୃଙ୍ଖଳା ଖେଳି-ଯାଏ । ରାଜା ପ୍ରଜାମାନଙ୍କ ପାପର ଭାଗୀଦାର ହୋଇଥାନ୍ତି ଏବଂ ନିଜର ପରଲୋକ ନଷ୍ଟ କରନ୍ତି । ଇହଲୋକର ଐଶ୍ୱର୍ଯ୍ୟ, ଭୋଗ ବିଳାସ ମଧ୍ୟ ନଷ୍ଟଭ୍ରଷ୍ଟ ହୋଇଯାଏ ।

ହେ ମହାନୁଭାବଗଣ ' ଧାର୍ମିକ ରାଜା ଓ ଅଧାର୍ମିକ ରାଜାର ଶାସନ ଓ ତା'ର ପରିଣତି ବିଷୟ କହିଲି । ଆପଣମାନେ ଦୟାକରି ମୋତେ ପାପରୁ ରକ୍ଷା କରନ୍ତୁ । ଆପଣମାନେ ଧର୍ମ ଆଚରଣ କଲେ, ଭକ୍ତି ସହକାରେ ଭଗବାନଙ୍କ ଆରାଧନା କଲେ, ନାସ୍ତିକ ଭାବନା ଓ ଅଯଥା ପ୍ରବୃତ୍ତିକ ମନୋବୃତ୍ତି ତ୍ୟାଗ କଲେ ଦେଶବାସୀ ଶାନ୍ତି ସନ୍ତୋଷରେ ରହିବେ । ମୁଁ ଯାହା ହେଲେ ବି ଆପଣମାନଙ୍କ ଦ୍ୱାରା ନିର୍ବାଚିତ ରାଜା, ଶାସକ, ସ୍ୱାମୀ । ତେଣୁ ମୋର ଦୋଷ ପ୍ରତି ଦୃଷ୍ଟି ନ ଦେଇ ମୋର କଲ୍ୟାଣ ସାଧନ ପାଇଁ ଓ ପରଲୋକ ଗଠନ ପାଇଁ ଆପଣମାନେ ଭଗବତ୍ ଚିନ୍ତନ କରନ୍ତୁ । ଆପଣମାନେ କହିବେ ଯଦି ଭଗବାନଙ୍କୁ ଚିନ୍ତା କରିବୁ ତେବେ ନିଜପାଇଁ ନ କରି ଅନ୍ୟ ପାଇଁ କରିବୁ କାହିଁକି ? ଯଦି ବି ସେପରି କରୁ ତା'ଦ୍ୱାରା ଆପଣଙ୍କର କି ଉପକାର ହେବ ?' ହଁ ହେବ । ଭଗବାନଙ୍କୁ ପ୍ରାର୍ଥନା କରିବା ଦ୍ୱାରା ଆପଣଙ୍କର କଲ୍ୟାଣ ହେବ ଏବଂ ମୋର ମଧ୍ୟ ମଙ୍ଗଳ ହେବ । ମୁଁ ଆଗରୁ କହିଛି ପ୍ରଜାର ପାପ ପୁଣ୍ୟରେ ରାଜାଙ୍କର ମଧ୍ୟ ଭାଗ ଅଛି । ଆପଣମାନେ ଧର୍ମ ଆଚରଣ କଲେ ସେଥିରୁ ମୋତେ ମୋର ଅଂଶ ମିଳିଯିବ । ଆପଣମାନଙ୍କ କୃପାରୁ ମୋର ଇହଲୋକ ଓ ପରଲୋକ ସୁଖମୟ ହେବ ।

ମୁଁ ଆଉ ଗୋଟିଏ ବିଷୟରେ ଅନୁରୋଧ କରିବାକୁ ଚାହୁଁଛି । କେତେକ କହନ୍ତି ପରଲୋକ ବୋଲି କିଛି ନାହିଁ । ଦେହ ହିଁ ଆତ୍ମା । ଦେହ ନଷ୍ଟ ହୋଇଗଲେ ସବୁ କିଛି ନଷ୍ଟ ହୋଇଗଲା । ତା'ର ପୁନର୍ଜନ୍ମ ଏକ କଳ୍ପନା ମାତ୍ର । ତେଣୁ ଜୀବନ ଥିବା ଯାଏ ଅଭାବ ଥିଲେ ବି ଋଣ ଆଣି ଖାଇ ପିଇ ସୁଖରେ ରୁହ । କେତେବେଳେ ପ୍ରାଣବାୟୁ ଉଡ଼ିଯିବ ତାହା କିଏ କହିବ ? ନ ଖାଇ ନ ପିଇ ଦେହକୁ କଷ୍ଟ ଦେଇ ଲାଭ କଣ ? ମରିଗଲା ପରେ କେହି କେବେ ସୁଖ କି ଦୁଃଖ ପାଇଲା, ତାହା କହେ ନାହିଁ । କେହି ଥିଲେ ସିନା ଆସିବ ? କାର୍ଯ୍ୟର ଆଧାର ହେଉଛି ଶରୀର । ସେହି ଶରୀର ପଚି ସଡ଼ି ଗଲେ, ନଷ୍ଟ ହୋଇଗଲେ ବା ଅଗ୍ନିରେ ଭସ୍ମସାତ୍ ହୋଇସାରିବା

ପରେ ଆଉ ଆସିବ କଏ ? କେତେକ ସ୍ୱାର୍ଥପର ଲୋକ, ନିଜର ସ୍ୱାର୍ଥସିଦ୍ଧି ପାଇଁ ମୂର୍ଖ ଲୋକମାନଙ୍କୁ ଠକିବା ପାଇଁ, ନିଜର ପେଟ ବଢ଼ାଇବା ପାଇଁ ଏବଂ ନିତ୍ୟ ନୂତନ ମାଲ୍ ଆସ୍ୱାଦନ ପାଇଁ କେତେକ କଳ୍ପିତ ଶାସ୍ତ୍ର ରଚନା କରିଛନ୍ତି । ଶ୍ରାଦ୍ଧ ଏମିତି କର, ପିଣ୍ଡ ସେମିତି ଦିଅ, ପ୍ରତିଦିନ ତର୍ପଣ କର । ଏ ଗୁଡ଼ାକ ସବୁ ମିଛ କଥା । ପରଲୋକ ବୋଲି କିଛି ନାହିଁ । ଯାହା କିଛି ଅଛି ତାହା ହେଉଛି ଇହ-ଲୋକ । ଏହିପରି ନାସ୍ତିକତା ପୂର୍ଣ୍ଣ ସୁନ୍ଦର ସୁନ୍ଦର କଥା କହି ବାଉଳମାନେ ଲୋକଙ୍କୁ ବିଭ୍ରାନ୍ତ କରୁଛନ୍ତି ଏବଂ ସାଧୁ, ସରଳ ମନୋଭାବର ଲୋକମାନଙ୍କୁ ଧର୍ମଭ୍ରଷ୍ଟ କରୁଛନ୍ତି । ପରଲୋକ ଯେ ନିଶ୍ଚୟ ଅଛି ସେଥିରେ ସନ୍ଦେହ ନାହିଁ । ଏ ବିଷୟରେ ଉପସ୍ଥିତ ଋଷି, ମହର୍ଷି, ତେଜସ୍ୱୀ ତପସ୍ୱୀ ପୂଜନୀୟ ସଭାସଦ୍‌ଗଣ ମୋ' ସହିତ ଏକମତ ହେବେ । ଆପଣମାନେ ଲୋକମାନଙ୍କ ମନରୁ ଧର୍ମ ସମ୍ବନ୍ଧୀୟ ଶଙ୍କା ଦୂର କରିବା ପାଇଁ ଯତ୍ନଶୀଳ ହୁଅନ୍ତୁ ।

ଆଉ କେହି କେହି କହନ୍ତି ଗୁଣ ଗୁଣରେ ଥାଏ । କର୍ମ ହିଁ ସୁଖ ଦୁଃଖର କାରଣ । ଯେ ଯେପରି କର୍ମ କରିବ ସେ ସେହିପରି ଫଳ ପାଇବ, ଏକଥା ସତ ଯେ କର୍ମ ଅନୁସାରେ ଫଳ ମିଳେ, କିନ୍ତୁ କର୍ମ ହେଉଛି ଜଡ଼ । ତେଣୁ ଜଡ଼ କେବେ କୌଣସି ଫଳ ଦେଇପାରେ ନାହିଁ । ଜଣେ କେହି ଯଜ୍ଞପତି ଅଛନ୍ତି ଯେ ଶୁଭାଶୁଭ ଫଳ ଦାନ କରନ୍ତି ବୋଲି ମୁନିଋଷିମାନେ କହିଛନ୍ତି । ତା' ହୋଇ ନ ଥିଲେ ଇହଲୋକରେ ଯେଉଁ ଦ୍ରବ୍ୟ ଅନୁଭୂତ ଆସେ ତାହା ନିରର୍ଥକ ହୋଇଯିବ । ଶରୀରକୁ ଆତ୍ମାରୂପେ ସ୍ୱୀକାର କଲେ ପରଲୋକ ଚିନ୍ତାର ପ୍ରଶ୍ନ ଉଠିବ ନାହିଁ । କିନ୍ତୁ ତ୍ରିକାଳବିତ୍ ମୁନିମାନେ ପରଲୋକର ସାକ୍ଷାତ୍ ପାଇଛନ୍ତି । ତେଣୁ ଆପଣମାନେ ମୋ' କଥାକୁ ସମର୍ଥନ କରିବେ । ଲୋକମାନଙ୍କୁ ଯଥାର୍ଥ ଶିକ୍ଷା ଦେଇ ସେମାନଙ୍କୁ କୁମାର୍ଗରୁ ସୁମାର୍ଗକୁ ଫେରାଇ ଆଣନ୍ତୁ । ଏହାଦ୍ୱାରା ପରଲୋକରେ କର୍ତ୍ତା ଯେଉଁ ଫଳ ପାଇବ ତା'ର ଅନୁମୋଦନ କର୍ତ୍ତା, ଶିକ୍ଷକ ଓ ପ୍ରେରଣା ଦାୟକ ମଧ୍ୟ ସେହି-ଫଳ ପାଇବେ ।

ଆପଣମାନେ କହିବେ, ଏସବୁ କାର୍ଯ୍ୟ ଭଗବତ୍ ପ୍ରେରଣା ବିନା ସମ୍ଭବ ନୁହେଁ । ଏହାର ପ୍ରମାଣ କଣ ଅଛି ? ଭଗବାନ୍ ବୋଲି ଜଣେ କେହି ଅଛନ୍ତି ତା'ର ପ୍ରମାଣ କଣ ? ଈଶ୍ୱରକୁ ମାନୁ ନ ଥିବା ଲୋକେ ସତ୍ୟକୁ ପ୍ରମାଣ ବୋଲି ମାନୁ ଥିବାରୁ କହନ୍ତି । ଯାହା ଦେଖାଯାଏ ନାହିଁ ତାହା ପ୍ରମାଣ ନୁହେଁ । ଏସବୁ କଥା କଣ ସତ ? ଯାହା ଆମ ଆଖିକୁ ଦେଖାଯାଏ ନାହିଁ ତାହାକୁ ଅନୁମାନ, ଉପମାନ ବା ଅନ୍ୟ ଉପାଦାନଦ୍ୱାରା ଜାଣିବା କଣ ସମ୍ଭବ ନୁହେଁ ? ଆଖିକୁ କଣ ସବୁ କିଛି ଦେଖାଯାଏ ? ଚକ୍ଷୁ ଗୋଲକ ବା ପୂଅଡ଼ୋଳା ନ ଥିଲେ ଆଖି ଥାଇ

ମଧ କିଛି ଦେଖାଯାଏ ନାହିଁ । ଆମେ ଯାହାକୁ ଆଖି ବୋଲି କହୁଁ ତାହାହିଁ କଣ ପ୍ରକୃତ ଆଖି ? ନାଁ । ସେ ହୁଇଟି ଆଖି ନୁହେଁ । ଦୃଷ୍ଟିଶକ୍ତି ନ ଥିଲେ କିଛି ଦେଖାଯାଏ ନାହିଁ । ତେଣୁ ଚକ୍ଷୁ ହୁଇଟି ଅନ୍ୟ କାହାର ସାହାଯ୍ୟରେ ଦେଖିପାରେ । ତେବେ ପ୍ରତ୍ୟକ୍ଷ ପ୍ରମାଣର ମୂଲ୍ୟ କଣ ?

ପ୍ରତ୍ୟକ୍ଷୀଭୂତ ସବୁ କିଛି ଯେ ସତ୍ୟ, ତାହା ମଧ ଠିକ୍ ନୁହେଁ । ଆକାଶ ନୀଳ ଦେଖାଯାଏ । କଣ ବାସ୍ତବରେ ଏହା ନୀଳ ? ରଙ୍ଗୀନ୍ ଇନ୍ଦ୍ରଧନୁ ପ୍ରତ୍ୟକ୍ଷ ଦେଖାଯାଏ, କିନ୍ତୁ ତାହା କଣ କାହାର ଧନୁ ? ଗନ୍ଧର୍ବ ନଗର ଦେଖାଯାଏ, କଣ, ଆକାଶରେ ସେପରି କାହାର ନଗର ଅଛି ? ତେଣୁ ପ୍ରତ୍ୟକ୍ଷର ସତ୍ତା ଆପ୍ତ ପୁରୁଷଙ୍କ ଅନୁମୋଦନ ବିନା ପ୍ରମାଣିତ ହୋଇ ପାରେ ନାହିଁ । ମୋ' ହାତରେ ମୁଠାଏ କୁଶ ଅଛି । ମୁଁ ଯଦି ପଚାରିବି ଏଗୁଡ଼ିକ କୁଶ ବୋଲି ପ୍ରମାଣ କଣ ? ଆପଣମାନେ କହିବେ—ଆମେ ଦେଖିପାରୁଛୁ । ତା'ପରେ ଯଦି ମୁଁ ପଚାରିବି କୁଶ ବୋଲି କ'ଣ ତା' ଉପରେ ଲେଖା ଅଛି ? ଲେଖା ହୋଇଥିଲେ ମଧ ଏହା 'କୁଶ' ବୋଲି ଆପଣ ଜାଣିଲେ କିପରି ? ତାର ପ୍ରମାଣ କଣ ? ସେହିପରି ମୁଁ ଯାହା ଘୋଡ଼ି ହୋଇଛି ତାହା ମୃଗଚର୍ମ, ଆପଣମାନେ ମଣିଷ, ସେମାନେ ପଶୁ, ପକ୍ଷୀ ବା ବୃକ୍ଷ, ତାହାର କି ପ୍ରମାଣ ଅଛି ? ଯେଉଁ ପ୍ରମାଣ ଦ୍ୱାରା ବସ୍ତୁ ବିଷୟରେ ସିଦ୍ଧାନ୍ତ କରାଯାଇଛି । ସେ ପ୍ରମାଣର ପ୍ରାମାଣିକତା କଣ ?

ହେ ସଭାସଦ୍‌ଗଣ ! ଆପଣମାନେ ମୋ କଥାରେ ବିଶ୍ୱାସ କରନ୍ତୁ । ଏସବୁ ଶ୍ରୁତି ମଧୁର ବେଦବିରୋଧୀ କଥାରେ ଭୁଲନ୍ତୁ ନାହିଁ । ଶିଷ୍ଟଲୋକମାନଙ୍କ ବଚନ ହିଁ ସବୁଠାରୁ ଶ୍ରେଷ୍ଠ ପ୍ରମାଣ । ସମସ୍ତେ ମିଶି ଗୋଟିଏ ଅକ୍ଷରର ନାମ ଦେଲେ 'ଅ' । ଆମ୍ଭେମାନେ ତାକୁ ସେହି 'ଅ' ବୋଲି ମାନିବା ଉଚିତ । ଏ ଜଣେ ମଣିଷ, ସେ ଜଣେ ସ୍ତ୍ରୀ, ଏ ପୁରୁଷ, ସେ ପଶୁ, ସେହିପରି ପକ୍ଷୀ, ସରୀସୃପ, ପୁଅ, ଝିଅ, ପିତା, ମାତା, ଇତ୍ୟାଦି ଗୁରୁଜନମାନଙ୍କ ବଚନ । ତାହା ପ୍ରମାଣ ରୂପେ ଗ୍ରହଣୀୟ । ସେହିପରି ଈଶ୍ୱର ଅଛନ୍ତି, ଏହା ମୁନି, ଋଷି ତଥା ଆମର ପୂର୍ବଜମାନେ କହିଯାଇଛନ୍ତି । ତେଣୁ ପୂର୍ବଜମାନଙ୍କ ବାକ୍ୟ ପ୍ରମାଣ ସ୍ୱରୂପ ସ୍ୱୀକରଣୀୟ । ଯଦି ଈଶ୍ୱର ଓ ପରଲୋକ ଆଦି କିଛି ନ ଥାନ୍ତା ତେବେ ଆମର ଆଦି ପୂର୍ବଜ ସ୍ୱାୟମ୍ଭୁବ ମନୁ ଭଗବାନଙ୍କ ଆରାଧନା କରୁଥିଲେ କାହିଁକି ? ସେ ପରଲୋକରୁ ଆସି ନିଜ ପୌତ୍ର ଧ୍ରୁବଙ୍କୁ ଶିକ୍ଷା ଦେଲେ କିପରି ? ଏଡ଼େ ବଡ଼ ଯଶସ୍ୱୀ ରଜା ରାଜର୍ଷି ଉତ୍ତାନପାଦ ସମୃଦ୍ଧିଶାଳୀ ରାଜ୍ୟକୁ ତୃଣବତ୍ ତ୍ୟାଗକରି ବନକୁ ଗଲେ ଏବଂ ଭଗବତ୍ ଉପାସନାରେ ରହି କନ୍ଦମୂଳ, ଫଳ ଖାଇ ସାରାଜୀବନ କଟାଇଦେଲେ କାହିଁକି ? ଧ୍ରୁବ କାହିଁକି ପାଞ୍ଚବର୍ଷ ବୟସରେ ଗୃହତ୍ୟାଗ କରି ବନକୁ ଯାଇଥିଲେ ? ସେହି

ରାଜର୍ଷି ଅଙ୍ଗ ନାନାପ୍ରକାର ଧର୍ମ କାର୍ଯ୍ୟରେ କାଳଯାପନ କରୁଥିଲେ କାହିଁକି ? ଈଶ୍ୱର ନ ଥିଲେ ପରଲୋକ ନ ଥିଲେ ଏତେ ସାଧନା, ଏତେ ଶ୍ରମ ବରଣ କରିବାର ଲକ୍ଷ୍ୟ କଣ ଥିଲା ? ଇନ୍ଦ୍ରାଦି ଦେବଗଣ ମଧ୍ୟ ଭଗବାନ୍ ବିଷ୍ଣୁଙ୍କ ଆରାଧନା କରନ୍ତି । କେବଳ ଦେବତା ନୁହେଁ ପ୍ରହ୍ଲାଦ, ବଳି ଆଦି ଦୈତ୍ୟମାନେ ମଧ୍ୟ ଭଗବାନଙ୍କୁ ଭକ୍ତି ସହକାରେ ପୂଜା କରୁଥିଲେ । ସେମାନେ ଥିଲେ ଆସ୍ତିକ, ଧର୍ମାତ୍ମା ଓ ପରଲୋକବିଶ୍ୱାସୀ । ଧାର୍ମିକ କୃତ୍ୟରେ ସେମାନଙ୍କର ଆସ୍ଥା ଥିଲା ।

ମୃତ୍ୟୁପୁତ୍ରୀ ସୁନୀଥାଙ୍କ ପୁଅ ପରି ନେତେକ ଥିଲେ ଯେଉଁମାନେ ଚତୁର୍ବର୍ଗ-ଦାତା ଶ୍ରୀହରିଙ୍କୁ ସ୍ୱୀକାର କରୁ ନ ଥିଲେ । ସେମାନେ ନିଜକୁ ସର୍ବେସର୍ବା ମନେ କରୁଥିଲେ । ଦେହଦୃଷ୍ଟିରୁ ସେ ମୋର ପିତା ଥିଲେ । ମୁଁ ତାଙ୍କର ନିନ୍ଦା କରିପାରିବି ନାହିଁ, ତେବେ ତାଙ୍କପରି ଧର୍ମବିମୂଢ଼ ନାସ୍ତିକ ଲୋକ ଯେ ଶୋଚନୀୟ ଅବସ୍ଥାର ସମ୍ମୁଖୀନ ହୁଅନ୍ତି, ସେଥିରେ ସନ୍ଦେହ ନାହିଁ । ଆପଣମାନେ ଚିନ୍ତା କରନ୍ତୁ, ଯେ ଭକ୍ତ ପ୍ରତି ସର୍ବଦା ଅନୁଗ୍ରହଶୀଳ, ଏକମାତ୍ର ଆଶ୍ରୟ, ଜପ, ତପ, ଧ୍ୟାନ, ଧାରଣାର ଏକମାତ୍ର ଧ୍ୟେୟ, ସେହି କରୁଣାମୟଙ୍କ ଚରଣରେ ଶରଣ ନେବା ପାଇଁ କେଉଁ ବୁଦ୍ଧିମାନ ପୁରୁଷ ଇଚ୍ଛା ନ କରିବ ? ସେ ଚରଣର ମହିମା ଅବର୍ଣ୍ଣନୀୟ ସେହି ଚରଣର ଅଙ୍ଗୁଷ୍ଠ ନଖ କୋଣରୁ ଯାହାର ତ୍ରିଲୋକ୍ୟପାବନୀ ଗଙ୍ଗା କଳିକଳୁଷହାରିଣୀ ହୋଇଛନ୍ତି । ଜୀବଜଗତର ପାପତାପ ଦୂର କରିବାରେ ଏତେ ଶକ୍ତି ଗଙ୍ଗାଙ୍କଠାରେ ସମ୍ଭବ ହେଲା କିପରି ? ତେଣୁ ମାନିବାକୁ ପଡ଼ିବ ଏସବୁ ସେହି ପୁଣ୍ୟମୟ ପାଦପଦ୍ମର ପ୍ରଭାବ । ସେହି ପାଦପଦ୍ମର ଆଶ୍ରୟ ନେଲେ ପୁରୁଷ ନିର୍ମଳ, ଅସଙ୍ଗ ଓ ମୁକ୍ତ ହୁଏ । ତେଣୁ ଆପଣମାନେ ସେହି ସର୍ବେଶ୍ୱରଙ୍କ ଉପାସନା କରନ୍ତୁ । ତାଙ୍କର ଗୁଣଗାନ କରନ୍ତୁ । ନିଜର ସବୁ କିଛି ସଂକଳ୍ପ ଓ କର୍ମ ତାଙ୍କଠାରେ ଅର୍ପଣ କରି ଏବଂ ତାଙ୍କର ଇଚ୍ଛା ଭାବି ସ୍ୱଧର୍ମ ପ୍ରତିପାଳନ କରନ୍ତୁ । ତାଙ୍କର ଗୁଣାବଳୀ ପ୍ରଖ୍ୟାପକ କଥା ଶୁଣନ୍ତୁ ଓ ଅନ୍ୟମାନଙ୍କୁ ଶୁଣାନ୍ତୁ ।

ଭଗବାନ ନିର୍ଗୁଣ, ନିରାକାର, ନିର୍ଲିପ୍ତ, ନିସ୍ପୃହ ଓ ନିରାଲମ୍ବ ହୋଇଥିବାରୁ ତାଙ୍କୁ ନାନା ଉପାଧିରେ ସ୍ତୁତି କରିବା, ବିବିଧ ଦ୍ରବ୍ୟ ଉପହାର ଦେଇ ପୂଜା କରିବାରେ ଲାଭ କଣ ବୋଲି ଅନେକ ପ୍ରଶ୍ନ କରନ୍ତି । ତାଙ୍କର ପାଇଁ ଅର୍ଥ, ଆଶୟ, ଲିଙ୍ଗ ଏବଂ ଅଶ୍ୱମେଧ, ରାଜସୂୟ, ବାଜପେୟ ଆଦି ଯଜ୍ଞ ଆଚରଣ କରିବାର ଲକ୍ଷ୍ୟ କ'ଣ ? ଏହାଦ୍ୱାରା ତାଙ୍କୁ କିପରି ପୂଜା କରାଯାଉଛି ? ସେ ତ ବିଶୁଦ୍ଧ ଜ୍ଞାନମୟ, ଭାବମୟ ଓ ସର୍ବାନ୍ତର୍ଯ୍ୟାମୀ ପ୍ରଭୁ । କିଏ କି ଭାବରେ ତାଙ୍କୁ ଭାବୁଛି ସେ କଥା ସେ ଜାଣନ୍ତି । ଯାହାର ଚିତ୍ତ ଶୁଦ୍ଧି ଯେତିକି ଥାଏ ଆଉ ଯେଉଁ ରୂପରେ ଆରାଧନା

କରେ, ସେ ସେହି ରୂପରେ ତାକୁ ଫଳଦାନ କରନ୍ତି । କଥାଟି ଏହି ଭାବରେ ବୁଝିବାକୁ ହେବ । ଅଗ୍ନି ଏକ ଓ ସର୍ବବ୍ୟାପକ । ଅଗ୍ନିର କୌଣସି ରୂପ ବା ଆକାର ନାହିଁ; ତଥାପି ସେ ଯେଉଁ ପ୍ରକାର ଇନ୍ଧନରେ ପ୍ରବେଶ କରନ୍ତି ତାଙ୍କର ରୂପ ସେହିପରି ହୁଏ । ଖଣ୍ଡିଏ ବଙ୍କା କାଠରେ ଲାଗିଥିବା ଅଗ୍ନିର ରୂପ ଅଙ୍କାବଙ୍କା ହୁଏ । ସେହିପରି ସେ ମୋଟା, ସରୁ, ପତଳା, ଗ୍ରେଷ୍ଟ, ବଡ଼ ରୂପ ଧାରଣ କରନ୍ତି । ପ୍ରଭୁ ସେହିପରି ସର୍ବବ୍ୟାପକ । ସେ କାଳ ସ୍ୱରୂପ । ଅନ୍ତଃକରଣ ଓ ବାସନା ସମୂହ ରୂପରେ ଏ ଦେହରେ ଚେତନା ଭାବେ ରହି ନାନା ରୂପରେ ପ୍ରକଟିତ ହୁଅନ୍ତି । ଭାବନା ଅନୁସାରେ ଯଜ୍ଞାଦି କ୍ରିୟାର ଫଳସ୍ୱରୂପ ସେ ଭିନ୍ନ ଭିନ୍ନ ପ୍ରତୀତ ହୁଅନ୍ତି । ସେହି ପ୍ରଭୁ ସମସ୍ତଙ୍କର ପୂଜନୀୟ, ବନ୍ଦନୀୟ, ଆଦରଣୀୟ, ଯଜନୀୟ ଓ ଭଜନୀୟ । ସ୍ୱଜନ, ବନ୍ଧୁ, ପ୍ରଜା, ଭକ୍ତ, ସାଧକ ଯେଉଁମାନେ ଭକ୍ତିଭାବରେ ସେହି ପରାତ୍ପର ଦୀନବନ୍ଧୁ ଭଗବାନଙ୍କୁ ପୂଜା କରୁଛନ୍ତି ସେମାନେ ମୋର, ନିଜର ତଥା ସଂସାରର ଉପକାର କରୁଛନ୍ତି । ଅଖିଳ ବ୍ରହ୍ମାଣ୍ଡର ଅଧିପତି ସେହି ପ୍ରଭୁଙ୍କୁ ପୂଜା କରିବା ପାଇଁ ମୁଁ ଆପଣମାନଙ୍କୁ ଅନୁରୋଧ କରୁଛି ।

ମୋର ପିତା ମୁଖ୍ୟତଃ ଦୁଇଟି କାମ କରିଥିଲେ । ସେ ଦୁଇଟି ହେଲା, ବ୍ରାହ୍ମଣମାନଙ୍କୁ ଅପମାନ ଦେବା ଓ ଈଶ୍ୱରଙ୍କ ଆରାଧନା ବନ୍ଦ କରିବା । ସେଥିପାଇଁ ତାଙ୍କର ମୃତ୍ୟୁ ହେଲା । ଆପଣମାନେ ଏହି ଦୁଇଟି କାର୍ଯ୍ୟଠାରୁ ଦୂରରେ ରହିବେ । ଈଶ୍ୱରଙ୍କୁ ଯେପରି ସ୍ୱୀକାର କରିବେ, ବ୍ରାହ୍ମଣମାନଙ୍କୁ ସେହିପରି ଶ୍ରଦ୍ଧା କରିବେ । ସେମାନେ ଭୂସୁର ନାମରେ ଅଭିହିତ । ତେଣୁ ସେମାନେ ଆମର ଇଷ୍ଟ ଓ ଦେବତା । ତପସ୍ୟାନିରତ, ସନ୍ତୁଷ୍ଟ, ବିଦ୍ୱାନ୍, ଅଚ୍ୟୁତସେବାପରାୟଣ, ବ୍ରାହ୍ମଣ-ମାନଙ୍କ ପ୍ରତି ରାଜାପଣିଆ, ବୈଭବ ଅଭିମାନ ଓ କ୍ରୋଧଭାବ ପ୍ରକାଶିତ ହେବ ନାହିଁ । ବ୍ରାହ୍ମଣ ଆମର କୁଳଦେବତା । ଭଗବାନଙ୍କ ପରି ବ୍ରାହ୍ମଣ ମଧ୍ୟ ପୂଜ୍ୟ, କାରଣ ତାଙ୍କୁ ବ୍ରହ୍ମଣ୍ୟ ଦେବ କୁହାଯାଏ । ବ୍ରହ୍ମାଦି ଦେବଗଣ ବ୍ରାହ୍ମଣଙ୍କୁ ଭକ୍ତି କରନ୍ତି । ସ୍ୱୟଂ ବିଷ୍ଣୁ ବ୍ରାହ୍ମଣର ପଦଚିହ୍ନ ଧାରଣ କରିଛନ୍ତି । ବ୍ରାହ୍ମଣଙ୍କ ଦୟାରୁ ଐଶ୍ୱର୍ଯ୍ୟ ଓ ସମ୍ମାନ ମିଳେ । ମୁଁ ସେମାନଙ୍କର ପାଦଧୂଳି ନେଇ ନିଜକୁ କୃତାର୍ଥ ମନେକରେ । ସ୍ୱପ୍ନରେ ସୁଦ୍ଧା ବ୍ରାହ୍ମଣଙ୍କର ଅପମାନ ଚିନ୍ତା କରିବା ଉଚିତ ନୁହେଁ । ବ୍ରାହ୍ମଣ ଓ ଅଗ୍ନି ଭଗବାନଙ୍କର ଦୁଇଟି ମୁଖ । ଅଗ୍ନିରେ ଘୃତାହୁତି ଦେଲେ ଭଗବାନ ଯେତିକି ସନ୍ତୁଷ୍ଟ ହୁଅନ୍ତି, ବ୍ରାହ୍ମଣମାନଙ୍କୁ ଭୋଜନ ଦେଲେ ସେ ସେତିକି ପ୍ରସନ୍ନ ହୁଅନ୍ତି ।'

ମୋର ଏପରି କହିବା ଦ୍ୱାରା ପକ୍ଷପାତ ବିଚାର ହେଉଛି ବୋଲି ଆପଣମାନେ କହିପାରନ୍ତି । ବ୍ରାହ୍ମଣମାନଙ୍କଠାରେ ଏପରି କଣ ଅଛି ଯେ, ଆମେ ସେମାନଙ୍କୁ

ଈଶ୍ୱର ବୁଦ୍ଧିରେ ପୂଜା କରିବୁ । ସେମାନେ ଯେଉଁ ଉପାଦାନରେ ଗଢ଼ା, ଆମେମାନେ ମଧ୍ୟ ସେହି ଉପାଦାନରେ ଗଢ଼ା । ତେବେ ସେମାନଙ୍କୁ ଏତେ ଆଦର କାହିଁକି କରିବୁ ? ଦେଖନ୍ତୁ ବ୍ରାହ୍ମଣମାନେ ଶରୀର ଦୃଷ୍ଟିରୁ ସମସ୍ତଙ୍କ ସହିତ ସମାନ ହେଲେ ମଧ୍ୟ ବହୁ ବିଷୟରେ ସେମାନେ ଅନ୍ୟଠାରୁ ପୃଥକ୍ । ସେମାନେ ତପ, ସଦାଚାର, ମୌନ, ସଂଯମ ଓ ସମାଧିଦ୍ୱାରା ଶୁଦ୍ଧ, ସନାତନ ବେଦକୁ ଶ୍ରଦ୍ଧାର ସହିତ ଧାରଣ କରିଛନ୍ତି । ତେଣୁ ତାଙ୍କ ସହିତ କିଏ ସମାନ ହେବ ?

ଆପଣମାନେ କହିବେ, ଯେଉଁ ବ୍ରାହ୍ମଣ ଗୁଣହୀନ, ସଂଯମ ଓ ସଦାଚାର-ହୀନ ତାକୁ କାହିଁକି ଆମେ ପୂଜା କରିବା ? ଏପରି ବ୍ରାହ୍ମଣ କାଠଘୋଡ଼ା ପରି ନାମତଃ ବ୍ରାହ୍ମଣ । ଯେ ବ୍ରହ୍ମକୁ ଜାଣେ ନାହିଁ ସେ ବ୍ରାହ୍ମଣ ନୁହେଁ । ହଁ, ଏହା ଠିକ୍ । ତଥାପି ଆପଣ ନିର୍ଗୁଣ ହେଲେ ମଧ୍ୟ ବ୍ରାହ୍ମଣକୁ ଅନାଦର କରିବେ ନାହିଁ । ସେପରି ବ୍ରାହ୍ମଣ ସାହସହୀନ ଓ ଭୟଭୀତ ହୋଇଥାନ୍ତି । କିନ୍ତୁ ଆପଣମାନେ କୁଳପରମ୍ପରାର ମର୍ଯ୍ୟାଦା ରକ୍ଷା ପାଇଁ ନାମମାତ୍ର ବ୍ରାହ୍ମଣକୁ ମଧ୍ୟ ଅପମାନିତ କରିବା ଅନୁଚିତ । ଗୋ' ଓ ବ୍ରାହ୍ମଣକୁ ରକ୍ଷା କରିବା ପାଇଁ ଭଗବାନ ଅବତୀର୍ଣ୍ଣ ହୁଅନ୍ତି । ସେ ତୁହେଁ ଭଗବାନଙ୍କ ଅଙ୍ଗ । ଆଉ ଅଧିକ କହିବା ନିଷ୍ପ୍ରୟୋଜନ । ଆପଣ ଭଗବାନଙ୍କୁ ସ୍ୱୀକାର କରନ୍ତୁ । ଭଗବତ୍ସିଦ୍ଧି ବେଦାଦି ଶାସ୍ତ୍ର ଦ୍ୱାରା ହୁଏ । ତେଣୁ ବେଦଶାସ୍ତ୍ରଧାରୀ ବ୍ରାହ୍ମଣଙ୍କୁ ମଧ୍ୟ ସମ୍ମାନ ଦିଅନ୍ତୁ । ସର୍ବଦା ଯାଗ, ଯଜ୍ଞ, ଜପ, ତପ, ପୂଜା, ପାଠ, କଥାଶ୍ରବଣ, ଭଗବନ୍ନାମ କୀର୍ତ୍ତନ ଆଦି ଶୁଭ କାର୍ଯ୍ୟରେ ଆତ୍ମନିୟୋଗ କରନ୍ତୁ ।

ହେ ମହାଭାଗ ! ମୋର ଆଉ ଅଧିକ କିଛି କହିବାର ନାହିଁ । ଆପଣମାନେ ଭଗବାନଙ୍କ ଚରଣାରବିନ୍ଦରେ ମନନିବେଶ କରନ୍ତୁ, ବ୍ରାହ୍ମଣମାନଙ୍କ ପଦଧୂଳି ନିଅନ୍ତୁ ଏହା ହିଁ ମୋର ବିନୀତ ନିବେଦନ । ବିପ୍ରପଦରଜୋରାଗୀ, ଗୁରୁ ଶୁଶ୍ରୂଷାପରାୟଣ, ସକଳ ଗୁଣାଧାର, କୃତଜ୍ଞ ଓ ଚରିତ୍ରବାନ୍ ବ୍ୟକ୍ତିଠାରେ ଭଗବାନ ପ୍ରସନ୍ନ ହୁଅନ୍ତି । ତେଣୁ ଗୋ' ଗୋବିନ୍ଦ ଓ ବିପ୍ରପଦାରବିନ୍ଦରେ ମୋର ଅଚଳା ଭକ୍ତି ରହୁ ତାହାହିଁ ମୋତେ ଆଶୀର୍ବାଦ ଦିଅନ୍ତୁ । ମୋର ସମସ୍ତ କାର୍ଯ୍ୟ ଭଗବତ୍ ସେବା ଉଦ୍ଦେଶ୍ୟରେ ଅନୁଷ୍ଠିତ ହେଉ, ଭଗବାନ ମୋ ଉପରେ ପ୍ରସନ୍ନ ରହନ୍ତୁ ଏବଂ ମୋ' ହୃଦୟରେ ତାଙ୍କ ପ୍ରତି ଅଚଳା ଭକ୍ତି ରହୁ, ଏହା ହିଁ ମୋର ଆନ୍ତରିକ କାମନା ।

ମୁଁ ଯାହା କିଛି କହିଲି ଆପଣମାନଙ୍କ ହିତଦୃଷ୍ଟିରୁ କହିଲି । ମୁଁ ରାଜା ଭାବରେ ନୁହେଁ, ବରଂ ଆପଣମାନେ ମୋତେ ଯେଉଁ ଦାୟିତ୍ୱ ଦେଇଛନ୍ତି, ସେହି ଦୃଷ୍ଟିରୁ ମୋ କର୍ତ୍ତବ୍ୟ ପାଳନ କଲି । ମୋ ବକ୍ତବ୍ୟରୁ ଯାହା ସାର ବୋଲି

ଶାବୁଛନ୍ତି ତାହା ଗ୍ରହଣ କରନ୍ତୁ ଏବଂ ଧର୍ମବିରୁଦ୍ଧ କଥା ତ୍ୟାଗ କରନ୍ତୁ । ଧର୍ମର ଯଥାର୍ଥ ମର୍ମ ବ୍ରାହ୍ମଣମାନେ କହିବେ । ସେମାନଙ୍କୁ ଆପଣମାନେ ଧର୍ମ ବିଷୟରେ ପଚାରିବା ଉଚିତ । ମୁଁ ସେମାନଙ୍କ ମୁଖରୁ ଯାହା ଶୁଣିଥିଲି ତାହା ହିଁ କହିଛି । ମୋର ତ୍ରୁଟି, ବିଚ୍ୟୁତି ଥିଲେ ଗୁରୁଜନମାନଙ୍କୁ ସଂଶୋଧନ କରିନେବା ପାଇଁ ଅନୁରୋଧ । ପ୍ରମାଦବଶତଃ ଅନୁଚିତ କିଛି କହିଥିଲେ ଆପଣମାନେ ମୋତେ କ୍ଷମା ଦେବେ । ମଙ୍ଗଳମୟ ଭଗବାନ ସମସ୍ତଙ୍କର ମଙ୍ଗଳ କରନ୍ତୁ । ଶାନ୍ତିଃ, ଶାନ୍ତିଃ, ଶାନ୍ତିଃ ।

ମହର୍ଷି ସୂତ କହିଲେ—ହେ ମୁନିଗଣ ! ମହାରାଜ ପୃଥୁଙ୍କ ଭାଷଣ ଶୁଣିବା ପରେ ଚାରିଆଡ଼ ସାଧୁ ସାଧୁ ଧ୍ୱନିରେ ସଭାସ୍ଥଳ ପୂରି ଉଠିଲା । ସମସ୍ତେ ତାଙ୍କ ଉପରେ ପୁଷ୍ପବୃଷ୍ଟି କଲେ । ଦୁନ୍ଦୁଭି ଆଦି ବାଦ୍ୟ ବାଜିବାକୁ ଲାଗିଲା । ସୂତ ମାଗଧଗଣ ପ୍ରଶସ୍ତି ଗାନ କଲେ । ମହାରାଜ ମୁନି, ଋଷିମାନଙ୍କୁ ପ୍ରଣାମ ଜଣାଇ ନିଜ ଆସନରେ ବସିଲେ ।

## ଛପ୍ପୟ

"ଧନ୍ୟ ପ୍ରଜା ଟିକ ପୁରୁଷ କରହିଁ ଜେ ପୂଜା ପ୍ରଭୁକୀ ।
ତେ ଅତି ଆଦରଣୀୟ କରହିଁ ଜେ ଅର୍ଚା ବିଭୁ କୀ ॥
ଧର୍ମ ମୂଳ ହୈ ଧେନୁ ଯଜ୍ଞ ହିତ ଘୃତ ଜେ ଦେବେଁ ।
ଦ୍ୱିଜବର ଭୂସୁର କହେ ବେଦ ଜେ ବିଧିବତ ସେବେ ॥
ବିପ୍ର କମଳ ପଦ ରେଣୁ କୁଁ, ନିତ ସିରତେଁ ଧାରନ କରହୁଁ ।
କୃଷ୍ଣାର୍ପଣ କରି କରହୁଁ ସବ, କର୍କ ବ୍ୟଥା ସବ କୀ ହରହୁଁ ॥"



## ପୃଥୁଙ୍କୁ ପ୍ରଜାମାନଙ୍କ ଅଭିନନ୍ଦନ

"ଅହୋ ବୟଂ ହ୍ୟଦ୍ୟ ପବିତ୍ରକୀର୍ତ୍ତେ
ତ୍ୱୟୈବ ନାଥେନ ମୁକୁନ୍ଦ ନାଥାଃ ।
ଯ ଉତ୍ତମଶ୍ଳୋକତମସ୍ୟ ବନ୍ଧୋ,
ବ୍ରହ୍ମଣ୍ୟଦେବସ୍ୟ କଥାଂ ବ୍ୟନକ୍ତି ॥"
(ଭାଗବତ-୪ର୍ଥ ସ୍କନ୍ଦ-୨୧ ଅଧ୍ୟାୟ-୪୯ ଶ୍ଳୋକ)

ଛପ୍‌ପୟ

"ସୂନେ ବେନ ସୂତ ବୈନ ନୈନ ସବ୍‌କେ ଭର ଆୟେ ।
ସୁନ ଅଭିଭାଷଣ ସାଧୁ ସାଧୁ ସବଇ ଚଲ୍ଲାୟେ ॥
ଉଠେ ବୃଦ୍ଧ ସେ ପୁରୁଷ ଏକ ପ୍ରଜନଧି ପରଜାକେ ।
ଧନ୍ୟବାଦ ବହୁ ଦୟେ ମଞ୍ଚ କେ ଢ଼ିଗ ମହୁଁ ଜାକେ ॥
ପିତା ପୁତ୍ର ଦ୍ୱାରା ପରମ,ପ୍ରାପ୍ତ ପୁଣ୍ୟ ଲୋକନି କରହୁଁ ।
ଭଇ ସତ୍ୟ ବେଦୋକ୍ତି ଜିହ୍ୱ, ପୃଥୁ ପିତୁ କେ ପାପନି ହରହୁଁ ॥"

ଉପକାରୀ ଲୋକଠାରେ କୃତଜ୍ଞତା ଜ୍ଞାପନ କରିବା ଏକ ପ୍ରାଚୀନ ଶିଷ୍ଟାଚାର । ଯେ ଉପକାର କରିଛନ୍ତି ତାଙ୍କୁ ଧନ୍ୟବାଦ ଜଣାଇବା, ତାଙ୍କର ଶ୍ରେଷ୍ଠ ଉପକାରଟିକୁ ବଡ଼ ବୋଲି ଭାବି ତାଙ୍କୁ ଆଦର କରିବା ଏବଂ ସବୁବେଳେ ତାଙ୍କ କଥା ସ୍ମରଣ କରିବା ସମସ୍ତଙ୍କର କର୍ତ୍ତବ୍ୟ । କାୟମନୋବାକ୍ୟରେ ଯେ ଉପକାର ପାଇଁ କୃତଜ୍ଞତା ପ୍ରକାଶ କରେନାହିଁ, ତାକୁ କୃତଘ୍ନ କୁହାଯାଏ । ସର୍ବଂସହା ବସୁମତୀ କହେ—ମୁଁ ହିମାଳୟ, ସୁମେରୁ ପରି ବହୁ ବଡ଼ ବଡ଼ ପର୍ବତକୁ ଧାରଣ କରିଛି । ଜଣେ କୃତଘ୍ନକୁ ଧାରଣ କରିବାରେ ଯେତେ କଷ୍ଟ ହୁଏ 'ସେହି ପର୍ବତ ବହନରେ ମୋତେ ସେପରି କଷ୍ଟ ହୁଏ ନାହିଁ । କୃତଘ୍ନତା ଏକ ମହାପାପ । ତେଣୁ

କୃତଘ୍ନତା ଦୋଷରେ ଦୋଷୀ ନ ହେବାପାଇଁ ଯେତେ ଅଳ୍ପ ହେଲେ ମଧ୍ୟ ଉପକାର ପାଇଁ କୃତଜ୍ଞତା ଜଣାଇବାକୁ ଶାସ୍ତ୍ରରେ ନିର୍ଦ୍ଦେଶ ଦିଆଯାଇଛି । ଆମକୁ ଯେ ଭଲ କଥା ପଦେ କହେ, ଅକ୍ଷରଶିକ୍ଷା ଦିଏ ସେମାନଙ୍କୁ ଅସମ୍ମାନ କରିବା ଉଚିତ ନୁହେଁ । କାରଣ ସେମାନେ ଆମର ଗୁରୁଜନସ୍ଥାନୀୟ । ଗୁରୁ ଓ ଗୁରୁଜନଙ୍କ ଅପମାନକାରୀ କୋଟି କୋଟି ବର୍ଷ ନରକଯନ୍ତ୍ରଣା ଭୋଗ କରେ ଏବଂ ଅମେଧ୍ୟ କୀଟ ରୂପେ ଜନ୍ମ ହୁଏ ବୋଲି ଶାସ୍ତ୍ରରେ ଉଲ୍ଲେଖ ଅଛି ।

ମହାମୁନି ମୈତ୍ରେୟ କହିଲେ—ହେ ବିଦୁର ! ମହାରାଜ ପୃଥୁଙ୍କ ଭାଷଣ ସରିବା ପରେ ଚାରିଆଡ଼େ ଆନନ୍ଦର ଢେଉ ଖେଳିଗଲା । ସମସ୍ତେ ଏକସ୍ୱରରେ ସାଧୁ ସାଧୁ ଓ ଧନ୍ୟ ଧନ୍ୟ କହିବାକୁ ଲାଗିଲେ । ସମସ୍ତେ ଉଚ୍ଚସ୍ୱରରେ ପୃଥୁଙ୍କ ଜୟଗାନ କଲେ । ସଭାରେ ଉପସ୍ଥିତ ଥିବା ସମସ୍ତେ ଆନନ୍ଦ ଓ ଆବେଗରେ ଆତ୍ମହରା ହୋଇ ଉଠିଲେ । ଏହି ସମୟରେ ଜଣେ ବୃଦ୍ଧ ଉଠି ଠିଆହେଲେ । ସେ ମୁନିମାନଙ୍କୁ ପ୍ରଣାମ ଜଣାଇ ଏବଂ ମହାରାଜ ପୃଥୁଙ୍କୁ ଆଦର କରି ଉପସ୍ଥିତ ସମସ୍ତଙ୍କ ପକ୍ଷରୁ ମହାରାଜଙ୍କୁ ଧନ୍ୟବାଦ ଦେବା ପାଇଁ ଉଦ୍ୟତ ହେଲେ । ମୁନିମାନଙ୍କର ଅନୁମତି ନେଇ ସେ ମଞ୍ଚ ଉପରକୁ ଗଲେ ଏବଂ ସମସ୍ତଙ୍କୁ ଶାନ୍ତ କରାଇ କହିବାକୁ ଆରମ୍ଭ କଲେ—ଉପସ୍ଥିତ ମୁନି, ଋଷି ଓ ପ୍ରଜାବର୍ଗଙ୍କ ଆଦେଶ ଅନୁସାରେ ଆମର ସମ୍ରାଟ ମହାରାଜ ପୃଥୁ ଯେଉଁ ଅମୂଲ୍ୟ ଉପଦେଶ ଦେଲେ ସେଥିପାଇଁ ସମସ୍ତଙ୍କ ପକ୍ଷରୁ ମୁଁ କୃତଜ୍ଞତା ଜଣାଇବା ପାଇଁ ଠିଆ ହୋଇଛି । ମହାରାଜଙ୍କ ଉପକାର ପାଇଁ କୃତଜ୍ଞତା ପ୍ରକାଶ କରିବାକୁ ଆମର ଭାଷା ନାହିଁ । ଯେଉଁ ମା' ନଅ ମାସର ଗର୍ଭଯନ୍ତ୍ରଣା ସହି ପିଲାକୁ ଜନ୍ମ ଦିଏ ଏବଂ ଯେଉଁ ପିତା ନିଜେ ଅଜସ୍ର ଦୁଃଖ କଷ୍ଟ ସହି ପିଲାଙ୍କୁ ବଡ଼ କରନ୍ତି, ମଣିଷ କରନ୍ତି ସେହି ପିତାମାତାଙ୍କ ଋଣରୁ କୌଣସି ସନ୍ତାନ ମୁକ୍ତ ହୋଇପାରେ ନାହିଁ । କୌଣସି ସନ୍ତାନ ସାରାଜୀବନ ସେବା ଶୁଶ୍ରୂଷାଦ୍ୱାରା ପିତାମାତାଙ୍କ ଋଣ ପରିଶୋଧ କରିପାରେ ନାହିଁ । ପିତାମାତା ଆମକୁ କିଛି କାଳ ପାଇଁ ଲାଳନ ପାଳନ କରନ୍ତି । କିନ୍ତୁ ମହାରାଜ ସାରାଜୀବନ ଆମର ସୁଖ, ସୁବିଧା ପ୍ରତି ଦୃଷ୍ଟି ଦିଅନ୍ତି, ଆମକୁ ଭୟ, ବିପଦରୁ ରକ୍ଷା କରନ୍ତି ଏବଂ ଆମ ଜୀବିକା ଅର୍ଜନର ବ୍ୟବସ୍ଥା କରନ୍ତି । ସେ ଦୃଷ୍ଟିରୁ ମହାରାଜ ପୃଥୁଙ୍କୁ କୃତଜ୍ଞତା ଜଣାଇବା ପାଇଁ ମୋର ଭାଷା ନାହିଁ । କେବଳ ସେତିକି ନୁହେଁ, ସେ ଉପଦେଶ ଦେଇ ଆମକୁ ପରମାର୍ଥ ପଥରେ ଅଗ୍ରଗତି କରିବା ନିମିତ୍ତ ପ୍ରେରଣା ଯୋଗାଇଛନ୍ତି । ତେଣୁ ପିତୃପ୍ରତିମ ମହାରାଜଙ୍କ ପ୍ରତି କୃତଜ୍ଞତା ଜ୍ଞାପନ କରିବା ପାଇଁ ଆମର ସାମର୍ଥ୍ୟ ନାହିଁ । ଆମେ ଆଜି ସାକ୍ଷାତ୍ ପରମେଶ୍ୱରଙ୍କ ତୁଲ୍ୟ ମହାରାଜଙ୍କୁ ପ୍ରଜାପତି ରୂପେ ପାଇ କୃତକୃତ୍ୟ ହୋଇଛୁ ଓ ଆମର ଜୀବନ ସଫଳ ହୋଇଛି ।

ବେଦବାଣୀ ଅନୁସାରେ ପୁତ୍ରଦ୍ୱାରା ପିତା ପୁଣ୍ୟଲୋକ ଲାଭ କରନ୍ତି । ଆଜି ତାହା ଅକ୍ଷରେ ଅକ୍ଷରେ ସତ୍ୟ ପ୍ରତିପାଦିତ ହୋଇଛି । ମହାରାଜ ବେନଙ୍କ କ୍ରୂର କାର୍ଯ୍ୟାବଳୀ ବିଷୟରେ କହିବାର ଆବଶ୍ୟକତା ନାହିଁ, ତାହା ସମସ୍ତେ ଜାଣନ୍ତି । ବେଦବିରୁଦ୍ଧ ଆଚରଣ ଓ ଭଗବତ୍ ନିନ୍ଦା କରିବାରୁ ସେ ଶ୍ରୀହୀନ ହୋଇଗଲେ । ତେଣୁ ବ୍ରାହ୍ମଣମାନଙ୍କ ଅଭିଶାପରୂପକ କ୍ରୋଧାଗ୍ନିରେ ଭସ୍ମୀଭୂତ ହେଲେ । ଶାସ୍ତ୍ରବାଣୀ ଅନୁସାରେ ଯେ କୌଣସି ପ୍ରକାର ଅପମୃତ୍ୟୁ ହେଲେ ମଧ୍ୟ ବ୍ୟକ୍ତି ସଦ୍‌ଗତି ଲାଭ କରିପାରେ । କିନ୍ତୁ ବ୍ରହ୍ମଶାପଗ୍ରସ୍ତ ବ୍ୟକ୍ତି ନିଷ୍କୃତି ପାଇବାର କୌଣସି ଉପାୟ ନାହିଁ । ଭୂତପୂର୍ବ ମହାରାଜ ଯେପରି ଅନ୍ୟାୟ ଆଚରଣ କରିଛନ୍ତି ସେଥିପାଇଁ ସେ କୋଟିକଳ୍ପ ପର୍ଯ୍ୟନ୍ତ ନରକ ଯନ୍ତ୍ରଣା ଭୋଗ କରିଥାନ୍ତେ, କେବେହେଲେ ତାଙ୍କୁ ମୁକ୍ତି ମିଳି ନ ଥାନ୍ତା; କିନ୍ତୁ ଆଜି ଶ୍ରୀହରି ଅଂଶଭୂତ ମହାରାଜ ପୃଥୁଙ୍କୁ ପୁତ୍ର ରୂପେ ପାଇ ସେ ମୁକ୍ତ ହୋଇଗଲେ, ନରକଯନ୍ତ୍ରଣାରୁ ଉଦ୍ଧାର ପାଇଗଲେ । ଯେଉଁ ପୁତ୍ର ପୂର୍ବଜମାନଙ୍କ ପାପ ପାଇଁ ପ୍ରାୟଶ୍ଚିତ୍ତ କରେ ଓ ପିତୃଗଣଙ୍କୁ ନାରକୀୟ ଯାତନାରୁ ଉଦ୍ଧାର କରେ ତାକୁ ସମସ୍ତେ ସତ୍‌ପୁତ୍ର କହନ୍ତି । ଆମେ ଶୁଣି ଆସୁଛୁ ଯେ ପୂର୍ବ କାଳରେ ହିରଣ୍ୟକଶିପୁ ନାମରେ ଦୈତ୍ୟ ମଧ୍ୟ ଏହିପରି ପାପାଚାରୀ ଥିଲେ । ସେ ଭଗବାନ ଶ୍ରୀହରିଙ୍କୁ ନିନ୍ଦା କରୁଥିଲେ ଏବଂ ନିଜକୁ ସର୍ବେସର୍ବା ବୋଲି ଭାବୁଥିଲେ । କିନ୍ତୁ ତାଙ୍କ ପୁତ୍ର ମହାଭାଗବତ ପ୍ରହ୍ଲାଦ ବାପାଙ୍କର ସମସ୍ତ ପାପ ମାର୍ଜନା କରି ଦେଇଥିଲେ । ତାଙ୍କୁ ନରକ ରୂପକ ସାଗରରୁ ଉଦ୍ଧାର କରିଥିଲେ । ଏହା ହିଁ ସତ୍‌ପୁତ୍ରର କାର୍ଯ୍ୟ ।

ହେ ହୃଦୟେଶ୍ୱର ! ହେ ସମ୍ରାଟ ! ଆମେ କେଉଁ ଭାଷାରେ ଆପଣଙ୍କ ସ୍ତୁତିଗାନ କରିବୁ । କଣ ଦେଇ ଆମର ଭକ୍ତି ଆପଣଙ୍କଠାରେ ନିବେଦନ କରିବୁ । ଆପଣଙ୍କ ଯୋଗ୍ୟ ଉପହାର ଆମ ପାଖରେ ନାହିଁ । ଆମେ ହାତଯୋଡ଼ି, ମସ୍ତକ ଅବନତ କରି ଆପଣଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରୁଛୁ । ଆପଣଙ୍କ ପଦ୍ମପାଦରେ ଆମେ ପ୍ରାର୍ଥନା କରୁଛୁ, ଆପଣ ଦୀର୍ଘାୟୁ ହୁଅନ୍ତୁ, ଆମମାନଙ୍କୁ ଏହିପରି ସଦୁପଦେଶ ଦିଅନ୍ତୁ ଏବଂ ସ୍ନେହ, ଶ୍ରଦ୍ଧାରେ ଆମକୁ ପ୍ରତିପାଳନ କରନ୍ତୁ । ଆପଣଙ୍କ ଦୟାରୁ ଆମେ ପୃଥିବୀରେ ଥାଇ ମଧ୍ୟ ବୈକୁଣ୍ଠବାସଜନିତ ସୁଖ ଅନୁଭବ କରୁଛୁ । ଆମେ ସ୍ୱର୍ଗୀୟ ସୁଖ ଭୋଗକୁ ତୁଚ୍ଛ ମନେ କରୁଛୁ । ଯେଉଁଠାରେ ଆପଣ ଅଛନ୍ତି, ନିରନ୍ତର ଶ୍ରୀହରିଙ୍କ ଗୁଣ କୀର୍ତ୍ତନ କରାଯାଉଛି ତାହା ନର୍କ ହେଲେ ମଧ୍ୟ ସେଠାରେ ଦୀର୍ଘକାଳ ଧରି ରହିବା ପାଇଁ ଆମେ ଇଚ୍ଛା କରୁଛୁ । ଆପଣ ଜଗତର ପ୍ରଭୁ ଓ ସମସ୍ତ ଐଶ୍ୱର୍ଯ୍ୟର ଅଧିକାରୀ ହୋଇ ମଧ୍ୟ ପୁଣ୍ୟଶ୍ଳୋକ ଶ୍ରୀପୁରୁଷୋତ୍ତମଙ୍କ କଥା ଆମକୁ ଶୁଣାଇଛନ୍ତି, ତାଙ୍କର ଅନୁପମ ଲୀଳା ଆମ ଆଗରେ ବ୍ୟକ୍ତ କରିଛନ୍ତି । ଆପଣଙ୍କ ପରି ମୁକୁନ୍ଦଙ୍କୁ

ପ୍ରଭୁ, ସ୍ୱାମୀ ରୂପେ ପାଇ ଆମେ ନିଜକୁ ଯଥାର୍ଥ ପ୍ରଜାବୋଲି ଅନୁଭବ କରୁଛୁ ଏବଂ ଆମେ ସମସ୍ତେ କୃତାର୍ଥ ହୋଇଛୁ ଓ ଆମର ଜୀବନ ଧନ୍ୟ ବୋଲି ହୋଇଛୁ ।

ହେ ନରନାଥ ! ପବିତ୍ର କୀର୍ତ୍ତିଶାଳୀ ଯଶସ୍ୱୀ ସମ୍ରାଟ ! ଆପଣଙ୍କର ଅହେତୁକ କୃପା ଲାଭ କରି ଆମେ ଆଶ୍ଚର୍ଯ୍ୟାଭିଭୂତ ହୋଇପଡ଼ୁଛୁ । ସତରେ ଆମେ କଣ ଏ ପ୍ରକାର କୃପାର ଅଧିକାରୀ ? ଆମେ ଭାବୁଛୁ ଅଧିକାରୀ ନ ହେଲେ ମଧ୍ୟ ଆଶ୍ରିତ-ମାନଙ୍କୁ ଅଭୟ ଦେବା, ପଥହରାଙ୍କୁ ଯଥାର୍ଥ ମାର୍ଗ ନିର୍ଦ୍ଦେଶ କରିବା ଆପଣଙ୍କ ପରି ପରୋପକାରୀ, ବ୍ରତଗ୍ରସ୍ତ ସୁପୁରୁଷଙ୍କର ସହଜ ସ୍ୱଭାବ । ଏଥିରେ ଆଶ୍ଚର୍ଯ୍ୟ ହେବାର କଣ ଅଛି ? ଅଯୋଗ୍ୟ ପୁତ୍ର ମଧ୍ୟ ବାପାଙ୍କ ସ୍ନେହରୁ ବଞ୍ଚିତ ହୁଏ ନାହିଁ । ଯାହା-ଠାରେ ଆତ୍ମୀୟତା ଜାତହୁଏ ତାହାର ଯୋଗ୍ୟତା ବା ଅଯୋଗ୍ୟତା କଥା ବିଚାରକୁ ଆସେ ନାହିଁ । ଆତ୍ମୀୟତାକୁ ବଜାୟ ରଖିବା ସାଧୁ ଲୋକର ସ୍ୱଭାବ । ତେଣୁ ଆମେ ଯୋଗ୍ୟ ହେଉଁ ବା ଆଯୋଗ୍ୟ ହେଉଁ ଆପଣଙ୍କର ପ୍ରଜା । ଆମେ ଅଯୋଗ୍ୟ ହେଲେ ମଧ୍ୟ ଆପଣ ପୁତ୍ରପରି ଆମକୁ ପାଳନ କରୁଛନ୍ତି । ଦେବଦୁର୍ଲଭ କୃଷ୍ଣକଥା କହି ଆମକୁ କୃତାର୍ଥ କରିଛନ୍ତି । ଆମେ ଦୈବ ନାମକ ପ୍ରାରବ୍ଧର ଅଧୀନ ହୋଇ ଅନ୍ଧ ପରି ବୁଲୁଥିଲୁ । ଆପଣ ଦୟାକରି ଆମକୁ ବଳପୂର୍ବକ ଅଜ୍ଞାନ ଅନ୍ଧକାରରୁ ଆଲୋକକୁ ନେଇ ଆସିଛନ୍ତି । ଆଉ ଅଧିକ କିଛି କହିବାପାଇଁ ମୋର ସାମର୍ଥ୍ୟନାହିଁ । ଆପଣଙ୍କ ପାଦତଳେ ପ୍ରଣତି ଜଣାଇ ଆମର ହାର୍ଦ୍ଦିକ ଶ୍ରଦ୍ଧାଞ୍ଜଳି ସମର୍ପଣ କରୁଛୁ ।

ମୈତ୍ରେୟ ମୁନି କହିଲେ—ସେହି ବୃଦ୍ଧବ୍ୟକ୍ତିଙ୍କ ଭାଷଣ ସରିବା ପରେ ପରେ ଜୟ ଜୟକାର ଧ୍ୱନିରେ ଚତୁର୍ଦ୍ଦିଗ ମୁଖରିତ ହୋଇଉଠିଲା । ମହାରାଜାଙ୍କର ଜୟ ହେଉ, ପୃଥିବୀପତି ପୁରୁଷୋତ୍ତମଙ୍କର ଜୟ ହେଉ, ପ୍ରଜାପାଳନ ପୃଥୁ ଭଗବାନଙ୍କର ଜୟ ହେଉ, ଜୟ ହେଉ, ଜୟ ହେଉ, ଏହିପରି ଜୟଘୋଷ ହେବାକୁ ଲାଗିଲା । ସମସ୍ତେ ସେହି ବୃଦ୍ଧ ପୁରୁଷଙ୍କର ଭାଷଣକୁ ଅନୁମୋଦନ ଓ ସମର୍ଥନ କଲେ ।

## ଛପ୍ପୟ

"ଭୟେ କୃତାରଥ ଆଜୁ ହମନି ଅଚ୍ୟୁତ ପତି ପାୟେ ।
ପ୍ରଭୋ ! ଧନ୍ୟ ସ୍ୱନ୍ନ ଭୟେ ଅବହିଁ ଜୋ ହରି ଗୁନ ଗାୟେ ।।
ଜୁଗ ଜୁଗ ଜୀଓଁ ନାଥ ସଦା ଅସ ସୀଖ ସିଖଓଁ ।
ସୁନି ଶ୍ରୀମୁଖ ହରି ସୁଯଶ ହୃଦୟ ହମରେ ହୁଲସାଓଁ ।।
ମତି ମଲୀନ ଅତି ଦୀନ ହମ, ନହୀ ଭେଁଟ ସନ୍ମାନ ହୈ ।
କେବଲ ଶ୍ରଦ୍ଧା ସହିତ ପ୍ରଭୁ ! ପଦ ପଦ୍ମନି ପରନାମ ହୈ ।।"

●

# ମହାରାଜ ପୃଥୁଙ୍କ ସଭାକୁ ସନକାଦି ଋଷିଙ୍କ ଆଗମନ

"ଜନେଷୁ ପ୍ରଗୃଣତ୍ସ୍ୱେବଂ ପୃଥୁଂ ପୃଥୁଲବିକ୍ରମମ୍ ।
ତତ୍ରୋପଜଗ୍ମୁର୍ମୁନୟଶ୍ଚତ୍ୱାରଃ ସୂର୍ଯ୍ୟବର୍ଚସଃ ।।"

(ଭାଗବତ-୪ର୍ଥ ସ୍କନ୍ଦ-୨୨ ଅଧ୍ୟାୟ-ଶ୍ଳୋକ-୧)

## ଛପ୍ପୟ

"ସବ ମାହିଁ ସନକାଦି ତବହିଁ ନଭ ମାରଗ ଆୟେ ।
ପ୍ରଜା ସହିତ ପୃଥୁ ଉଠେ ସବନ ଚରନନ ସିରନାୟେ ।।
ସିଂହାସନ ବୈଠାଇ ବିବିଧ ବିଧି ପୂଜା କୀହ୍ନୀ ।
ରାଜ, କୋଷ, ସମ୍ପତ୍ତି, ଦେହ ଅର୍ପନ କରି ଦୀହ୍ନୀ ।।
ହାଥ ଜୋରି ଗଦ୍‌ଗଦ୍ ଗିରା, କହତ ବଚନ ବିହ୍ୱଳ ଭୟେ ।
କରେ କୃତାରଥ କୃପାନିଧି ! ସୁର ଦୁରଲଭ ଦରସନ ଦୟେ ।।"

ଏହି ପୃଥିବୀରେ ବହୁ ସିଦ୍ଧ ପୁରୁଷ ସୂକ୍ଷ୍ମ ରୂପରେ ବୁଲୁଛନ୍ତି । ଆଉ କେତେକ ବିଭିନ୍ନ ବେଶ ମଧ୍ୟରେ ନିଜକୁ ଲୁଚାଇ ସ୍ଥୂଳ ରୂପରେ ରହିଛନ୍ତି । ସେମାନେ ଯୋଗ୍ୟ, ଅଧିକାରୀ ପୁରୁଷଙ୍କୁ ଉପଦେଶ ଦେଉଛନ୍ତି । ଭକ୍ତମାନଙ୍କୁ ବିପଦରୁ ରକ୍ଷା କରୁଛନ୍ତି । କେବେ କେବେ ପ୍ରତ୍ୟକ୍ଷଭାବେ ଦର୍ଶନ ମଧ୍ୟ ଦେଉଛନ୍ତି । ପ୍ରାଚୀନ କାଳର ଚିରଞ୍ଜୀବୀ ସିଦ୍ଧମାନଙ୍କ କଥା ପୁରାଣରେ ବର୍ଣ୍ଣିତ ହୋଇଛି । ସେମାନଙ୍କ ମଧ୍ୟରେ ସନକ, ସନନ୍ଦନ, ସନତ୍କୁମାର, ସନାତନ, ନାରଦ, ଭୃଗୁ, ଅଙ୍ଗିରା, ଦେବଲ, ଶୁକ, ଦୁର୍ବାସା, ଯାଜ୍ଞବଲ୍‌କ୍ୟ, ମାର୍କଣ୍ଡେୟ, ଆରୁଣି, ଲୋମଶ, ଚ୍ୟବନ, ଦତ୍ତାତ୍ରେୟ, ଆସୁରି, ପତଞ୍ଜଳି, ବେଦଶିରା, ବୋଢ଼ୁ, ପଞ୍ଚଶିଖ, ହିରଣ୍ୟନାଭ, କୌଶଲ୍ୟ, ଶ୍ରୁତଦେବ, ଋତଧ୍ୱଜ ଆଦିଙ୍କର ନାମ ଚିରସ୍ମରଣୀୟ । ଏମାନଙ୍କ

ମଧ୍ୟରେ ଏପରି କେତେକ ପ୍ରାଚୀନ ଋଷି ଅଛନ୍ତି ଯେଉଁମାନଙ୍କ ଦେଖିବାରେ ଅନେକ ବ୍ରହ୍ମାଙ୍କର ପରିବର୍ତ୍ତନ ଘଟିଗଲାଣି । ସେମାନେ ସଂସାରର କଲ୍ୟାଣ ପାଇଁ, ଦୀନ ଦୁଃଖୀମାନଙ୍କ ଦୁଃଖ ଦୂର କରିବାପାଇଁ ଏବଂ ଯୋଗ୍ୟ ବ୍ୟକ୍ତିଙ୍କୁ ଉପଦେଶ ଦେବା ପାଇଁ ବେଳେବେଳେ ପ୍ରକଟିତ ହୁଅନ୍ତି । ସେଥିପାଇଁ ପ୍ରଥମେ ଶମ, ଦମ, ଯମ, ନିୟମ ଆଦି ସଦଗୁଣ ଓ ପୁଣ୍ୟ କାର୍ଯ୍ୟଦ୍ୱାରା ପାତ୍ରର ପ୍ରସ୍ତୁତି ଆବଶ୍ୟକ । ପାତ୍ରତ୍ୱ ଲାଭପରେ ସ୍ୱୟଂ ସିଦ୍ଧ ଉପସ୍ଥିତ ହୋଇ ଉପଦେଶ ଦେବେ । ସାଧକ ଯେପରି ସଦ୍‌ଗୁରୁ ଲାଭ ପାଇଁ ବ୍ୟଗ୍ର ହୁଏ ସେହିପରି ଗୁରୁ ସଦଗୁଣ ଯୁକ୍ତ ସତ୍ ଶିଷ୍ୟ ପାଇଁ ଅଧିକ ବ୍ୟସ୍ତ ହୁଅନ୍ତି । ଶିଷ୍ୟ ପାତ୍ରତ୍ୱ ଲାଭକଲେ ଗୁରୁ ଶିଷ୍ୟସଂଯୋଗ ସମ୍ଭବ ହୁଏ । କଞ୍ଚା ମାଠିଆରେ ପାଣି ନ ରହିଲା ପରି ଅପାତ୍ରରେ ଉପଦେଶ ସ୍ଥାୟୀ ହୁଏ ନାହିଁ ।

ମୈତ୍ରେୟ ମୁନି କହିଲେ—ହେ ବିଦୁର ! ମହାରାଜ ପୃଥୁ ଥିଲେ ଦେବଅଂଶ ସମ୍ଭୂତ, ତଥାପି ସେ ନୃପତି ବେଶରେ ରହି ଦାନ, ଧର୍ମ, ଜପ, ତପ, ଯଜ୍ଞଦ୍ୱାରା ନିଜ ଅନ୍ତଃକରଣକୁ ପବିତ୍ର କରିଥିଲେ । ତାଙ୍କର ପାତ୍ରତ୍ୱ ସିଦ୍ଧି ଆସିଥିଲା । ପୂର୍ଣ୍ଣଭାବେ ପାତ୍ରତ୍ୱ ଲାଭ କରିବା ପରେ ସେ ଭଗବାନଙ୍କ ଦର୍ଶନ ପାଇଥିଲେ । ଭଗବାନ୍ ତାଙ୍କୁ କହିଥିଲେ ତୁମକୁ ଉପଦେଶ ଦେବାପାଇଁ ସନକାଦି ଋଷିଗଣ ତୁମ ପାଖକୁ ଆସିବେ । ସେମାନେ ତୁମର ସମସ୍ତ ସଂଶୟ ଦୂର କରିବେ । ମହାରାଜ ପୃଥୁଙ୍କର କିଛି ବା ସନ୍ଦେହ ଥିଲା ! ତଥାପି ଲୋକଶିକ୍ଷା ପାଇଁ ତାଙ୍କୁ ଯୋଗ୍ୟ ଅଧିକାରୀ ମନେକରି ସନକାଦି ଋଷିଗଣ ରାଜସଭାରେ ସ୍ୱୟଂ ଉପସ୍ଥିତ ହେଲେ ।

ସଭାରେ ଲୋକ ପରିପୂର୍ଣ୍ଣ ଥିଲେ । ଋଷି, ମୁନି, ବ୍ରାହ୍ମଣ ପୂଜ୍ୟ ଗୁରୁଜନ ପ୍ରଭୃତିଙ୍କ ସମାବେଶରେ ସଭାର ଶୋଭା ବୃଦ୍ଧି ପାଉଥିଲା । ମହାରାଜ ପୃଥୁଙ୍କ ଭାଷଣ ସରିଗଲା । ପ୍ରଜାମାନଙ୍କ ପକ୍ଷରୁ ଧନ୍ୟବାଦ ଜ୍ଞାପନ ଶେଷ ହୋଇଥିଲା । ସଭାରେ ଉପସ୍ଥିତ ସମସ୍ତେ ଆନନ୍ଦ ଧ୍ୱନି କରୁଥିଲେ । ଏହି ସମୟରେ ଆକାଶରୁ ପିଙ୍ଗଳ ଜଟାଧାରୀ ଦେବତାସଦୃଶ ଚାରିଜଣ ଦିବ୍ୟପୁରୁଷ ଅବତରଣ କରୁଥିବାର ଦେଖାଗଲେ । ସେମାନଙ୍କର ତେଜରେ ଦଶଦିଗ ଆଲୋକିତ ହୋଇଯାଉଥିଲା । ମହାରାଜ ପୃଥୁଙ୍କ ଦୃଷ୍ଟିରେ ପଡିବା ମାତ୍ରେ ସେ ଭଗବାନଙ୍କ କଥା ସ୍ମରଣ କଲେ । ଭଗବାନ୍ କହିଥିଲେ ତାଙ୍କୁ ଉପଦେଶ ଦେବାପାଇଁ ସନକାଦି ଚାରିଜଣ ଋଷି ଆସିବେ । ମହାରାଜ ସଭାର ସହିତ ଉଠି ହାତଯୋଡ଼ି ଠିଆ ହୋଇଗଲେ । ମହାରାଜ ପୃଥୁଙ୍କୁ ଠିଆ ହେବାର ଦେଖି ସଭାସଦ୍‌ବର୍ଗ ସମସ୍ତେ ଠିଆ ହୋଇପଡ଼ିଲେ । ଋଷି, ମୁନିଗଣ ଆସନ ଛାଡ଼ି ଠିଆହେଲେ । ଏହି ସମୟରେ ସନକାଦି ଋଷି ଆସି ମହାରାଜ ପୃଥୁଙ୍କ ଆଗରେ ଠିଆ ହୋଇଗଲେ ।

ମୈତ୍ରେୟ ମୁନି କହିଲେ—ହେ ବିଦୁର ! ସଭାରେ ଯେତେବେଳେ କେହି ସମ୍ମାନନୀୟ ପୁରୁଷ ଉପସ୍ଥିତ ହୁଅନ୍ତି ସେତେବେଳେ ସମସ୍ତଙ୍କର ପ୍ରାଣ ତାଙ୍କର

ଆଡ଼କୁ ଆକର୍ଷିତ ହୋଇଯାଏ । ସ୍ୱାଗତ ସମ୍ବର୍ଦ୍ଧନା ପରେ ସମସ୍ତେ ସ୍ଥିତାବସ୍ଥାକୁ ଫେରି ଆସନ୍ତି । ମହାରାଜ ପୃଥୁ ବିନୀତଭାବେ ଅଞ୍ଜଳିବଦ୍ଧ ହୋଇ ସେମାନଙ୍କୁ ସ୍ୱାଗତ କଲେ । ସୁସଜ୍ଜିତ ଦିବ୍ୟ ସିଂହାସନରେ ସେମାନଙ୍କୁ ନେଇ ବସାଇଲେ । ପାଦ୍ୟ, ଅର୍ଘ୍ୟ, ଆଚମନୀୟ ଦ୍ୱାରା ଯଥାବିଧି ପୂଜା କଲେ ଏବଂ ନମ୍ରତାର ସହିତ କହିଲେ —ହେ ମଙ୍ଗଳମୂର୍ତ୍ତି ! ହେ ଋଷିଶ୍ରେଷ୍ଠ ! ଆଜି ମୋର ବଡ଼ ସୌଭାଗ୍ୟର ଦିନ । ମୋର କେଉଁ ପୁଣ୍ୟ ବଳରେ ଆପଣମାନଙ୍କର ଦେବଦୁର୍ଲଭ ସାକ୍ଷାତ୍କାର ଲାଭ କଲି ତାହା ମୁଁ ଜାଣେ ନାହିଁ । ଏତେ ପୁଣ୍ୟ ତ ଏ ଜୀବନରେ ମୁଁ କରି ନାହିଁ ଯାହାର ଫଳ ସ୍ୱରୂପ ଆପଣମାନଙ୍କ ଦର୍ଶନ ଲାଭ କରିପାରିଲି ।

ଏହା ଶୁଣି ସନତ୍କୁମାର କହିଲେ -ରାଜନ୍ ! ଆପଣ ଜଣେ ଧାର୍ମିକ । ପୁଣ୍ୟ ବଳରେ ଆପଣ ଚରାଚର ପ୍ରଭୁଙ୍କୁ ପ୍ରସନ୍ନ କରିଛନ୍ତି । ସେ ନିଜେ ଆପଣଙ୍କର ଯଜ୍ଞରେ ଉପସ୍ଥିତ ହୋଇ ଆପଣଙ୍କୁ କୃତାର୍ଥ କରିଛନ୍ତି ।

ମହାରାଜ ପୃଥୁ ବିନୀତଭାବେ କହିଲେ—ହଁ, ଭଗବାନ୍ ! ଏହା ଠିକ୍, ଭଗବାନ୍ ମୋତେ ଦର୍ଶନ ଦେଇଛନ୍ତି, କିନ୍ତୁ ତାହା ମୋ' ପୁଣ୍ୟର ଫଳ ନୁହେଁ । କଣ ଏପରି ପୁଣ୍ୟ ଅଛି, ଭଗବାନ୍ ଯାହାର ବଶୀଭୂତ ହେବେ । ଭଗବାନ ଦୟା କରି ମୋତେ ସାକ୍ଷାତ୍ ଦେଇଥିଲେ । ବ୍ରାହ୍ମଣମାନଙ୍କ ଆଶୀର୍ବାଦରୁ ମୋର ସେ ସୌଭାଗ୍ୟ ଉଦୟ ହୋଇଥିଲା । ଯାହା ପ୍ରତି ବ୍ରାହ୍ମଣମାନେ ସଦୟ, ଯାହା ପ୍ରତି ଭୂତନାଥଙ୍କର ଅନୁଗ୍ରହ ଅଛି ଆଉ ଶ୍ରୀହରି ଦୟାକରି ଯାହାକୁ ଦର୍ଶନ ଦେଇଛନ୍ତି, ତା' ପକ୍ଷରେ ଏ ସଂସାରରେ ଦୁର୍ଲଭ ହୋଇ କଣ ଅଛି ? ମୋର ମନେ ହେଉଛି ଭଗବଦ୍ ଦର୍ଶନ ଫଳରୁ ଆପଣମାନଙ୍କ ସାକ୍ଷାତ୍ ଲାଭର ସୌଭାଗ୍ୟ ଜାତ ହୋଇଛି । ଭଗବାନଙ୍କ ସାକ୍ଷାତଲାଭ ସେହି ପ୍ରଭୁଙ୍କ ଦୟାର ଫଳ ।

ଭଗବନ୍ ! ଆପଣମାନେ ବାୟୁ ରୂପରେ ଚାରିଆଡ଼େ ବିଚରଣ କରୁଛନ୍ତି । ସାଧାରଣ ଲୋକଙ୍କ ପାଖରେ ଥିଲେ ସେମାନେ ଆପଣମାନଙ୍କୁ ଜାଣିପାରନ୍ତି ନାହିଁ । ମାୟା ପ୍ରପଞ୍ଚରେ ପଡ଼ି ମଣିଷ ଯେପରି ନିଜର ଆତ୍ମାକୁ ଚିହ୍ନିପାରେ ନାହିଁ ସେହିପରି ଆପଣମାନଙ୍କୁ ସାଧାରଣ ଲୋକେ ଚିହ୍ନି ପାରନ୍ତି ନାହିଁ । ଯେଉଁମାନଙ୍କୁ ଆପଣ ଦର୍ଶନ ଦିଅନ୍ତି ସେମାନେ ଧନ୍ୟ । ଧନ ଜନ ହୀନ ହୋଇ ମଧ୍ୟ ସେମାନେ ଆପଣଙ୍କର ଯଥାର୍ଥ ସତ୍କାର କରନ୍ତି । ସେ ସତ୍କାରରେ ନ ଥାଏ ରାଜକୀୟ ଆଡ଼ମ୍ବର ବା ଐଶ୍ୱର୍ଯ୍ୟଜନିତ ଅଭିମାନ । ସେମାନେ ତୃଣାସନ, ଜଳମାତ୍ର ଦେଇ କୃତକୃତ୍ୟ ହୋଇଯାନ୍ତି । ସେଉଳି ସେବାରେ ସେମାନଙ୍କ ମାନବଜୀବନ ଧନ୍ୟ ହୁଏ । କିନ୍ତୁ ପର୍ଯ୍ୟାପ୍ତ ଧନ, ଜନ ଥାଇ ମଧ୍ୟ ଯାହା ପ୍ରତି ଆପଣଙ୍କର କୃପା ନାହିଁ ତା'ର ଜୀବନ ନିରର୍ଥକ । ତା'ର ଗୃହ ଶ୍ମଶାନତୁଲ୍ୟ ନିରର୍ଥକ ଓ ଭୟଙ୍କର । ଏହାଦ୍ୱାରା ମୁଁ

ଆପଣମାନଙ୍କର ଅଯଥା ସ୍ତୁତିଗାନ କରୁନାହିଁ । ଆପଣମାନଙ୍କ ପ୍ରଶଂସା କରିବା ପାଇଁ ମୋର ସାମର୍ଥ୍ୟ କି ଯୋଗ୍ୟତା ନାହିଁ । ଯେଉଁ ସହିଷ୍ଣୁତା, ଧୈର୍ଯ୍ୟ, ଜ୍ଞାନ, ବୈରାଗ୍ୟାଦି ଷଟ୍ ସମ୍ପତ୍ତି ପାଇଁ ମୁମୁକ୍ଷୁ ପୁରୁଷ ଦୀର୍ଘକାଳ ଧରି ସାଧନା କରନ୍ତି ସେ ସବୁ ସଦ୍‌ଗୁଣ ସ୍ୱାଭାବିକଭାବେ ଆପଣମାନେ ଜନ୍ମତଃ ଲାଭ କରିଛନ୍ତି । ଆପଣ ବ୍ରହ୍ମାଙ୍କର ପ୍ରଥମ ପୁତ୍ର । ମାୟା, ମୋହ ଆପଣଙ୍କୁ ସ୍ପର୍ଶ ମଧ୍ୟ କରିପାରି ନାହାନ୍ତି ।

ଏହା ଶୁଣି ସନାତନ କହିଲେ—ରାଜନ୍ ! ବର୍ତ୍ତମାନ ଆପଣଙ୍କର କୁଶଳ, ମଙ୍ଗଳ ସମାଚାର କହନ୍ତୁ ।

ମହାରାଜ ପୃଥୁ କହିଲେ—ଭଗବନ୍ ! ଏ କୋଳାହଳମୟ ସଂସାରରେ କୁଶଳର ପ୍ରଶ୍ନ କାହିଁ ? ଆପଣମାନଙ୍କ ଚରଣ ହିଁ କୁଶଳର ଆଧାର । କର୍ମବଶତଃ ଆମେ ନାନାପ୍ରକାର ସୁଖ ଦୁଃଖ ଭୋଗ କରୁଛୁ । ଏପରି ଅବସ୍ଥାରେ ଆପଣମାନଙ୍କର ଅନୁଗ୍ରହ ବିନା ଆମର କୁଶଳ କିପରି ହେବ । ଆପଣମାନେ କୁଶଳସ୍ୱରୂପ । ଯେ ସର୍ବଦା କୁଶଳମୟ, ଅମୃତମୟ ତାଙ୍କ ପକ୍ଷରେ ସଂସାରର କୁଶଳ ପ୍ରଶ୍ନ ଅନାବଶ୍ୟକ । ମୁଁ ତାହା ହିଁ ଆପଣମାନଙ୍କୁ ପଚାରିବା ପାଇଁ ଇଚ୍ଛା କରୁଛି । ଆମପରି ଇନ୍ଦ୍ରିୟାସକ୍ତ ଲୋକମାନଙ୍କର ମଙ୍ଗଳ କିପରି ହେବ ? ସଂସାର ଜାଲରେ ଆବଦ୍ଧ ମଣିଷ କେଉଁ ସହଜ ଓ ସରଳ ଉପାୟଦ୍ୱାରା ଶ୍ରେୟଲାଭ କରିପାରିବେ । ଆମପରି ମୂର୍ଖମାନଙ୍କର ମଙ୍ଗଳ ସାଧନ ପାଇଁ କୌଣସି ମାର୍ଗ ନିର୍ଦ୍ଦେଶ କରନ୍ତୁ ।

ମୈତ୍ରେୟ ମୁନି କହିଲେ—ମହାରାଜ ପୃଥୁଙ୍କ ପ୍ରଶ୍ନ ଶୁଣି କୁମାରଗଣଙ୍କ ମଧ୍ୟରୁ ସନତ୍କୁମାର ହସି ହସି ଉତ୍ତର ଦେବା ପାଇଁ ଉଦ୍ୟତ ହେଲେ ।

### ଛପ୍ପୟ

"ଅବ ହେ ଦୀନଦୟାଲ ! ମୋକ୍ଷ କୋ ମାର୍ଗ ବତାଓ ।
କସ ହୋଓ କଲ୍ୟାନ ସରଲତା ତେଁ ସମଝାଓ ॥
ଉଟକେ ଭବ ମଗ ମାହିଁ ପ୍ରଭୋ ! ଅବଲମ୍ବନ ଦେଓ ।
ଭବଜଲ ଡୁବତ ନାବ ଆପ ନାବିକ ବନି ଖେଓ ॥
ତୀନୋ ତାପନି ତେ ତାପିତ, କବ ତେ ଜଗ ମହଁ ଭ୍ରମି ରହେ ।
ଦୁଃଖିତ ଦେଖି ଦରଶନ ଦୟେ, ଭଈ ଶାନ୍ତି ତବ ପଦ ଗହେ ।



ମୁଦ୍ରଣ—କଲ୍ୟାଣୀ ପ୍ରିଣ୍ଟର୍ସ, ପିଠାପୁର, କଟକ

## କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର ପ୍ରକାଶିତ କେତୋଟି
## ଚିରନ୍ତନ ସାହିତ୍ୟ

---

ଦ୍ୱାପର ଯୁଗର ଶୁକଙ୍କ ପରି ଅଘୋରସ କୃଷ୍ଣ ଭଗବାନଙ୍କର
ମହାତ୍ମା ପ୍ରଭୁଦତ୍ତ ବ୍ରହ୍ମଚାରୀ ପ୍ରଣୀତ ଷାଠିଏ ଖଣ୍ଡ 'ଭାଗବତୀ କଥା'ର

ଓଡ଼ିଆ ଅନୁବାଦ

"ଭାଗବତ କଥା"

ବର୍ତ୍ତମାନ ସୁଦ୍ଧା ତେରଖଣ୍ଡ ପ୍ରକାଶିତ ।

ଭାରତୀୟ ଆତ୍ମାର ପରପ୍ରକାଶ
ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ ପ୍ରଣୀତ

**ରାମାୟଣ**

ମୂଲ୍ୟ—ପଞ୍ଚତିରିଶ ଟଙ୍କା

**ମହାଭାରତ**

ପରିମାର୍ଜ୍ଜିତ ସଂସ୍କରଣ

**ଭଗବଦ୍ ଗୀତା**

ମୂଲ୍ୟ—ପାଞ୍ଚଟଙ୍କା

କେ. ଏମ୍. ମୁନ୍‌ସୀ ପ୍ରଣୀତ

ବିଖ୍ୟାତ ଚରିତୋପନ୍ୟାସ

**ଭଗବାନ ପରଶୁରାମ**

ପ୍ରଥମ ଓ ଦ୍ୱିତୀୟ ଖଣ୍ଡ

ପ୍ରତ୍ୟେକ ଖଣ୍ଡ ପଚାଶ ଟଙ୍କା